# ଭାଗବତ କଥା

(ଦ୍ୱିଚତ୍ୱାରିଂଶ ଖଣ୍ଡ)

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଶ୍ରୀ ସୁରେନ୍ଦ୍ରନାଥ ଶତପଥୀ

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

( ଦ୍ୱିଚତ୍ୱାରିଂଶ ଖଣ୍ଡ )

ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରକାଶନ ଉପଦେଷ୍ଟା :

ଡକ୍‌ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୧୯୯୨

ପ୍ରଚ୍ଛଦ :

ଅସିତ୍ ମୁଖାର୍ଜୀ

ମୁଦ୍ରଣ :

କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧

ମୂଲ୍ୟ : ଟ ୩୦-୦୦

# BHAGABAT KATHA

(Forty two Part)

Sri Prabhudatta Brahmachari

Publisher :

Srimati Annapurna Mishra

Cuttack Students' Store
Balubazar, Cuttack-753002

Publication Adviser :

Dr. K. P. Mishra

First Edition—1992
Price—Rs 30-00

# ସୂଚୀ

ବିଷୟ | ପୃଷ୍ଠା





# ଭୂମିକା

ଅନୁଗ୍ରହାୟ ଭୂତାନାଂ ମାନୁଷଂ ଦେହମାସ୍ଥିତଃ ।
ଭଜତେ ତାଦୃଶୀ କ୍ରୀଡ଼ା ଯାଃ ଶ୍ରୁତ୍ୱା ତତ୍ପରୋ ଭବେତ୍ ॥

( ଶ୍ରୀ.ଭା. ୧୦ସ୍କ, ୩୩ଅ, ୩୭ ଶ୍ଳୋ )

## ଛପ୍ପୟ

ସମୁଝେଁ ରାସ-ରହସ୍ୟ କରେଁ ସେବା ସନ୍ତନକୀ ।
ସୁନେଁ ଭାଗବତ ଧରେଁ ଧୂର ସୀର ଗୁରୁଚରନନିକୀ ॥
ବିଷୟ-ବାସନା ତ୍ୟାଗି ଦେହକୀ ସୁଧି ବିସରାବେଁ ।
ଜଗତକେ ନାତେ ତୋର ହରଷି ବୃନ୍ଦାବନ ଧାବେଁ ॥
ତଜେଁ ଭେଦ ନର ନାରୀକୋ, ଗୋପୀ-ଭାବ ଦୃଢ଼ାଇକେଂ ।
ଅପନା ଲେଂ ରାସେଶ୍ୱରୀ, ତାକୂଁ ହୃଦୟ ଲଗାଇକେଂ ॥

ଶ୍ରୀକୃଷ୍ଣାବତାରରେ ଭଗବାନ ଯେତେ ଯେତେ ଦିବ୍ୟାଦିଦିବ୍ୟ ଲୀଳାମାନ କରିଛନ୍ତି ତନ୍ମଧ୍ୟରେ ରାସଲୀଳା ଅତ୍ୟନ୍ତ ରହସ୍ୟମୟୀ । ଏହି ବିଷୟରେ ଭିନ୍ନ ଭିନ୍ନ ବିଦ୍ୱାନ୍‌ମାନଙ୍କର ଭିନ୍ନ ଭିନ୍ନ ମତ । ଅନେକ ତ ଏ କଥା ବି କୁହନ୍ତି ଯେ ଏହି ପ୍ରସଙ୍ଗ ଭଗବାନ ବ୍ୟାସକୃତ ନୁହେଁ । ଏହା ପ୍ରକ୍ଷିପ୍ତ ଏବଂ ପରେ କେହି ଏହାକୁ ଯୋଡ଼ି ଦେଇଛି; ଭାଗବତରୁ ତେଣୁ ଏହାକୁ ବାହାର କରି ଦିଆଯିବା ଉଚିତ । ଆଉ କେତେ ଲୋକଙ୍କର କଥନ ହେଲା, ଭାଗବତରୂପ ଦେହରେ ରାସ-ପଞ୍ଚାଧ୍ୟାୟୀ ହେଉଛି ପଞ୍ଚପ୍ରାଣ । ଶରୀରରୁ ପ୍ରାଣ ବାହାରିଗଲେ ତାହା ଯେପରି ଶବ ହୋଇଯାଏ, ଠିକ୍ ସେହିପରି ଯଦି ଶ୍ରୀମଦ୍ ଭାଗବତରୁ ଏହି ପାଞ୍ଚ ଅଧ୍ୟାୟକୁ ବାଦ ଦିଆଯିବ, ତା'ହେଲେ ସମ୍ପୂର୍ଣ୍ଣ ଭାଗବତ ନିର୍ଜୀବ ମୃତକ ଭଳି ହୋଇଯିବ । ଭାଗବତରେ ରାସ-ପଞ୍ଚାଧ୍ୟାୟୀ ହିଁ ହେଉଛି ଜୀବନ ।

ବାସ୍ତବ କଥା ହେଲା, ମୁଁ ପୁରାଣଗୁଡ଼ିକୁ ବଡ଼ ମନୋଯୋଗର ସହିତ ଅଧ୍ୟୟନ କରିଛି । ଅନ୍ୟ ପୁରାଣଗୁଡ଼ିକରେ ମଧ୍ୟ ରାସ-ପ୍ରସଙ୍ଗ ଆସିଛି ; କିନ୍ତୁ ଶ୍ରୀମଦ୍ ଭାଗବତରେ ଏହା ଯେପରି ଭଲଭାବରେ ବର୍ଣ୍ଣିତ, ସେଭଳି କେଉଁଠି ହେଲେ ଦେଖିବାକୁ ମିଳେ ନାହିଁ । ଏଠାରେ ତ ମଧୁର-ରସର ପରାକାଷ୍ଠା ଭରି ଦିଆ ଯାଇଛି । ଏଭଳି ସଜୀବ, ସୁଖଦ, ସରସ, ଭାବପୂର୍ଣ୍ଣ ତଥା କମନୀୟ ବର୍ଣ୍ଣନ ଅନ୍ୟ କେଉଁଠି ହେଲେ ମିଳେ ନାହିଁ । ସାହିତ୍ୟର

ଦୃଷ୍ଟିରେ ହେଉ, ଅଥବା କଳାର ଦୃଷ୍ଟିରେ ହେଉ, କିମ୍ବା ସଙ୍ଗୀତ ତଥା ପଦ-ବିନ୍ୟାସର ଦୃଷ୍ଟିରେ ହେଉ, ଏଭଳି ଅନୁପମ ବର୍ଣ୍ଣନ ଅନ୍ୟତ୍ର ଦୁର୍ଲଭ । ସରସ୍ୱତୀ ସତେ ଯେମିତି ଏଠି ସଜୀବ ହୋଇ ନୃତ୍ୟ କରିବାକୁ ଲାଗିଥାଏ !

କେତେ ଲୋକଙ୍କର ବକ୍ତବ୍ୟ ହେଲା, ଏହି ବର୍ଣ୍ଣନଦ୍ୱାରା ଲୋକମାନଙ୍କୁ ଦୁରାଚରଣ କରିବାକୁ ଉତ୍ସାହ ମିଳିଥାଏ, ଯୁବକ-ଯୁବତୀମାନେ ଏହି ଅତ୍ୟନ୍ତ ସରସ ପ୍ରସଙ୍ଗଗୁଡ଼ିକୁ ପଢ଼ି ଶୁଣି କଦାଚାରରେ ପ୍ରବୃତ୍ତ ହୋଇଥାନ୍ତି । ଏହା ଅବଶ୍ୟ ସମ୍ଭବ ; କିନ୍ତୁ ଯେଉଁମାନଙ୍କର ଦୁରାଚରଣ ପ୍ରତି ପ୍ରେମ ଅଛି, ସେମାନେ ନିଜ ନିଜର ଦୁରାଚରଣକୁ ଘୋଡ଼େଇ ରଖିବା ଲାଗି ହିଁ ଶ୍ରୀକୃଷ୍ଣଙ୍କ ରାସକୁ ଆଡ଼ୁଆଳ ସ୍ୱରୂପ ରଖି ଏଭଳି କରିଥାନ୍ତି । ଶ୍ରୀମଦ୍ ଭାଗବତରେ ତ ବାରମ୍ବାର ଦୃଢ଼ତାର ସହିତ ଏ କଥା କୁହାଯାଇଛି ଯେ ବଡ଼ ଲୋକମାନଙ୍କର ଲୋକ ବାହ୍ୟକ ଦେଖା ଯାଉଥିବା ଆଚରଣଗୁଡ଼ିକୁ କଦାପି ଅନୁକରଣ କରିବା ଉଚିତ ନୁହେଁ । ଯେ କରିବ, ସେ କଷ୍ଟ ପାଇବ ଏବଂ ମରିଯିବ ।

କଥା ହେଲା, କେବଳ ଗୁଣୀଙ୍କ ପାଖକୁ ଗିବାଦ୍ୱାରା ଗୁଣ ଯଥାର୍ଥ ଗୁଣ ହୋଇଥାଏ । ସ୍ୱାତିର ଜଳ ଶାମୁକାରେ ପଡ଼ିବା ମାତ୍ରେ ହିଁ ମୁକ୍ତା ହୋଇ ଯାଇଥାଏ ଏବଂ ସମୁଦ୍ରରେ ପଡ଼ିବାଦ୍ୱାରା ଏହା ଖାଇବା ଓ ପିଇବାପାଇଁ ଅଯୋଗ୍ୟ ହୋଇ ଯାଇଥାଏ । ଅଦଧିକାରୀ ବିଷୟୀ ପୁରୁଷମାନେ ଯଦି ରାସ-ଲୀଳାର ଅନୁକରଣ କରିବାକୁ ଲାଗିବେ, ତା'ହେଲେ ଅବଶ୍ୟ ହିଁ ସେମାନେ ପତିତ ହୋଇଯିବେ । ମଧୁର-ରସର ଉପାସନା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଯେଉଁମାନେ ଘୋର ସଂଯମ ଓ କଠିନ ତପସ୍ୟା କରି ନିଜ ମନକୁ ବଶୀଭୂତ କରି ନେଇଛନ୍ତି, ଯେଉଁମାନେ ଦେହର ଲିଙ୍ଗ-ଉପାଧିଗୁଡ଼ିକଠାରୁ ଉପରକୁ ଉଠି ଯାଇଛନ୍ତି, ସେହିମାନେ ହିଁ ମଧୁର ରସର ରସ-ଦୀକ୍ଷାରେ ଦୀକ୍ଷିତ ହୋଇପାରିବେ । ଯେଉଁମାନଙ୍କ ମନରେ ସାଂସାରିକ ବିଷୟ-ବାସନା ଭରପୂର ରହିଛି ସେମାନେ ତ ଭଗବାନଙ୍କ ଅପ୍ରାକୃତ ଚିନ୍ମୟ ଲୀଳା ସମୂହକୁ ବିଷୟୀ ସ୍ତ୍ରୀ ପୁରୁଷଙ୍କ ଭଳି କାମକ୍ରୀଡ଼ା ଭାବରେ ବୁଝିବେ ଏବଂ ସେହି ଚିନ୍ତାଦ୍ୱାରା ତଳକୁ ଖସି ପଡ଼ିବେ ।

ବୃନ୍ଦାବନରେ ପ୍ରାଚୀନ ରସିକମାନଙ୍କ ମୁହଁରୁ ମୁଁ ଗୋଟିଏ କାହାଣୀ ଶୁଣିଥିଲି । ତାହା ହେଉଛି ଏହିଭଳି—

ଶ୍ରୀବୃନ୍ଦାବନ ଧାମ ହେଉଛି ଶ୍ରୀ ରାସେଶ୍ୱରୀ ଶ୍ରୀଜୀଙ୍କର ଅନ୍ତଃପୁର ।

ଶ୍ରୀରାଧା ହେଉଛନ୍ତି ସ୍ୱାମିନୀ । ଶ୍ରୀକୃଷ୍ଣ ତାଙ୍କ ଆଦେଶ ବିନା ନିକୁଞ୍ଜରେ ପାଦ ବି ପକାଇ ପାରନ୍ତି ନାହିଁ । ସମସ୍ତ ପରିକରଙ୍କ ସ୍ୱାମିନୀ ହେଉଛନ୍ତି, ଶ୍ରୀ ବୃଷଭାନୁନନ୍ଦିନୀ । ତାଙ୍କ ଉପାସନା କରିବାଦ୍ୱାରା ନିକୁଞ୍ଜରେ ପ୍ରବେଶ କରିହୁଏ । ସାଧନା କରି ଯେଉଁମାନଙ୍କ

ଅନ୍ତଃକରଣ ବିଶୁଦ୍ଧ ହୋଇ ଉଠିଥାଏ, ସେହିମାନେ ହିଁ ନିକୁଞ୍ଜରେ ପ୍ରବେଶ କରି ପାରନ୍ତି । ଶ୍ରୀବୃନ୍ଦାବନ ହେଉଛି ରସ-ଭୂମି, ଅନ୍ୟ ଧାମ ତଥା ତୀର୍ଥ ସାଧନର ଭୂମି । ସହସ୍ର ସହସ୍ର ଜନ୍ମ ଧରି ଯେଉଁମାନେ ତପ-ସମାଧି ଦ୍ୱାରା ଅନ୍ତଃକରଣକୁ ଶୁଦ୍ଧ-ପୂତ କରାଇ ନେଇଥାନ୍ତି, ସେମାନଙ୍କର ବୃନ୍ଦାବନରେ ବାସ କରିବାର ଅଧିକାର ଅଛି । ଯେଉଁମାନେ ଅନଧିକାର ଚେଷ୍ଟା କରନ୍ତି ସେମାନଙ୍କର ପତନ ଅନିବାର୍ଯ୍ୟ । ଜଣେ କେହି ସାଧକ ଥିଲେ । ତାଙ୍କ ଅନ୍ତଃକରଣ ଶୁଦ୍ଧ ହୋଇ ନଥିଲା । ମନରେ ସାଂସାରିକ ମଳିନ ବାସନାସମୂହ ଛପି କରି ରହିଥିଲା । ତାଙ୍କ ମନରେ ଭୁଲ ଧାରଣା ଆସିଗଲା ଯେ ସେ ରାସେଶ୍ୱରୀଙ୍କ ଦର୍ଶନର ଅଧିକାରୀ ହୋଇ ଉଠିଛନ୍ତି । ସେ ନିଜ ଦୀକ୍ଷା ଗୁରୁଙ୍କୁ କହିଲେ, "ମତେ ସ୍ୱାମିନୀଙ୍କ ଦର୍ଶନ କରାଇ ଦିଅନ୍ତୁ ।"

ଗୁରୁଦେବ କହିଲେ—"ଭାଇ, ସ୍ୱାମିନୀଙ୍କ ଦର୍ଶନ ସାଧନସାଧ୍ୟ ନୁହେଁ, ତାହା ବରଂ କୃପାସାଧ୍ୟ । ସେ ଯେତେବେଳେ କୃପା କରିବେ, ସେତେବେଳେ ନିଜକୁ ନିଜେ ଦର୍ଶନଯୋଗ୍ୟ କରି ଦର୍ଶନ ଦେଇଦେବେ । ତୁମେ ଜିଦ୍ ଧର ନାହିଁ; ବରଂ ତାଙ୍କ କୃପାର ପ୍ରତୀକ୍ଷା କର ।"

ଗୁରୁଦେବଙ୍କ କଥା କିନ୍ତୁ ସେ ମାନିଲେ ନାହିଁ । ସେ ଏକା ଏକା ବୃନ୍ଦାବନକୁ ଚାଲିଗଲେ ଏବଂ ଶ୍ରୀଜୀଉଙ୍କ ଦର୍ଶନର ସଂକଳ୍ପରେ ଅନ୍ନ-ଜଳ ଛାଡ଼ି ଉପବାସ କରିବାକୁ ଲାଗିଲେ । ଆଠ ଦଶଦିନ ବିତିଗଲା । ଦୟାମୟୀ ରାସେଶ୍ୱରୀଙ୍କର ତାଙ୍କ ଉପରେ ଦୟା ଆସିଗଲା । ଏପର୍ଯ୍ୟନ୍ତ ସେ ତ ଦର୍ଶନର ଅଧିକାରୀ ହୋଇ ନଥିଲେ । ଲୋକମାନେ ତ ସାଧୁ-ସନ୍ଥମାନଙ୍କ କୃପାକୁ ସମ୍ଭାଳି ପାରନ୍ତି ନାହିଁ । ପୁଣି ଯେ ଅନନ୍ତ ସୌନ୍ଦର୍ଯ୍ୟର ଓ ମାଧୁର୍ଯ୍ୟର ଖଣି, ସେହି ରାସେଶ୍ୱରୀଙ୍କ ଅପାର ସୌନ୍ଦର୍ଯ୍ୟକୁ କିପରି ବା ସମ୍ଭାଳି ପାରିବେ ? ଶ୍ରୀଜୀଉ କେବଳ ନିଜ ବାଁ ହାତର ଅଙ୍ଗୁଠିଗୁଡ଼ିକୁ ହିଁ ତାଙ୍କୁ ଦର୍ଶନ କରାଇଲେ । ସେହି ହାତଟି ଏତେ ସୁନ୍ଦର ଥିଲା ଯେ ତାହାକୁ ଦେଖିବା ମାତ୍ରେ ହିଁ ତାଙ୍କର (ସାଧକଙ୍କର) ବୀର୍ଯ୍ୟ ସ୍ଖଳିତ ହୋଇଗଲା । ସେତେବେଳେ ଯାଇ ସେ ନିଜ ଭୁଲଟି ବୁଝିପାରିଲେ । ଗୁରୁଙ୍କ ପାଖକୁ ଯାଇ ସେ ଖୁବ୍ କାନ୍ଦାକଟା କଲେ । ସେତେବେଳେ ଗୁରୁ ତାଙ୍କୁ ଅନ୍ତଃକରଣର ଶୁଦ୍ଧି ନିମିତ୍ତ ମନ୍ତ୍ର ଜପାଦିର ସାଧନ କରାଇଲେ ।

କହିବାର ସାର କଥା ହେଲା ଯେଉଁମାନେ ଅନଧିକାର ଚେଷ୍ଟା କରନ୍ତି, ସେମାନେ ଉଭୟ ଇହଲୋକ ଓ ପରଲୋକରେ ଭ୍ରଷ୍ଟ ହୋଇଯାନ୍ତି । ଉପଦେଶ ଅଧିକାରୀଙ୍କ ହୃଦୟରେ ହିଁ ରହିପାରେ । ସାଧନା ବିନା ଅନ୍ତଃକରଣରେ ଶୁଦ୍ଧି ଆସେ ନାହିଁ । ସୃଷ୍ଟିର କେତେକ ଅନୁଗୃହୀତ ଜୀବ ଅଛନ୍ତି, ଯେଉଁମାନଙ୍କୁ ଏହି ଜନ୍ମରେ, କିଛି ସାଧନ କରିବାକୁ ପଡ଼େନାହିଁ । ସେମାନେ ଜନ୍ମରୁ ହିଁ ସିଦ୍ଧ ହୋଇ ଉଠିଥାନ୍ତି । ପୂର୍ବ ଜନ୍ମମାନଙ୍କରେ

ସେମାନେ ସାଧନର ଭୂମିକାକୁ ସମାପ୍ତ କରିସାରିଥାନ୍ତି । ଏକଥା ବିରଳ ବ୍ୟକ୍ତି ଲକ୍ଷରେ ଜଣେ ଅଧେ ବାହାରିଥାନ୍ତି । ମଧୁର ଉପାସନାର—ପ୍ରେମରସାସ୍ୱାଦନର ଅଧିକାର ସମସ୍ତଙ୍କୁ ମିଳେନାହିଁ । ଜୀବନର ସାତଟି ଭୂମିକା ଥିବା କଥାକୁ ଯେମିତି କୁହାଯାଇଥାଏ, ଠିକ୍ ଅନୁରୂପ ଭାବରେ ରସ-ଘାଟର ବି ସାତଟି ଭୂମିକା ଅଛି ବୋଲି ବ୍ରଜର ପରମ ରସିକ ଶ୍ରୀଭଗବତ ରସିକ ମହାଶୟ କହିଛନ୍ତି । ସେ କୁହନ୍ତି :

"ପ୍ରଥମ ସୁନୈ ଭାଗୌତ ଭକ୍ତ ମୁଖ ଭଗବତ-ବାନୀ ।
ଦ୍ୱିତୀୟେ ଅରାଧୈ ଭକ୍ତ ବ୍ୟାସ ନବ ଭାଁତି ବଖାନୀ ।।
ତୃତୀୟେ କରୈ ଗୁରୁ ସମୁଝି ଦକ୍ଷ ସର୍ବଜ୍ଞ ରସୀଲୌ ।
ଚୌଥେ ହୋଇ ବିରକ୍ତ ବସୈ ବନରାଜ ଜସୀଲୌ ।।
ପାଁଚୈ ଭୁଲେ ଦେହ ନିଜ, ଛଠେ ଭାବନା ରାସକୀ ।
ସାତେଂ ପାର୍ୱେ ରୀତି ରସ ଶ୍ରୀସ୍ୱାମୀ ହରିଦାସ କୀ ।।

ବୃନ୍ଦାବନରେ ପରମ ରସିକାଗ୍ରଣୀ ଶ୍ରୀ ହରିଦାସ ମହାଶୟ ଏହି ରସ-ଘାଟର ଅଗ୍ରଣୀ ହୋଇ ଯାଇଛନ୍ତି ।

ନିଧିବନରେ ସେ ସମ୍ପୂର୍ଣ୍ଣ ଅନୁରାଗୀ ବ୍ୟକ୍ତିମାନଙ୍କ ଭଳି ନିବାସ କରୁଥିଲେ । ସଙ୍ଗୀତରେ ତାଙ୍କ ଭଳି ସାରା ଭାରତରେ କେହି ନଥିଲେ । ସୁପ୍ରସିଦ୍ଧ ତାନସେନ୍ ତାଙ୍କର ଶିଷ୍ୟ ଥିଲେ । ତାଙ୍କୁ ସମସ୍ତେ ଲଳିତା ସଖୀଙ୍କର ଅବତାର ବୋଲି ମାନୁଥିଲେ । ମଧୁର ରସର ଉପାସନା-ପରମ୍ପରା ତାଙ୍କର ଆଦର୍ଶ ଥିଲା । ସେହି ପରମ୍ପରାର ଅନୁଗାମୀ ଥିଲେ ଶ୍ରୀ ଭଗବଦ୍ ରସିକ । ସେ ବି ଥିଲେ ଜଣେ ପରମ ବିରକ୍ତ ବ୍ୟକ୍ତି । ସେ ହିଁ ରସଘାଟର ସାଧନାର କ୍ରମ ବୁଝାଇ ଯାଇଛନ୍ତି । ସେ କହନ୍ତି—

୧ । ଭାଗବତ ଶ୍ରବଣ :

ରସଘାଟରେ ଦୀକ୍ଷିତ ହେବାକୁ ଯାଉଥିବା ସାଧକଙ୍କ ସର୍ବପ୍ରଥମ କର୍ତ୍ତବ୍ୟ ହେଉଛି, ସେ ପ୍ରଥମେ ଭାଗବତ ଶୁଣିବେ । ଏହାର କାରଣ ହେଲା, ଯେ ପର୍ଯ୍ୟନ୍ତ ଯେଉଁ ବିଷୟ ସେ ଶୁଣି ନାହାନ୍ତି, ସେ ପର୍ଯ୍ୟନ୍ତ ସେ ବିଷୟରେ ଚିନ୍ତା ବା କିପରି କରିପାରିବେ ? ମନର ସ୍ୱଭାବ ହେଉଛି, ସେ ଯାହାକୁ ଦେଖେ ଅଥବା ଶୁଣେ, ତତ୍ସମ୍ପର୍କରେ ଚର୍ଚ୍ଚା କରିଥାଏ । କିଛି ସୁନାରୁପା ଦେଇ କରି ଯାହିତାହି ଲୋକ ପାଖରୁ ଭାଗବତ ଶୁଣିବା ଠିକ୍ ହେବନାହିଁ । ଭକ୍ତଙ୍କ ମୁହଁରୁ ଭାଗବତ-ବାଣୀ ଶୁଣିବାକୁ ହେବ । ଭକ୍ତ ଯାହା କରିବେ, ତାହା ହୃଦୟରୁ ହିଁ କରିବେ । କେବଳ ଶବ୍ଦଗୁଡ଼ିକର ପ୍ରଭାବ ପଡ଼େନାହିଁ, ସେ ଯେଉଁଭଳି ଢଙ୍ଗରେ କହିଯାଆନ୍ତି, ତାହାର ପ୍ରଭାବ ପଡ଼ିଥାଏ । ଜଣେ ମିଥ୍ୟାବାଦୀ ଲୋକ ଅଛି । ସେ ଯଦି କହେ, "ସତ କହ", ତା'ହେଲେ ତାହାର କିଛି ହେଲେ ପ୍ରଭାବ ପଡ଼ିବ

ନାହିଁ । ଅନ୍ୟ ଜଣେ ଲୋକ ଅଛନ୍ତି ଯେ କି ସବୁବେଳେ ସତ କହୁଥାନ୍ତି । ତାଙ୍କ ମୁହଁରୁ ଯେଉଁ ଶବ୍ଦଗୁଡ଼ିକ ବାହାରିବ, ସେଗୁଡ଼ିକ ହୃଦୟରେ ଜର ଜର ହୋଇ ଯାଇଥିବ; ସେଗୁଡ଼ିକର ତୁରନ୍ତ ପ୍ରଭାବ ପଡ଼ିବ । ଏହିଭଳି ଭାବରେ ଭକ୍ତଙ୍କ ମୁହଁରୁ ଭାଗବତ ଶୁଣିବା ଫଳରେ ଅନ୍ତଃକରଣରେ ସ୍ୱତଃ ଭକ୍ତି କରିବା ଲାଗି ଇଚ୍ଛା ଜନ୍ମ ନେଇଥାଏ । ଭାଗବତ ଶୁଣିବା ପରେ ଆରାଧନା ଲାଗି ଲାଳସା ବଢ଼େ । ସେଥିପାଇଁ ଦ୍ୱିତୀୟ ସାଧନ ହେଉଛି ଆରାଧନା ।

୨ । ଆରାଧନା :

ଆରାଧନାର ଭେଦ ହେଉଛି ଅନନ୍ତ ; କିନ୍ତୁ ଶ୍ରୀ ବ୍ୟାସାଦି ମୁନିମାନେ ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ସଖ୍ୟ, ଦାସ୍ୟ ଓ ଆତ୍ମନିବେଦନ ଏହିଭଳି ନଅ ପ୍ରକାର ଆରାଧନା ବିଷୟରେ କହିଯାଇଛନ୍ତି । କାରଣ ଜୀବନର ସାର ହେଉଛି ଆରାଧନା । ଯେଉଁ ଜୀବନରେ ଆରାଧନା ନାହିଁ, ତାହା ହେଉଛି ଶୁଷ୍କ ଜୀବନ । ସେଥିରେ ସରସତା ଆସିପାରେ ନାହିଁ । ଆରାଧନା ଦ୍ୱାରା ହୃଦୟ ଦ୍ରବୀଭୂତ ହୋଇଯାଏ । ତାହାର ଅଶୁଭ ବାସନାରାଶି ଏବଂ ଭୋଗଗୁଡ଼ିକୁ ଉପଭୋଗ କରିବାର ଇଚ୍ଛାସମୂହ ଶାନ୍ତ ହୋଇ ଯାଇଥାଏ । ଯେତେବେଳେ ଉପାସନା କରି କରି ହୃଦୟ ବିମଳ ହୋଇଯିବ, ସେତେବେଳେ ମନୁଷ୍ୟକୁ ରସ-ଶାସ୍ତ୍ର ସମ୍ପର୍କରେ ଜ୍ଞାନ ଥିବା ଗୁରୁଙ୍କର ଶରଣ ନେବାକୁ ହେବ ।

୩ । ଗୁରୁଶରଣ !

ଉପାସନା ଯେମିତି ହୋଇଥାଏ, ଗୁରୁ କରିବା ଠିକ୍ ତାହାର ହିଁ ଅନୁରୂପ ହୋଇଥାଏ । ଯେଉଁ ଲୋକ ଯେଉଁ ଉପାସନା ବିଷୟରେ କିଛି ଜାଣି ନାହାନ୍ତି, ସେ ଲୋଭପରବଶ ହୋଇ ମିଛିମିଛିକା କାନମୂଳରେ ମନ୍ତ୍ର ଫୁଙ୍କି ଦେଲେ, ସେଥିରେ ଲାଭ ବା କ'ଣ ? ଅନ୍ୟାନ୍ୟ ବ୍ୟବସାୟ ଭଳି ଶିଷ୍ୟ କରିବା ବି ଗୋଟିଏ ବ୍ୟବସାୟ ହୋଇଗଲାଣି । ତହିଁରେ ଆଧ୍ୟାତ୍ମିକତା ନ ରହି ଲୌକିକତା ଆସିଯାଇଛି । ମନୁଷ୍ୟ ଗୁରୁଙ୍କ ଅନୁରୂପ ନିଜକୁ ନଗଢ଼ି, ନିଜ ଅନୁରୂପ ଗୁରୁଙ୍କୁ ଖୋଜୁଛି । ସେଥିପାଇଁ ରଜୋଗୁଣସମ୍ପନ୍ନ ଲୋକମାନଙ୍କୁ ରଜୋଗୁଣସମ୍ପନ୍ନ ଗୁରୁ ମିଳୁଛନ୍ତି । ଯେଉଁମାନେ କୃପଣ, ସେମାନଙ୍କୁ ସେହିଭଳି କୃପଣ ଓ ବେପାରି ଗୁରୁ ମିଳିବେ, ଯେ ପଇସାକୁ ହିଁ ଅଧିକ କରି ପାଉଥିବେ ଏବଂ ଯାହାଙ୍କର ସବୁ ବେପାର ଥିବ କେବଳ ପଇସା ପାଇଁ । ସେହି ନରନାରୀମାନେ ହେଉଛନ୍ତି ବ୍ୟଭିଚାର-ପ୍ରିୟ ସେମାନଙ୍କୁ ବି ଠିକ୍ ସେଇଭଳି ଗୁରୁ ମିଳିବେ । ଯେଉଁ ବ୍ୟକ୍ତି ବକ୍ର, ତାଙ୍କୁ ବକ୍ର ଗୁରୁ ମିଳିବେ । ଯେଉଁମାନେ ଉପାସନା କରନ୍ତି ନାହିଁ, କେବଳ ନାମକୁ ମାତ୍ର ଗୁରୁ କରିଥାନ୍ତି, ସେମାନଙ୍କୁ ଭଣ୍ଡ ବେଶ ଧରିଥିବା ବେପାରି ଗୁରୁ ମିଳିଥାନ୍ତି । ଶ୍ରୀଭଗବଦ୍ ରସିକ ମହାଶୟ ବଡ଼ ଗୁରୁତ୍ୱର ସହିତ ଏଭଳି ବେଶଧାରୀ ଗୁରୁମାନଙ୍କ ବିଷୟରେ କୁହନ୍ତି—

"ବେଶଧାରୀ ହରିକେ ଉର୍ ସାଲେଂ ।
ଲୋଭୀ, ଦମ୍ଭୀ, କପଟୀ, କାମୀ ସିଶ୍ନୋଦରକୋ ପାଲେଂ ॥
ଗୁରୁ ଭଏ ଘର ଘରମେଂ ଡୋଲେଂ ନାମ ଧନୀକୋ ବେଚୈଂ ।
ପରମାରଥ ସପନେ ନହିଁ ଜାନେଂ ପୈସନ ହୀ କୋ ଖୈଚୈଂ ॥
କବହୁଁକ ବକ୍ତା ହ୍ୱୈ ବନ ବୈଠେଂ କଥା ଭାଗବତ ଗାଏଂ ।
ଅର୍ଥ ଅନର୍ଥ କଛୁ ନହିଁ ଭାଷେଂ ପୈସନ ହୀ କୋ ଧାଏଂ ॥
କବହୁଁକ ହରି-ମନ୍ଦିରକୋ ସେବେଂ କରେଂ ନିରନ୍ତର ବାସା ।
ଭାବ ଭକ୍ତି କୋ ଲେଶ ନ ଜାନେଂ ପୈସନ ହୀ କୀ ଆସା ॥
ନାଚେଂ ଗାଏଂ ଚିତ୍ର ବନାଏଂ କରେଂ କାବ୍ୟ ଚଟକୀଲା ।
ସାଁଚ ବିନା ହରି ହାଥ ନ ଆଏଂ ସବ ରହନୀ ହୈ ଢୀଲୀ ॥
ବିନୁ ବିବେକ ବୈରାଗ୍ୟ ଭକ୍ତି ବିନୁ ସତ୍ୟ ନ ଏକୋ ମାନୌ ।
'ଭାଗବତ' ବିମୁଖ କପଟ ଚତୁରାଈ ସୋ ପାଖଣ୍ଡୈ ଜାନୌ ॥

ଏଭଳି ବେଶଧାରୀ ଗୁରୁ ଭକ୍ତିଭାବ କ'ଣ ବା ଶିଖାଇବେ ? ତାଙ୍କ ଦ୍ୱାରା ତ ଇହଲୋକ ପରଲୋକରେ ଖାଲି ହାନି ହିଁ ଆସିବ । ତୁମର ଭାବନା ତ କପଟପୂର୍ଣ୍ଣ ; ତୁମକୁ ତା'ହେଲେ ନିଷ୍କପଟ ଗୁରୁ କିପରି ବା ମିଳିବେ ? ଧନ ଯେମିତି ତାହାର ବ୍ୟୟ ମଧ୍ୟ ହୁଏ ସେମିତି । କପଟତାର ଧନ ନେଇ ତୁମେ ଯଦି ଚାହୁଁଛ ତାହାଦ୍ୱାରା ପରମାର୍ଥ ସାଧିବା ପାଇଁ, ତାହା ଜମା ହୋଇପାରିବ ନାହିଁ । ଧର୍ମ ଦ୍ୱାରା ଉପାର୍ଜିତ ଧନ ହିଁ ଧର୍ମରେ ଲାଗିବ । ଅଧର୍ମ ଦ୍ୱାରା ଉପାର୍ଜିତ ଧନ ଚୋର, ଭଣ୍ଡ ପାଷଣ୍ଡ, ରାଜଦ୍ୱାର ଓ ରୋଗାଦିରେ ବ୍ୟୟିତ ହେବ । ଏ ବିଷୟରେ ଗୋଟିଏ ଉଦାହରଣ ଅଛି ।

ଜଣେ ବେଶ୍ୟା ଥିଲା । ତା' ପାଖରେ ଖୁବ୍ ପାପ-ଧନ ଜମା ହୋଇ ରହିଥିଲା । ତା'ର ଇଚ୍ଛା ହେଲା ପିତୃପକ୍ଷରେ ସେ ଶ୍ରାଦ୍ଧ କରିବ, ବ୍ରାହ୍ମଣମାନଙ୍କୁ ଖୁଆଇବ ; କିନ୍ତୁ କୌଣସି ବ୍ରାହ୍ମଣ ବେଶ୍ୟା ଘରେ ଖାଇବାକୁ ମଙ୍ଗିଲେ ନାହିଁ । କୌଣସି ଜଣେ ବୃଢ଼ା ଭଣ୍ଡ ଲୋକଙ୍କୁ ଏକଥା ଜଣା ପଡ଼ିଗଲା । ସେ ଲମ୍ବା ତିଳକ କାଟି ଏବଂ ପୋଥିପତ୍ର ବାନ୍ଧି ଆସି ପହଞ୍ଚିଲା । ସେ ଆସି କହିଲା, "ବାଇଜୀ ! ଆଶୀର୍ବାଦ ।" ପଣ୍ଡିତ ଭାବି ବେଶ୍ୟା ତା' ପ୍ରତି ଆଦର-ସମ୍ମାନ ଦେଖାଇଲା ଏବଂ ନିଜ ଇଚ୍ଛା କ'ଣ କହିଲା । ବହୁତ ସମୟ ପର୍ଯ୍ୟନ୍ତ ଭଣ୍ଡ ପଣ୍ଡିତ ଭାବିବାକୁ ଲାଗିଲା ଏବଂ କହିଲା, "ଏବେ ମୋ' ଆଗରେ ଧର୍ମ-ସଙ୍କଟଟିଏ ଆସି ପହଞ୍ଚିଗଲା । ଆପଣଙ୍କ ଧନ ତ ଯାହା ସେ କଥା ସମସ୍ତେ ଜାଣନ୍ତି । ପୁଣି ମତେ ତ ଆପଣଙ୍କୁ ଉଦ୍ଧାର କରିବାକୁ ହେବ । ଆପଣଙ୍କ ହାତରୁ ତ ଆମେ ଖାଇବୁ ନାହିଁ ; ତେଣୁ ସିଧା ନେଇ ନିଜ ହାତରେ ଖାଦ୍ୟ ତିଆରି କରିବୁ ।"

ବେଶ୍ୟା ଖୁବ ଖୁସି ହୋଇଗଲା ! ସେ ବଢ଼ବଢ଼ନ ଘିଅ, ଖଣ୍ଡ, ଦୁଧ ଏବଂ ଆହୁରି ବହୁତ ଜିନିଷମାନ ଆଣି ଦେଲା । ଭଣ୍ଡ ପଣ୍ଡିତ ବଢ଼ି ଷୀର-ଷୀରସା ଖାଇବାକୁ ଲାଗିଲା । ପିତୃପକ୍ଷର ଷୋହଳ ଦିନ ବିତିଯିବା ପରେ ବେଶ୍ୟା କହିଲା, "ପଣ୍ଡିତ ମହାଶୟ ! ଆଶୀର୍ବାଦ କରନ୍ତୁ ।"

ଏହାଶୁଣି ଭଣ୍ଡ ପଣ୍ଡିତ କହିଲା,
"ଷୋଳହୁ କନାଗତ ବୀତ ଗୟେ, ଖାଇ ଖୀର ଔର ଖାଁଡ଼ ।
ପୌଂକୋ ଧନ ପୌଂ ହି ଗୟୋ ତୁମ ବେଶ୍ୟା ହମ ଭାଁଡ଼ ।।

ସେଥିପାଇଁ ଯେଉଁମାନେ ଭଜନା ଉପାସନାରେ ଗୁରୁ କରି ବସନ୍ତି, ସେମାନଙ୍କପାଇଁ ସଦ୍‌ଗୁରୁ ମିଳନ୍ତି ନାହିଁ । ସେମାନେ ଚାହିଁଲେ ସେମାନଙ୍କ ପାଖକୁ ଯଥାର୍ଥ ବଦଳି ଆସିଯାଏ; କିନ୍ତୁ ରସର ସ୍ୱାଦ ଆସେ ନାହିଁ । ସେଥିପାଇଁ ତ ଭଗବତ୍ ରସିକ ମହାଶୟ କହୁଥାନ୍ତି— ସମସ୍ତଙ୍କୁ ଦକ୍ଷ, ସର୍ବଜ୍ଞ ଓ ରସଜ୍ଞ ଗୁରୁ କରିବାକୁ ହେବ । ଏହା ହେଉଛି ତୃତୀୟ ଭୂମିକା । ଏବେ ଚତୁର୍ଥ ଭୂମିକା ହେଲା ବୈରାଗ୍ୟ ।

୪—ବୈରାଗ୍ୟ :

ରସୋପାସନାରେ ସାଂସାରିକ ବିଷୟ ସମୂହରୁ ବିରାଗ ଅତ୍ୟନ୍ତ ଅବଶ୍ୟକ । ଅନନ୍ୟଚିତ୍ତ ହୋଇ ବୃନ୍ଦାବନରେ ବାସ କରିବାକୁ ହେବ । ଅନଧିକାରୀ ଲୋକ ଯଦି ବୃନ୍ଦାବନରେ ରହେ, ତା'ହେଲେ ସେ ମଧ୍ୟ ଏଠାରେ ପାପ କରି ବସିବ ; ତେଣୁ ସଂସାର ବାସରୁ ମୁହଁ ଫେରାଇ ବୃନ୍ଦାବନରେ ରହିବା ଉଚିତ । ତାହାପରେ ଆସିବ ପଞ୍ଚମ ଅବସ୍ଥା ଦେହାଧ୍ୟାସର ବିସ୍ମୃତି ।

୫—ଦେହର ବିସ୍ମୃତି

ମୁଁ ହେଉଛି ପୁରୁଷ; ଅମୁକ ହେଉଛି ସ୍ତ୍ରୀ । ସ୍ତ୍ରୀ ଭୋଗ୍ୟା ଏବଂ ପୁରୁଷ ଭୋକ୍ତା, ଯେ ପର୍ଯ୍ୟନ୍ତ ହୃଦୟରେ ଏହି ଭେଦଭାବ ଥିବ, ସେ ପର୍ଯ୍ୟନ୍ତ ରାସ-ରସର ଆନନ୍ଦ ପାଇବା କେବଳ ତ କଠିନ ହେବ ନାହିଁ, ଅସମ୍ଭବ ମଧ୍ୟ ହେବ । ଗୋପୀ ସ୍ତ୍ରୀ ନୁହନ୍ତି, କିମ୍ବା ପୁଂଲିଙ୍ଗ ଅଥବା ଓ ନପୁଂସକ ଲିଙ୍ଗ ନୁହନ୍ତି । ସେ ତ ଲିଙ୍ଗାତୀତ ଏକ ଭାବନା । ଅଶୁଦ୍ଧ ଚିତ୍ତରେ ସେହି ଭାବନା କରି ପାରିବ ନାହିଁ । ସଦ୍‌ଗୁରୁଙ୍କ କୃପାଦ୍ୱାରା ଯେତେବେଳେ ବିଷୟ ସମୂହରୁ ବିରାଗ-ଭାବ ଆସିଯାଏ, ଦେହର ଅଧ୍ୟାସ ଦୂର ହୋଇଯାଏ, ତେବେ ଯାଇ ମଣିଷ ରାସ-ଭାବନାର ଅଧିକାରୀ ହୋଇପାରେ । ସେଥିପାଇଁ ପରମ ଭଗବତ୍ ରସିକ ମହାଶୟ କହନ୍ତି, "ଷଷ୍ଠରେ ହେଉଛି ରାସର ଭାବନା ।"

୭—ରାସର ସୂଚନା :

ଯେତେବେଳେ ଲଜ୍ଜାଭିମାନ ଛୁଟିଯାଏ, ସେତେବେଳେ ତା'ର ରାସ-ସ୍ଥଳୀରେ ପ୍ରବେଶ କରିବାର ଅଧିକାର ଆସିଯାଏ । ଅର୍ଜୁନ ରାସ ଲାଗି କପରି ସଖୀ ଅର୍ଜୁନୀରେ ପରିଣତ ହୋଇଥିଲେ, ନାରଦ ମହାଶୟଙ୍କୁ କପରି ନାରଦୀ ହେବାକୁ ପଡ଼ିଥିଲା ଏବଂ ଶିବ କପରି ଗୋପୀଶ୍ୱର ହୋଇଥିଲେ, ସେ ବିଷୟ ଆପଣ ରାସ-ପ୍ରକରଣରେ 'ଭାଗବତ କଥା'ରେ ଅବଶ୍ୟ ପଢ଼ିଥିବେ । ଅତଏବ, ତାହାର ଭୂମିକା ଦେବା ଏଠାରେ ଅନାବଶ୍ୟକ । ରାସ-ସ୍ଥଳୀରେ ପ୍ରବେଶ କଲାପରେ ଲଳିତା, ବିଶାଖା ଆଦି ସଖୀମାନେ ସେମାନଙ୍କୁ ରାସ-ରାତି କଥା ବତାଇଥାନ୍ତି । ସେଥିପାଇଁ କୁହାଯାଇଛି, "ଶ୍ରୀ ସ୍ୱାମୀ ହରିଦାସଙ୍କର ରାସ-ରାତି ସପ୍ରମରେ ପାଇବାକୁ ହୋଇଥାଏ ।"

ଏହା ହିଁ ହେଉଛି ସାତ ପ୍ରକାର ଭୂମିକା । ଏଗୁଡ଼ିକୁ ପାରିହେଲା ପରେ ଯାଇ ରାସ-ରସାର୍ଣ୍ଣବରେ ମଜ୍ଜିବାର ଅଧିକାର ମିଳିଥାଏ । ସବଳ ଲୋକ ହାତରେ ଖଣ୍ଡାଟିଏ ଧରାଇ ଦେଲେ ସେ ତାହାଦ୍ୱାରା ଶତ୍ରୁମାନଙ୍କୁ ମାରି ଆତ୍ମରକ୍ଷା କରି ପାରିଥାଏ ; କିନ୍ତୁ ଯଦି ତାହାକୁ ପିଲାଟିର ହାତରେ ଦିଆଯାଏ, ତା' ହେଲେ ସେ ତାହାଦ୍ୱାରା ନିଜ ଦେହକୁ କାଟିକୁଟି ପକାଇବ । ମଧୁର ରସର ଉପାସନାର ପ୍ରକୃଷ୍ଟ ସାଧକ ହେଉଛି ଗୃହସ୍ଥ । ଯେତେବେଳେ ଦେହ-ଗେହ କିଛି ଭଲ ଲାଗିବ ନାହିଁ, ସଂସାରର ସକଳ ବିଷୟ ବିଷଭଳି ଲାଗିବ, ଲୌକିକ ବ୍ୟବହାର ଆଦି କ୍ଷତ ବିକ୍ଷତ କରିଦେବ, ସେତେବେଳେ ଯାଇ ବୃନ୍ଦାବନରେ ବାସ କରିବାକୁ ହେବ । ଏଭଳି ମଧୁର ରସର ଉପାସକଙ୍କ ପାଇଁ ଶ୍ୟାମ-ଶ୍ୟାମାଙ୍କ ଛଡ଼ା ଆଉ କିଛି ହିଁ କର୍ତ୍ତବ୍ୟ ଅବଶେଷ ରହି ନଥାଏ । ତାଙ୍କର ସକଳକ୍ଷଣ ଆଠ ପହର ଧରି ସେବାପୂଜା ଓ ଉପାସନାରେ ବ୍ୟୟିତ ହେଉଥାଏ । ମହାଭାଗବତ ଭଗବଦ୍ ରସିକ ମହାଶୟ ଏଭଳି ରସିକମାନଙ୍କର ଦିନଚର୍ଯ୍ୟାକୁ ଗୋଟିଏ ଛପ୍ପୟରେ ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି—

"କୁଞ୍ଜନମେଂ ଉଠି ପ୍ରାତ ଗାତ ଜମୁନା ମେଂ ଧୋୱୈ ।
ନିଧିବନ କରି ଦଂଡୌତ ବିହାରୀ କୋ ମୁଖ ଜୋୱୈ ॥
କରୈ ଭାବନା ବୈଠି ସ୍ୱଚ୍ଛ ଥଲ ରହିତ ଉପାଧା ।
ଘର ଘର ଲେଇ ପ୍ରସାଦ ଲଗୈ ଜବ ଭୋଜନ ସାଧା ॥
ସଙ୍ଗ କରୈ ଭଗବତ ରସିକ' କର କରୱା ଗୂଦରି ଗରେ ।
ବୃନ୍ଦାବନ ବିହରତ ଫିରୈ, ଜୁଗଲ ରୂପ ନୈଂନନ ଧରେ ॥"

ବ୍ରଜ-ରସର ରସିକ ଅନୁରାଗସ୍ୱାନ ବୈଷ୍ଣବଙ୍କ ପକ୍ଷେ ନିତିଦିନ ବୃନ୍ଦାବନର କୁଞ୍ଜସମୂହରେ ବାସ କରିବା ଉଚିତ । ସକାଳ ହେବାମାତ୍ରେ ସେ କୁଞ୍ଜରୁ ଉଠିବେ ।

ନିତ୍ୟକର୍ମ ସାରି ସେ ଯମୁନା ନଦୀରେ ଯାଇ ସ୍ନାନ କରିବେ । ନିଧୁବନକୁ (ଯେଉଁଠାରେ ରସିକ ଶିରୋମଣି ଶ୍ରୀ ହରିଦାସ ସ୍ୱାମୀ ପ୍ରିୟା-ପ୍ରିୟତମଙ୍କର ନିତ୍ୟସେବା କରୁଥିଲେ-ସେହି ସ୍ଥାନ) ଯାଇ ତାହାଙ୍କୁ ପ୍ରଣାମ କରିବେ । ତାହାପରେ ଶ୍ରୀ ବାଙ୍କେବିହାରୀଙ୍କ ଦର୍ଶନ ଲାଗି ଯିବେ । ଦର୍ଶନ କରିସାରି ପୁଣି କୁଞ୍ଜକୁ ଫେରି ଆସିବେ । ସେଠାରେ ବସି ଏକାନ୍ତରେ ପ୍ରିୟା-ପ୍ରିୟତମଙ୍କ ଲୀଳା ସମ୍ବନ୍ଧର ଅନୁସନ୍ଧାନ କରିବେ । ଏଭଳି ଶାନ୍ତ ଏକାନ୍ତ ନିର୍ମଳ ସ୍ଥାନରେ ଯାଇ ବସିବେ ଯେଉଁଠାରେ କୌଣସି ପ୍ରକାର ଉପାଧି ନଥିବ । ପୁଣି ସେ ବ୍ରଜବାସୀମାନଙ୍କ ପ୍ରତିଟି ଘରୁ ଭିକ୍ଷା ମାଗିକରି ଆଣିବେ । ଯେତେବେଳେ ତାଙ୍କୁ ଭଲଭାବରେ ଭୋକ ଲାଗିବ, ସେତେବେଳେ ସେ ଶ୍ୟାମା-ଶ୍ୟାମଙ୍କୁ ଅର୍ପଣ କରି ସାରିବା ଉତ୍ତାରୁ ପ୍ରସାଦ ପାଇବେ । ତାହା ଫଳରେ ସେହି ଭିକ୍ଷାନ୍ନ ଅମୃତ ଭଳି ସୁଆଦିଆ ଲାଗିବ । ପୁଣି ଯେଉଁମାନେ ରାସ-ରସର ମର୍ମ କଥା ଜାଣନ୍ତି, ସେ ଯାଇ ସେମାନଙ୍କ ସହିତ ମିଶିବେ ଏବଂ ସେମାନଙ୍କଠାରୁ ରସ-କଥା ଶୁଣିବେ । ଅଧିକ ସଂଗ୍ରହ କରିବାର କାମ ଏଠି ନାହିଁ । ସେ ମାଟିର ଗଡୁଟିଏ ରଖିବେ ଏବଂ ଚିରା-ଫଟା ପୁରୁଣା ଲୁଗାରେ ତିଆରି ଗୋଟିଏ କନ୍ଥା ରଖିବେ । ଏହିପରି ଭାବରେ ସଂସାରକୁ ସମସ୍ତ ପ୍ରପଞ୍ଚରୁ ବିରକ୍ତ ହୋଇ ଯୁଗଳ ମୂର୍ତ୍ତିଙ୍କୁ ଆଖି ଆଗରେ ରଖି ବୃନ୍ଦାବନର ଗଳିକନ୍ଦିରେ ବିହାର କରିବାକୁ ହେବ । ଏହିପରି ଭାବରେ ହିଁ ଭକ୍ତମାନେ ରାସର ରହସ୍ୟ ବିଷୟଟିକୁ ବୁଝି ପାରିବେ । ଆମେ ହେଉଛୁ ବିଷୟର କୀଟ । ଆମର ସକଳ ଚେଷ୍ଟା ମିଥ୍ୟାମାନ ପ୍ରତିଷ୍ଠା ଲାଗି ଉଦ୍ଦିଷ୍ଟ । ସତ କହିବାକୁ ଗଲେ ଆମେ ରାସ ସଂପର୍କରେ କଥାବାର୍ତ୍ତା କରିବାର ବି ଅଧିକାରୀ ହୋଇ ନାହୁଁ । ତଥାପି ଏଥିରେ ପ୍ରବେଶ କରିବା ନିମିତ୍ତ ମନୋଯୋଗ ଦେଇ ନିରନ୍ତର ଶ୍ରବଣ କରିବାର ଉପାଯୁକ୍ତି ରହିଛି । ସେଥିପାଇଁ ଭାଗବତର ଏହି ମହାଭାବଟିକୁ ଶ୍ରବଣ କରିବାର ଅଧିକାର ସମସ୍ତଙ୍କର ରହିଛି ।

ଲୋକମାନେ ଯେଉଁ କହନ୍ତି ଯେ ରାସ କଥା ଶୁଣିବା ମାତ୍ରେ ହିଁ କାମବାସନା ବଢ଼ିଯାଏ, ତାହା ସର୍ବଥା ମିଥ୍ୟା ଭାବନା । ରାସ-ଭାବନାରେ ବରଂ କାମଭାବ ଶାନ୍ତ ହୋଇଯାଏ । ଯେଉଁମାନଙ୍କୁ କାମର ବେଗ ଅଧିକ କଷ୍ଟ ଦେଉଛି, ସେମାନଙ୍କ ପକ୍ଷରେ ରାସ ପଞ୍ଚାଧ୍ୟାୟୀକୁ ଶ୍ରଦ୍ଧାର ସହିତ ପଢ଼ିବା ଉଚିତ, ଗାଇବା ଉଚିତ । ଏହାଦ୍ୱାରା କାମ-ବେଗର ଉପଶମ ଘଟେ ଏବଂ ଧୀରେ ଧୀରେ କାମ-ବେଗ ନଷ୍ଟ ହୋଇଯାଏ । ଏହି ବିଷୟରେ ମୁଁ ନିଜ ଜୀବନର ବିଶେଷ ଅନୁଭବ ତଥା ଅନ୍ୟାନ୍ୟ କଥା ପୃଥକ୍ ଗୋଟିଏ ଖଣ୍ଡର ଭୂମିକାରେ ଲେଖିବାର ପ୍ରୟାସ କରିବି । ପାଠକପାଠିକାମାନେ ଏହି ପରମ ପୁଣ୍ୟତମ ଦିବ୍ୟ ପ୍ରସଙ୍ଗକୁ ବାରମ୍ବାର ପଢ଼ନ୍ତୁ ଏବଂ ଏଥିରୁ ଅପ୍ରାକୃତ ଭାବକୁ ହିଁ ବୁଝନ୍ତୁ । ପଢ଼ିଲାବେଳେ ଯଦି ପ୍ରାକୃତ ସ୍ତ୍ରୀ-ପୁରୁଷଙ୍କ ମିଳନର ଭାବନା ହେବାକୁ ଲାଗିଲା, ତେବେ ସେମାନେ ବହିଟିକୁ ବନ୍ଦ କରିଦିଅନ୍ତୁ ଏବଂ ଧ୍ୟାନ କରି ଦେଖନ୍ତୁ କିପରି କଦମ୍ବ ଗଛ ତଳେ

ନିକଟ ଯମୁନାଙ୍କ ତୀରରେ ବଂଶୀ ଧରି ପ୍ରିୟତମ ଘନଶ୍ୟାମ ଠିଆ ହୋଇଛନ୍ତି । ତାଙ୍କ ସହିତ ଲାଗିକରି ଶ୍ରୀପ୍ରିୟା ଠିଆ ହୋଇଛନ୍ତି ଏବଂ ତାଙ୍କ କଣ୍ଠରେ ପ୍ରିୟତମଙ୍କ ଗଳାମାଳା ଲାଗି ରହିଛି । ମୟୂର-ମୁକୁଟରେ ଚନ୍ଦ୍ରିକା ଲାଗି କରି ରହିଛି । ଓଢ଼ଣି ଓ ପିତାମ୍ବର ପରସ୍ପର ସହିତ ମିଶି ଯାଇଛି । ପ୍ରିୟତମ ବୀଣା ବଜାଉଛନ୍ତି । ପ୍ରିୟତମା ତାଙ୍କୁ ଏକ ଦୃଷ୍ଟିରେ ଦେଖି ରହିଛନ୍ତି । ଏହି ଛବିକୁ ବାରମ୍ବାର ଧ୍ୟାନ କରିବାଦ୍ୱାରା ପ୍ରାକୃତ ଭାବନା ନଷ୍ଟ ହୋଇଯିବ । ଏହି ଭାବ କିଛି ନୂଆ ନୁହେଁ । ପଣ୍ଡିତ-ଚକ୍ରୀ କବିମାନ ହିଁ ଏହାକୁ ଅନୁଭବ କରିଥାନ୍ତି । ଏହାକୁ କେବଳ ଭକ୍ତମାନଙ୍କଠାରେ ପରିବର୍ତ୍ତିତ କରିଦେବା କଥା । ଭଗବାନ ପରି ଲୋକମାନଙ୍କ ଉପରେ କୃପା କରି ଏଭଳି ସରଳ ସରସ କ୍ରୀଡ଼ାମାନ କରିଥାନ୍ତି, ଯାହାକି ସମସ୍ତଙ୍କୁ ସୁଖପୂର୍ବକ ବୋଧଗମ୍ୟ ହେବ ଏବଂ ସେମାନେ ଏହି ଭାବନାରେ ତାଙ୍କୁ ଭଜିବାପାଇଁ ସମର୍ଥ ହୋଇ ପାରିବେ । ଭଗବାନ ଯଦି ଅଲୌକିକ ଘଟଣାଗୁଡ଼ିକୁ ପ୍ରଦର୍ଶନ କରନ୍ତି, ତା'ହେଲେ ସେଗୁଡ଼ିକୁ କିଏ ବା ବୁଝିପାରିବ ଏବଂ ତାହାଦ୍ୱାରା ଲୋକମାନଙ୍କର କେଉଁ କଲ୍ୟାଣ ବା ସାଧିତ ହେବ ?

## ଛପ୍‌ପୟ

କବ ହୌଂ ବୃନ୍ଦାବନ୍ଦିନ ଧୂରମେଂ ଲୋଟ ଲଗାଊଁ ।
କବ କୁଞ୍ଜନ ମେଂ ବୈଠି ପ୍ରିୟା ପ୍ରିୟତମ ଛବି ଧ୍ୟାଊଁ ।।
କବ ଘର ଘର ତେଂ ଟୂଁକ ମାଁଗି ପରସାଦ ପାଊଁ ।
କବ ଲଳିତାଦିକ ଲଲୀ ଲଡ଼େଂତ ଲଡ଼ି ଲଡ଼ାଊଁ ।।
କବ ଲଖି ଶ୍ୟାମା ଶ୍ୟାମ ଛବି ହୋ ହି ହରୌ ସୁଧି ବୁଧି ତରତ ।
କବ ଇନ ନୟନନ ତେଂ ଲଖୁଁ, ରସମୟ ରାସ ବିଳାସ ନିତ ।।

ସଙ୍କୀର୍ତ୍ତନ ଭବନ,
ପ୍ରତିଷ୍ଠାନପୁର ପ୍ରୟାଗ
ଚୈତ୍ର କୃଷ୍ଣା ପଞ୍ଚମୀ
ସମ୍ବତ୍ ୨୦୦୭

ବିନୀତ
ପ୍ରଭୁଦତ୍ତ



# ରାସେଶ୍ୱରଙ୍କ ରାସେଚ୍ଛା

ଭଗବାନପି ତା ରାତ୍ରୀଃ ଶରଦୋତ୍ଫୁଲ୍ଲମଲ୍ଲିକାଃ ।
ବୀକ୍ଷ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ॥
(ଶ୍ରୀ ଭା ୧୦ ସ୍କ, ୨୯ ଅ ୧ ଶ୍ଳୋକ)

## ଛପ୍ପୟ

ବ୍ରଜ ବନିତନି ଅନୁରାଗ ନବଲମହୁଁ ଜତ ନବ ବିକସତ ।
ଗିରଧର ନଟବର ନାମ ସୁନତ ଅତିଶୟ ହିୟ ହୁଲସତ ॥
ପ୍ରଥମ ସ୍ରବନ ଫଁସି ଗୟେ ନୟନ ପୁନି ଭୟେ ପରାୟେ ।
ମନ ଅଟକ୍ୟୋ ଲଖି ରୂପ ଜଗତ କେ କାଜ ଭୁଲାୟେ ॥
ନାମ ଶ୍ରବନ ପୁନି ଦରଶ କରି, ଚିତ୍ତ ପରମ ହିତ ଅଡ଼ି ଗୟୋ ।
ପରସ ପାଇ ପୁନି କେଲି ହିତ, ସୁରତି ଭାବ ଜାଗ୍ରତ ଭୟୋ ॥

ପ୍ରେମର ପଥ ବଡ଼ ହିଁ ବନ୍ଧୁର । ପ୍ରେମ ହେଉଛି ମନର ଅନୁକୂଳ ମାର୍ଗ । ସଂସାରରେ ପ୍ରେମ ନ କରିଥିବା ବ୍ୟକ୍ତି ଏମିତି କେହି ନାହାନ୍ତି । ଏମିତି କେହି ନାହାନ୍ତି ଯାହାଙ୍କ ମନରେ ପ୍ରେମ କରିବାର ଅଭିଳାଷ ଜାଗ୍ରତ ହୋଇ ନଥାଏ । ପ୍ରେମ କୌଣସି ଗୋଟିଏ ଅପରିଚିତ ଜିନିଷ ନୁହେଁ । ପ୍ରେମକୁ ସମସ୍ତେ ଜାଣନ୍ତି । ପଶୁ-ପକ୍ଷୀ, କୀଟ-ପତଙ୍ଗ ଆଦି ପ୍ରେମ କରିବା ତ ସମସ୍ତେ ଜାଣନ୍ତି । ପ୍ରଭେଦ ହେଉଛି ଏତିକି ଯେ ଜଣକର ନିତ୍ୟ ପ୍ରତି ପ୍ରେମ ଥିଲାବେଳେ ଆଉ ଜଣଙ୍କର ଥାଏ ଅନିତ୍ୟ ପ୍ରତି ପ୍ରେମ । ଗୋଟିଏ ପ୍ରେମ ବିମ୍ବ ପ୍ରତି ଥିଲାବେଳେ ଆଉ ଗୋଟିଏ ପ୍ରେମ ଥାଏ ପ୍ରତିବିମ୍ବ ପ୍ରତି । ଗୋଟିଏ ପ୍ରେମ ସତ୍ୟ ପ୍ରତି ଥିଲାବେଳେ ଆଉ ଗୋଟିଏ ପ୍ରେମ ଥାଏ ଅସତ୍ୟ ପ୍ରତି । ସତ୍ୟ ପ୍ରତି କରାଯାଉଥିବା ପ୍ରେମ ଅସତ୍ୟ ହୋଇଥାଏ । ତାହାକୁ ହିଁ କୁହାଯାଏ ମୋହ । ସତ୍ୟ ପ୍ରତି କରାଯାଉଥିବା ପ୍ରେମ ହେଉଛି ମୁକ୍ତିର କାରଣ । ଅସତ୍ୟ ପ୍ରତି କରାଯାଉଥିବା ମୋହ ହେଉଛି ବନ୍ଧନର କାରଣ । ପ୍ରେମ କରିବା ଦୈବେଚ୍ଛାରେ ହୁଏନାହିଁ, ଏହା ହୁଏ ପୂର୍ବଜନ୍ମଗୁଡ଼ିକର ସଂସ୍କାର ବଳରେ । ଲୋକମାନଙ୍କ ମଧ୍ୟରେ ବି ସମସ୍ତଙ୍କ ପ୍ରତି ପ୍ରେମଭାବ ଆସେ ନାହିଁ । ଯାହାଙ୍କଠାରେ ମନ ମିଳିଥାଏ ତାଙ୍କ ପ୍ରତି ପ୍ରେମଭାବ ଆସିଥାଏ । ମନ ନ ମିଳିଲେ

ପାର୍ଥକ୍ୟ ଥିଲେ ବି ପ୍ରେମଭାବ ଆସି ନଥାଏ । ପ୍ରେମର ସହାବରେ ଯେଉଁ ପରିସ୍ଥିତି ପରମାର୍ଥ ପ୍ରତି ମଧ୍ୟ ଠିକ୍ ସେହି ପ୍ରକ୍ରିୟା । ପ୍ରଭେଦ ହେଉଛି ଏତିକି ଯେ ସଂସାରର ପ୍ରେମାସ୍ପଦ ବିନାଶଶୀଳ ଓ ଅନିତ୍ୟ, ପରମାର୍ଥ-ପଥର ପ୍ରେମାସ୍ପଦ ନିତ୍ୟ ଓ ଶାଶ୍ୱତ । ଭଗବାନଙ୍କ ଭିନ୍ନ ଭିନ୍ନ କାର୍ଯ୍ୟ ଲାଗି ଭିନ୍ନ ଭିନ୍ନ ଅବତାରମାନ ହୋଇଥାନ୍ତି । କୌଣସି ଅବତାର ଜ୍ଞାନର ପ୍ରସାର ନିମିତ୍ତ, ଜ୍ଞାନର ମହତ୍ତ୍ୱ ପ୍ରତିପାଦନ କରିବା ନିମିତ୍ତ ହୋଇଥାନ୍ତି, ଠିକ୍ ଯେମିତି ହଂସ, କପିଳାଦି ଅବତାର । କୌଣସି ଅବତାର ବୋଧପ୍ରସାର ନିମିତ୍ତ ହୋଇଥାନ୍ତି, ଠିକ୍ ଯେମିତି ବ୍ୟାସାଦି ଅବତାର । କୌଣସି ଅବତାର ଧର୍ମ-ସଂସ୍ଥାପନା ଲାଗି ହୋଇଥାନ୍ତି, ଠିକ୍ ଯେମିତି ଯୁଗାବତାର । ଆଉ କୌଣସି ଅବତାର ମର୍ଯ୍ୟାଦାର ସ୍ଥାପନା ଲାଗି ହୋଇଥାନ୍ତି । ଯଥା ଶ୍ରୀରାମାଦି ଅବତାର, କିନ୍ତୁ ଶ୍ରୀକୃଷ୍ଣାବତାରଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ପ୍ରେମ-ଭାବର ପ୍ରସାର କରିବା । ଶ୍ରୀକୃଷ୍ଣାବତାରରେ ଯେପରି ପ୍ରେମର ଉତ୍କର୍ଷ, ଲୀଳାସମୃଦ୍ଧ ଦେଖା ଦେଇଛି, ଯେପରି ପ୍ରେମର ସୁଖଦାୟିନୀ ନଦୀକୁ ବୁହାଇ ଦିଆଯାଇଛି, ସେଭଳି କେଉଁଠି ହେଲେ କୌଣସି ଅବତାରରେ ବି ମିଳିବ ନାହିଁ । ସେଥିପାଇଁ ଏହି ଅବତାରକୁ ପୂର୍ଣ୍ଣତମ ଅବତାର ବୋଲି ସମସ୍ତେ ମାନନ୍ତି । ରାସ-ଲୀଳା ହେଉଛି ପ୍ରେମର ପରାକାଷ୍ଠା । ପ୍ରେମର ପ୍ରଧାନତଃ ତିନିଗୋଟି ଅବସ୍ଥା ବିଦ୍ୟମାନ । ପୂର୍ବାନୁରାଗ ହେଉଛି ଅଙ୍କୁର । ମିଳନ ହେଉଛି ଫୁଲରେ ଭରପୂର ଥିବା ପୂର୍ଣ୍ଣ ବୃକ୍ଷ ଏବଂ ବିରହ ହେଉଛି ଏହାର ପକ୍ୱ ଫଳ ଯାହାକି ମଧୁଠାରୁ ଆହୁରି ଅଧିକ ମଧୁର । ପୂର୍ବାନୁରାଗର ପରାକାଷ୍ଠା ହେଉଛି ଦର୍ଶନ ସୁଖ, ମିଳନର ପରାକାଷ୍ଠା ହେଉଛି ରାସ-ବିଳାସ; ଏବଂ ବିରହର ପରାକାଷ୍ଠା ହେଉଛି ବିରହ ଦଶା ମୃତ୍ୟୁ । ଏହି ସାଧାରଣ ଭାବରେ ଉପରକୁ ଜଣାପଡୁଥିବା ଭିନ୍ନତାକୁ ଲୁଚା ଯାଇଥାଏ । ବାସ୍ତବରେ ପ୍ରେମର କେବେହେଲେ ବିୟୋଗ ଘଟି ନଥାଏ । ନିତ୍ୟ ସଂଯୋଗର ନାମହିଁ ହେଉଛି ପ୍ରେମ । ବିରହ ହେଉଛି ମିଳନର ଏକ ଅବସ୍ଥା ବିଶେଷ । 'ମିଲେ ରହତ ମାନୋ୨ କବହୁଁ ମିଲେ ନା' ।

ସୂତ କହୁଛନ୍ତି—"ହେ ମୁନିମାନେ ! ମୁଁ ଏବେ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଦିବ୍ୟାତିଦିବ୍ୟ ରାସଲୀଳାର ବର୍ଣ୍ଣନ କରିବାକୁ ଚାହୁଁଛି । ଆପଣମାନେ ମତେ ଅନୁମତି ଦେଲେ ମୁଁ ତାହା ବର୍ଣ୍ଣନ କରନ୍ତି । ଗୋଟିଏ କଥା ମୋ' ମନରେ ଆସୁଛି, ଏହି ବିଷୟଟି ମୁଁ ଛାଡ଼ିଦିଅନ୍ତି; କାରଣ ଏହାର ବର୍ଣ୍ଣନରେ ମତେ ଭୟ ଲାଗୁଛି ।"

ଶୌନକ କହିଲେ—"ହେ ସୂତ ! ଭଗବାନ ଚରିତ ବର୍ଣ୍ଣନ କରିବାରେ ଭୟର ଅବକାଶ କେଉଁଠି ? ତାହା ତ ନିର୍ଭୟ ହୋଇ ବର୍ଣ୍ଣନ କରିବା ଉଚିତ । ଭଗବାନଙ୍କ ଚରିତ ତ ଭୟକୁ ନଷ୍ଟ କରି ଦେଇଥାଏ । ଅତଏବ ପରମ ମଧୁରାତିମଧୁର ରାସଲୀଳାର ବର୍ଣ୍ଣନରେ ଭୟ କାହିଁକି କରୁଛନ୍ତି ?"

ଏଥିରେ ସୂତ ଆବଶ୍ୟକତାଠାରୁ ଅଧିକ ଗମ୍ଭୀର ହୋଇ ପଡ଼ିଲେ । ସେ କିଛି ସମୟ ଧରି ପାଟି ଫିଟାଇଲେ ନାହିଁ । ତାହାପରେ ନିଜକୁ କିଛିଟା ସମ୍ଭାଳି ନେଇ ସେ କହିଲେ—"ଭଗବନ ! ଭଗବାନଙ୍କ ଚରିତ ବର୍ଣ୍ଣନ କରିବାରେ ଅବଶ୍ୟ ଭୟର କିଛି କାରଣ ନାହିଁ ; କିନ୍ତୁ ଏହି ରାସଲୀଳାର ପ୍ରସଙ୍ଗଟି ଏତେକ ଗୂଢ଼ାତିଗୂଢ଼ ଯେ ଏହାକୁ ସାଧାରଣ ଭାଷାରେ ପ୍ରକାଶ କରିବା ଅତ୍ୟନ୍ତ କଠିନ । ଯେଉଁଠାରେ ଏହାର ବର୍ଣ୍ଣନରେ ପ୍ରାକୃତ ବୁଦ୍ଧି ଆସିଯିବ, ସେଠାରେ ଶ୍ରୋତା ଓ ବକ୍ତା ଉଭୟଙ୍କର ପତନ ହେବ । ସିଂହୀର ଦୁଗ୍ଧ ସୁବର୍ଣ୍ଣ ପାତ୍ରରେ ହିଁ ରହିପାରିବ । ଅନ୍ୟ ପାତ୍ରରେ ରଖିଲେ ସେହି ପାତ୍ରଟି ଫାଟିଯିବ । ଠିକ୍ ଅନୁରୂପ ଭାବରେ ନିର୍ମଳ ମନରେ ହିଁ ଏହି ଲୀଳା ରହିପାରିବ । ଯେଉଁମାନେ ଏହାକୁ ସାଧାରଣ ସ୍ତ୍ରୀ-ପୁରୁଷଙ୍କ କାମ-କ୍ରୀଡ଼ା ବୋଲି ବୁଝିବେ, ସେମାନଙ୍କର ନିଶ୍ଚିତ ଭାବରେ ପତନ ହେବ ; ତେଣୁ ମତେ ଭୟ ଲାଗୁଛି, କାଳେ ମୁଁ ଏହାର ଯଥାର୍ଥ ବର୍ଣ୍ଣନ କରି ପାରିବ ନାହିଁ । ଆପଣଙ୍କ ଅର୍ଥେ ତ ମୋ' ପାଇଁ କିଛି ହେଲେ ଭୟ ନାହିଁ । ଆପଣ ତ କାମ, କ୍ରୋଧାଦିରୁ ରହିତ ବାଳବ୍ରହ୍ମଚାରୀ । ଆପଣ ଭଗବାନ ନନ୍ଦନନ୍ଦନଙ୍କ କୃପା ପାତ୍ର । ମୋ'ର ତ ଭୟ ନିଜ ଉପରେ ହିଁ ଅଛି । ମୁଁ କାହିଁ ଅନ୍ୟ ଅର୍ଥକୁ ବହି ନ ଯାଏଁ ।"

ଏଥିରେ ହସି ହସି ଶୌନକ କହିଲେ—"ନାହିଁ ସୂତ ନାହିଁ ! ଆପଣ ଚିନ୍ତା କରନ୍ତୁ ନାହିଁ । ମଙ୍ଗଳମୟ ଭଗବାନ୍ ସବୁ ମଙ୍ଗଳ ହିଁ କରିବେ । ଯାହାଙ୍କ ହୃଦୟରେ ବସିରହି ଭଗବାନ୍ ନିଜର ଭୁବନପାବନୀ ମଙ୍ଗଳମୟୀ କଥାର ସ୍ରୋତକୁ ବୁହାଉଛନ୍ତି, ତାଙ୍କ ମନରେ କାମ, କ୍ରୋଧାଦିର ବିକାର କିପରି ବା ଆସି ପାରିବ ? କୌଣସି ବିଶେଷ କାରଣରୁ ତାହା ଯଦି ଆସିଗଲା, ତେବେ ତାହା ତୁରନ୍ତ ହିଁ ନଷ୍ଟ ହୋଇଯିବ । ଆପଣ ଚିନ୍ତା କରନ୍ତୁ ନାହିଁ । ପ୍ରଥମେ ଆପଣ ଆମକୁ ପୂର୍ବାନୁରାଗର ସ୍ୱରୂପ ବୁଝାଇ ତାହାପରେ ଯାଇ ରାସ-ମିଳନର ଲୀଳା ଶୁଣାନ୍ତୁ ।"

ସୂତ କହିଲେ—"ଆହେ ମୁନିମାନେ ! ଏହି ବିଷୟଟି ଏତେକ ଗହନ ଓ ବିଶାଳ ଯେ ଏହାକୁ ଠିକଣା ରୂପେ ବର୍ଣ୍ଣନ କରିବା ଖାଲି ତ କଠିନ ନୁହେଁ, ଏହା ଅସମ୍ଭବ ମଧ୍ୟ । ଏହା ତ ହେଉଛି ଅନୁଭବର ବିଷୟ । ସାଧାରଣ ଭାଷାରେ କହିବାଦ୍ୱାରା ଏହାର ମହତ୍ତ୍ୱ ନଷ୍ଟ ହୋଇଯାଇଥାଏ । ଦେବ-ବାଣୀର ପୂର୍ଣ୍ଣଭାବ ପ୍ରାକୃତ ଭାଷାରେ ଆସିପାରିବ ନାହିଁ । ଠିକ୍ ସେମିତି ବିଶୁଦ୍ଧ-ପ୍ରେମର ବର୍ଣ୍ଣନ ଏହି ଲୌକିକ ଭାଷାରେ କରାଯାଇ ପାରିବ ନାହିଁ । ଆମେ ଯଦି କହିବସିବା, ତା'ହେଲେ ତହିଁରେ ଲୌକିକତା ଆସିଯିବ । ଆମେ ଯେଉଁ ବର୍ଣ୍ଣନ କରିବା ତାହା ପ୍ରେମ ନୁହେଁ । ଆମେ ଅଙ୍ଗୁଳି ସାହାଯ୍ୟରେ ଚନ୍ଦ୍ରକୁ ଦେଖାଇ କହୁଥାଉଁ, 'ଦେଖ ମୋ' ଅଙ୍ଗୁଳି ଆଗରେ ଗଛ ଉପରେ ଚନ୍ଦ୍ର ଅଛନ୍ତି ।' ଚନ୍ଦ୍ର କିନ୍ତୁ ଗଛରେ ନଥାନ୍ତି କିମ୍ବା ଅଙ୍ଗୁଳି ଆଗରେ ନଥାନ୍ତି । କେବଳ ଏହି ଦୁଇ

ସଙ୍କେତଦ୍ୱାରା ଚନ୍ଦ୍ରଙ୍କ ପ୍ରତି ଦୃଷ୍ଟି ଆକୃଷ୍ଟ କରାଯାଇଥାଏ । ଏହି ପ୍ରେମ କଥା ମଧ୍ୟ ଠିକ୍ ସେମିତି । ଏହିଭଳି ଭାବରେ ପ୍ରକୃତ ଭାଷାରେ ପ୍ରେମ ସମ୍ବନ୍ଧରେ ମୁଁ ଯାହା କିଛି କହିବି ତାହା କେବଳ ହେବ ପ୍ରେମର ଛାୟା ମାତ୍ର । ତାହାଦ୍ୱାରା ସେହି ଅଦ୍ଭୁତ ରସ ବିଷୟରେ ଅନୁମାନ କରି ତାହାକୁ ଅନୁଭବ କରାଯାଇ ପାରିବ ।

"କାହାର ହୃଦୟରେ ପ୍ରେମର ଉଦୟ ହେବ, କେବେ ଉଦୟ ହେବ, କେଉଁ କାରଣରୁ ଉଦୟ ହେବ, କେଉଁଠାରେ ଉଦୟ ହେବ, ଏହି କଥାଗୁଡ଼ିକର କିଛି ହିଁ ନିୟମ ନାହିଁ । ତାହା ବିଷୟରେ ଶୁଣିକରି, ପଢ଼ିକରି ଅଥବା ଅନ୍ୟ କାହାଠାରୁ ପରିଚୟ ପାଇକରି ହୃଦୟରେ ତା' ପ୍ରତି ଆକର୍ଷଣ ଆସିଥାଏ । ଯାହା ପ୍ରତି ଆକର୍ଷଣ ଆସିଯାଏ, ତା'ର ନାଁ ପ୍ରିୟ ହେବାକୁ ଲାଗେ । କାହାର ମୁହଁରୁ ତା'ର ଚର୍ଚ୍ଚା ଶୁଣିଲେ, ତା'ର କୌଣସି ପ୍ରସଙ୍ଗରେ ନାଁଟି ଆସିଗଲେ ଶୁଣିବା ମାତ୍ରେ ହିଁ ଅନୁରାଗ ଚମକି ଉଠିଥାଏ । କାନ ଚାହୁଁଥାଏ, ତା'ର ଚର୍ଚ୍ଚା ହିଁ ଶୁଣିବାକୁ ମିଳୁ । ପ୍ରେମର ସ୍ୱରୂପ ହେଉଛି ଗୋଟିଏ ସ୍ଥିତିରେ ସନ୍ତୁଷ୍ଟ ନରହିବା । ପ୍ରେମ ନିତ୍ୟ ନୂତନତା ଚାହିଁଥାଏ । ପ୍ରତିଟି କ୍ଷଣ ପ୍ରେମ ବଢ଼ି ବଢ଼ି ଯାଉଥାଏ । ପ୍ରେମ ଓ ମୋହର ଏଇଁଠା ହେଉଛି ପରିଚୟ । କାହା ପ୍ରତି ମୋହ ଆସିଲେ, ତାହା କିଛିଦିନ ପରେ ମିଳାଇ ଯାଇଥାଏ, ତୁଟି ଯାଇଥାଏ । ମୋହ-କ୍ଷୟର ନାମ ହେଉଛି ମୋକ୍ଷ । ଜ୍ଞାନ ହେବା ପରଠାରୁ ସମସ୍ତଙ୍କର ମୋହ ନଷ୍ଟ ହୋଇଯାଇଥାଏ ; କିନ୍ତୁ ପ୍ରେମ ବଢ଼ି ବଢ଼ି ଚାଲିଥାଏ । ସେଥିରେ କେବେହେଲେ ହ୍ରାସ ହୋଇ ନଥାଏ । କେତେ ପର୍ଯ୍ୟନ୍ତ ତାହା ବଢ଼ିବ, ତାହାର କିଛି ସୀମାହିଁ ନଥାଏ । ତାହାର ତ କେଉଁଠି ହେଲେ ସୀମା ଥିବ ? ନାଁ ତାହାର କୌଣସି ସୀମା ନଥାଏ । ତାହା ଥାଏ ସୀମାଶୂନ୍ୟ; ତାହାର ଆରପାରି ନଥାଏ । ତାହା ଖାଲି ବଢ଼ି ଚାଲିଥାଏ—ଖାଲି ବଢ଼ି ହିଁ ଚାଲିଥାଏ । ବଢ଼ି ଚାଲିବା ହେଉଛି ତାହାର ସ୍ୱଭାବ, ଧର୍ମ ଓ ପ୍ରକୃତି । ଲୋଭୀ ଲୋକ ପାଖରେ ଯେତେ ଧନ ହେଲେ ବି ତା'ର ତୃପ୍ତି ହୋଇ ନଥାଏ । ସଦାସର୍ବଦା ଅଧିକ ପାଇବାର ଅଭିଳାଷ ତା'ର ହୃଦୟରେ ଜାଗି ରହିଥାଏ । ହୃଦୟରେ ଯେତେବେଳେ ପ୍ରେମର ସୃଷ୍ଟି ହୁଏ, ସେତେବେଳେ ଆମର ଆଖିରେ ତାକୁ ଦେଖିନେବା ପାଇଁ ଇଚ୍ଛା ହୁଏ । ବାସ୍ ସେତିକି । ଆଉ କିଛି ଆମର ଦରକାର ନାହିଁ । ଚକ୍ଷୁ ଚାହୁଁଥାଏ, ତା'କୁ ଆଖି ଭରି ଆମେ ଆଉ ଥରେ ଦେଖି ନଥାନ୍ତେ । ହୃଦୟ ଚାହୁଁଥାଏ, ସବୁବେଳେ ତାକୁ ଆମେ ଦେଖୁଥାନ୍ତେ । ମୁହୂର୍ତ୍ତିକ ପାଇଁ ବି ସେ ଆମଠାରୁ ପୃଥକ୍ ହୁଅନ୍ତା ନାହିଁ ଏବଂ ସବୁଦା ହିଁ ଆମ ଆଗରେ ଠିଆ ହୋଇ ରହନ୍ତା, ସେ ବି ତ ଥାଏ ସ୍ୱତନ୍ତ୍ର । ସେ ଆମକୁ ଚାହୁଁଛି କି ନାହିଁ ସେ ବିଷୟରେ ବି ସନ୍ଦେହ ଥାଏ । ସେ ଚାହୁଁ କିମ୍ବା ନଚାହୁଁ ସେଥିରେ କିଛି ଯାଏଆସେ ନାହିଁ । ପ୍ରେମକୁ ସବୁବେଳେ ଏକାଙ୍ଗୀ ବୋଲି କୁହା ଯାଇଥାଏ; ଅଉ ମଧ୍ୟ ଅନ୍ଧ ବୋଲି କୁହାଯାଇ ଥାଏ । ପ୍ରେମ କୌଣସି ଗୁଣକୁ ଅପେକ୍ଷା ରଖି ନଥାଏ । ଯେଉଁ ପ୍ରେମ ଗୁଣକୁ ଅପେକ୍ଷା ରଖିଥାଏ

ତାହାର ନାମ ହେଉଛି ଶ୍ରଦ୍ଧା । ଯାହାର ହୁଏତ ବଡ଼ ପ୍ରଭାବ ଅଛି । ତା'ର ପ୍ରଭାବକୁ ଦେଖି ଆମର ତା' ଉପରେ ଶ୍ରଦ୍ଧା ହୋଇଗଲା । କିଏ ଜଣେ ବଡ଼ ତ୍ୟାଗୀ ଅଥବା ତପସ୍ୱୀ, କିମ୍ବା ସୁନ୍ଦର ଅବା ବଳବାନ୍ ପୁରୁଷ । ଯେତେବେଳେ ତା'ଠାରେ ସେହି ଗୁଣଗୁଡ଼ିକ ନରହେ, ସେ ତ୍ୟାଗୀରୁ ଅନୁରାଗୀ ହୋଇ ଉଠେ, ସୁରୂପରୁ କୁରୂପ ହୋଇଉଠେ, ତପସ୍ୱୀରୁ ଭୋଗୀ ହୋଇଉଠେ ଅଥବା ଖରାପ କର୍ମ ହେତୁ ତା'ର ପ୍ରଭାବ ମଳିନ ହୋଇଯାଏ, ସେତେବେଳେ ଆମର ଶ୍ରଦ୍ଧା ବି ମଉଳି ଯାଏ; କିନ୍ତୁ ପ୍ରେମରେ ଏଭଳି କଥା ଘଟେ ନାହିଁ । ପ୍ରେମୀ ତ କହୁଥାଏ, ସେ ସୁନ୍ଦର ହେଉ, କୁରୂପ ହେଉ, ଗୁଣୀ ହେଉ, ନିର୍ଗୁଣ ହେଉ, ଆମକୁ ପ୍ରେମ କରୁଥାଉ । ଚାହିଁଲେ ବି ସେ ଆମକୁ ପ୍ରତାରଣା କରୁ । ଚାହିଁଲେ ଆମକୁ ସେ ନିଜର କରି ନେଉ ଅଥବା ଘୃଣା କରୁ । ଆମର ତ ସବୁ ହିଁ ହେଉଛି ସେହି । ଏଭଳି କଥାସବୁ ହେବା ପରେ ବି ଏହା ସମ୍ଭବ ନୁହେଁ ଯେ ଯାହାକୁ ଆମେ ପ୍ରେମ କରୁଛେଁ ସେ ସର୍ବଦା ଆମଠାରେ ଲଗ୍ନ ହୋଇ ରହିଥିବ । ସଂସାରରେ ଏ କଥା ବି ଦେଖାଯାଏ ଯେ ବଡ଼ ବଡ଼ ତ୍ୟାଗୀ ବିରାଗୀମାନେ ମଧ୍ୟ ପ୍ରେମର ଆକର୍ଷଣ ନିକଟରେ ନଇଁ ଯାଇଥାନ୍ତି । ପୁଣି ତ ନନ୍ଦନନ୍ଦନଙ୍କୁ ରସିକ ଶେଖର ବୋଲି କହିବାକୁ ହେବ । ସେ ତ ପ୍ରେମର ଏକମାତ୍ର ସ୍ୱରୂପ । ପ୍ରେମହିଁ ହେଉଛି ତାଙ୍କର ଆହାର । ତାଙ୍କର ସକଳ ଚେଷ୍ଟା ନିଜର ପ୍ରେମୀମାନଙ୍କ ପାଇଁ ଉଦ୍ଦିଷ୍ଟ । ପ୍ରୀତିର ରୀତି ତ ସେଇ ହିଁ ଜାଣନ୍ତି ।

ଯାହା ପ୍ରତି ହୃଦୟରେ ପ୍ରେମଭାବ ଜାତ ହୁଏ, ତାକୁ ଦେଖିବାପାଇଁ ଆଖି ଦୁଇଟି ଅଧୀର ହୋଇଉଠେ । ଯେଉଁ ରାସ୍ତା ଦେଇ ସେ ଯାଉଥାଏ, ସେଠାରେ ପହର ପହର ଧରି ଠିଆ ହୋଇ ଆମେ ତା'ର ପ୍ରତୀକ୍ଷା କରି ରହିଥାଉଁ । ଯଦିଓ ଆମକୁ ଜଣାଥାଏ ଯେ, ଏହି ବାଟରେ ସେ କଦାପି ଯାଏନାହିଁ, କେବେ କେବେ ଯାଏ; ତଥାପି କିନ୍ତୁ ସେହି କେବେର ନିଶ୍ଚୟ କିଛି ତ ନଥାଏ । ଏବେ ହୁଏତ ସେ ଆସି ଯାଇପାରେ ; ତେଣୁ ପ୍ରତିଟି ପତ୍ରର ମଡ଼ ମଡ଼ ଶବ୍ଦରେ ହୃଦ-ତଳ ଚକିତ ହେବାକୁ ଲାଗିଥାଏ ଏବଂ ଆଖି ସେହି ଆଡ଼କୁ ଗ୍ରୁଏଁ ଗ୍ରୁଏଁ ଟାଣି ହୋଇ ଯାଇଥାଏ । ଏହି ପ୍ରତୀକ୍ଷାରେ କେତେ ଯେ ସୁଖ ଅଛି, ଯେଉଁ ଲୋକ କେବେ କାହାକୁ ପ୍ରତୀକ୍ଷା କରିଛି, ସେହି ହିଁ ଅନୁଭବ କରିପାରିବ ।

“ଗୋକୁଳର ସମସ୍ତ ଗୋପାଙ୍ଗନାଙ୍କର ଶ୍ୟାମସୁନ୍ଦରଙ୍କ ପ୍ରତି ଥିଲା ସହଜ ଅନୁରାଗ । ଯେଉଁମାନଙ୍କର ବାତ୍ସଲ୍ୟ-ଭାବ ଥିଲା, ସେମାନେ ତାଙ୍କୁ ବାଳକ ଜ୍ଞାନ କରି ପ୍ରେମ କରୁଥିଲେ । ଯେଉଁମାନଙ୍କଠାରେ ମଧୁର-ଭାବ ଥିଲା, ସେମାନେ ଶ୍ରୀକୃଷ୍ଣଙ୍କୁ ଶ୍ରେଷ୍ଠ ପ୍ରେମିକ ବୋଲି ଜ୍ଞାନ କରି ପ୍ରେମ କରୁଥିଲେ । ଏହି ବ୍ରଜାଙ୍ଗନାମାନଙ୍କ ମଧ୍ୟରେ ଅନେକ ଥିଲେ କୁମାରୀ । ସେମାନେ ଚାହୁଁଥିଲେ ଶ୍ରୀକୃଷ୍ଣଙ୍କୁ ପତି ରୂପରେ ପାଇବା ପାଇଁ । ଆଉ କେତେକ ଏଭଳି ଥିଲେ ଯେଉଁମାନଙ୍କର କି ଲୌକିକ ପତିମାନେ ବି ଥିଲେ । ଜଣେ ପତିଙ୍କୁ ଛାଡ଼ି ଯେ ଦ୍ୱିତୀୟ ପତିଙ୍କ ସହିତ ସମ୍ବନ୍ଧ ରଖେ, ତାକୁ ବ୍ୟଭିଚାରିଣୀ ଦୁଷ୍ଟା ସ୍ତ୍ରୀ ବୋଲି

କୁହାଯାଏ । ଉପପତିଙ୍କ ନାମ ଜାର । ସେଥିପାଇଁ ଏହି ସମ୍ବନ୍ଧକୁ ଜାର-ସମ୍ବନ୍ଧ ବୋଲି କୁହାଯାଏ ; କିନ୍ତୁ ଏକଥା ସାଧାରଣ ଲୋକମାନଙ୍କ ପାଇଁ ପ୍ରଯୁଜ୍ୟ । ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କଠାରେ ଯେଉଁମାନଙ୍କର ପତି-ସମ୍ବନ୍ଧ ରହିଛି, ତାହାହିଁ ତ ହେଉଛି ବାସ୍ତବିକ ସମ୍ବନ୍ଧ । ଲୌକିକ ଦୃଷ୍ଟିରେ ଏହାକୁ ଜାର-ସମ୍ବନ୍ଧ କୁହାଯାଇଥାଏ । ପ୍ରେମର ମର୍ମକୁ ବ୍ୟକ୍ତ କରିବାପାଇଁ ତ ତାହା ପାଖରେ ଶବ୍ଦକୋଷ ହିଁ ନାହିଁ ।"

"ଗୋପୀମାନଙ୍କ ମଧ୍ୟରେ କେତେ ପ୍ରକାର ଗୋପୀ ଅଛନ୍ତି ! କେହି କେହି ହେଉଛନ୍ତି ନିତ୍ୟ ପରିବୃଢା, ଯେଉଁମାନେ ଶ୍ରୀକୃଷ୍ଣଙ୍କର ଯଥାର୍ଥ ସ୍ୱରୂପକୁ ବୁଝିପାରିଥାନ୍ତି । ସେମାନେ ଜାଣିଥାନ୍ତି ଯେ ଶ୍ରୀକୃଷ୍ଣ ଗୋପୀକା-ନନ୍ଦନ ନୁହନ୍ତି । ସେ ହେଉଛନ୍ତି ଅଖିଳ ପ୍ରାଣୀଙ୍କର ଅନ୍ତରାତ୍ମା ସ୍ୱରୂପ । ଆଉ କେତେକ ଗୋପୀ ଅଛନ୍ତି, ଯେଉଁମାନେ ଶ୍ରୀକୃଷ୍ଣଙ୍କୁ ପରମ ଶ୍ରେଷ୍ଠ ଜ୍ଞାନ କରି ପ୍ରେମ କରିଥାନ୍ତି । ଆଉ କେତେକ ଏପରି ଅଛନ୍ତି, ଯେଉଁମାନେ ତାଙ୍କର ଯଥାର୍ଥ ସ୍ୱରୂପକୁ ଭଲଭାବରେ ନବୁଝି ତାଙ୍କ ପ୍ରତି ଆସକ୍ତ ହୋଇଥାନ୍ତି । ସେମାନେ ଶ୍ରୀକୃଷ୍ଣଙ୍କ ଦର୍ଶନ ଲାଗି ଦିନରାତି ବ୍ୟାକୁଳ ହୋଇ ଉଠିଥାନ୍ତି । ଲୋକ ଦୃଷ୍ଟିରେ ତ- ଶ୍ରୀକୃଷ୍ଣଙ୍କ ବୟସ ଥିଲା ୯-୧୦ ବର୍ଷ ଭିତରେ ; କିନ୍ତୁ ମଧୁର-ଭାବର ଉପାସିକାମାନଙ୍କ ପାଇଁ ସେ ଥିଲେ ନିତ୍ୟ କିଶୋର । ଏହି ରହସ୍ୟକୁ ବାତ୍ସଲ୍ୟ ଭାବର ଉପାସିକା ଗୋପୀମାନେ ବୁଝିପାରି ନଥିଲେ ।"

"ଘର ଭିତରେ ରହୁଥିବା ଗୋପୀମାନେ ଇଚ୍ଛା କଲେ ବି ସବୁବେଳେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହୋଇପାରୁ ନଥିଲେ । ଶ୍ରୀକୃଷ୍ଣ ସ୍ୱଚ୍ଛନ୍ଦରେ ବୁଲାବୁଲି କରୁଥିଲେ ଏବଂ ସେମାନେ ଥିଲେ ଅନ୍ତଃପୁରରେ ରହୁଥିବା ନାରୀ । ଶ୍ରୀକୃଷ୍ଣଙ୍କ ସହିତ ମିଶିବାପାଇଁ ତିନୋଟି ମାତ୍ର ଅବସର ଥିଲା । ପ୍ରଥମ ଅବସର ହେଲା ଯେତେବେଳେ ଘରୁ ବାହାରି ମାଠିଆ ଧରି ସେମାନେ ପାଣି ଆଣିବାପାଇଁ ନଦୀ-ଘାଟକୁ ଯାଉଥିଲେ । ଦ୍ୱିତୀୟ ଅବସର ହେଲା ଯେତେବେଳେ ସେମାନେ ଗୋଶାଳାକୁ ଗୋବର ଗୋଟାଇବାପାଇଁ ଓ ଦୁଧ ଦୁହିଁବାପାଇଁ ଯାଉଥିଲେ । ତୃତୀୟ ଅବସର ହେଲା, ଯେତେବେଳେ ସେମାନେ ଦହି ବିକିବାପାଇଁ ଯାଉଥିଲେ । ଏହି ତିନି ଅବସର ଛଡ଼ା ଅନ୍ୟ ସମୟରେ ବାହାରିଲେ ଶାଶୁ-ନଣନ୍ଦ ଅନେକ ପ୍ରକାର ସନ୍ଦେହ କରିବେ । ଘରେ ଦୁଆରେ ନାନା ପ୍ରକାର ଗୁଞ୍ଜରଣ ଉଠିବାକୁ ଲାଗିବ । ଅବଶ୍ୟ ପ୍ରେମର ଉତ୍କଣ୍ଠା ଏହି ବନ୍ଧନଗୁଡ଼ିକୁ ଆଦୌ ଗୁରୁତ୍ୱ ଦେଇ ନଥାଏ । ବରଂ ଏହି ବନ୍ଧନଗୁଡ଼ିକ ପ୍ରେମକୁ ପରିପୁଷ୍ଟ କରିଥାଏ । ପ୍ରେମର ସବୁକଥା ହେଉଛି ରହସ୍ୟମୟ । ଏହାର ବର୍ଣ୍ଣନ କେଵଳ ସଙ୍କେତରେ ହିଁ କରାଯାଇଥାଏ । ପତ୍ନୀ ପତିଙ୍କୁ ନିଜର ସର୍ବସ୍ୱ ସମର୍ପିତ କରିଦେଇଥାଏ । ଏ କଥା ସମସ୍ତେ ଜାଣନ୍ତି । ଅଥଚ ସମସ୍ତଙ୍କ ଆଗରେ ପତ୍ନୀ ପତିଙ୍କୁ କମା ଦେଖିବ ନାହିଁ । ଯଦିଓ ସେ ଦେଖିବ, ତେବେ ସେ ଓଢ଼ଣାର ପରଦା ତଳୁ

ହିଁ ଦେଖିବ । ସେହି ଓଡ଼ିଶାର ଅନ୍ତଃଥଳରୁ ଦେଖିବାରେ ହିଁ ଏକ ଅପୂର୍ବ ସୌନ୍ଦର୍ଯ୍ୟ ଅଛି ।"

"ହଁ, ଯେତେବେଳେ ଦର୍ଶନ ହୋଇଯାଏ, ସେତେବେଳେ ସ୍ୱର୍ଗର ଇଚ୍ଛା ନ ହୋଇଥାଏ । ଲବରୁ ଲୋଭ ବଢ଼ିଥାଏ । ତଥ୍ୟ ଗୃହିଁଥାଏ କୌଣସି ପ୍ରକାର ହେଲେ ଶ୍ୟାମଙ୍କ ଶ୍ରୀଅଙ୍ଗର ସ୍ପର୍ଶ ଟିକକ ପାଇବାପାଇଁ—ତାଙ୍କ ପ୍ରିୟ ମଧୁରବାଣୀ ଶୁଣିବାକୁ ମିଳିବାପାଇଁ । ସେମାନେ ଏକଥା ଜାଣନ୍ତି ଯେ ଶ୍ୟାମ କେବେ କେବେ ନଦୀଘାଟ ଆଡ଼େ ଯାଆନ୍ତି । ବ୍ରଜରେ ବ୍ରଜବାସୀ ସ୍ତ୍ରୀମାନେ ମଧ୍ୟ ମାଠିଆରେ ପାଣି ଭରିବାପାଇଁ ଯାଆନ୍ତି । ଯମୁନା ନଦୀ ପାଖରେ ଥିବାରୁ ସେଠାରୁ ସେମାନେ ପାଣି ଭରି ଆଣିଥାନ୍ତି । ଯମୁନା ଦୂର ହୋଇଥିଲେ ସେମାନେ କୂଅରୁ ପାଣି ଅଣିଥାନ୍ତି । ବ୍ରଜର ପାଣି ଘାଟର ଯେଉଁଭଳି ଦୃଶ୍ୟ, ସେଭଳି ଦୃଶ୍ୟ ବୋଧହୁଏ କୌଣସି ଦେଶରେ ସମ୍ଭବ ହୋଇ ପାରିବ ନାହିଁ । ବ୍ରଜର ମାଟି ଚକଣିଆ । ସେଠାରେ ଖପରଲ୍ କ'ଣ କେହି ଜାଣନ୍ତି ନାହିଁ । ସେଠାରେ ମାଟିର ହିଁ ଘରମାନ ହୋଇଥାଏ । ଛାତରେ କାଠର କଡ଼ି ପକାଇ ତାହା ଉପରେ ଲେପି ଦିଆଯାଇଥାଏ । ସେହି ମାଟି ଛାତ ଥିବା ଘର ବର୍ଷ ବର୍ଷ ଧରି ଚଳି ଆସୁଥାଏ । ପାଣି ଭରିବାର ଓ ପାଣି କାଢ଼ିବାର ବାସନକୁସନ ସବୁ ମାଟିରେ ତିଆରି ହୋଇଥାଏ । ଲୁହା ଓ କଂସା ବାସନ କୁସନର ପ୍ରଥା ଏବକୁ ଯିବା ଚଳୁଛି, ପୂର୍ବେ କେବଳ ମାଟିର ମାଠିଆ ଦ୍ୱାରା ହିଁ ପାଣି କଢ଼ା ଯାଉଥିଲା । ମାଟିର ଘୁମ ଗୁଡ଼ିକରେ ହିଁ ସମସ୍ତେ ପାଣି ଭରିକରି ରଖୁଥିଲେ । ସ୍ତ୍ରୀମାନେ ଅଟା ପେଷି କରି ଏବଂ ଦହି ଗୋଳେଇ କରି ପରେ ପାଣି ଆଣିବା ପାଇଁ ଯାଆନ୍ତି । ଚୁଲି ଓ ଚକିର କାମତ ଘର ଭିତରେ ହିଁ ହୋଇଥାଏ । ସେହି କାମ ମଇଳା ଲୁଗା ପିନ୍ଧି କରି ବି ହୋଇ ପାରିବ । ପାଣି ଆଣିବାକୁ ତ ବାହାରକୁ ଯିବାକୁ ପଡ଼ିଥାଏ; ତେଣୁ ସେଥିପାଇଁ ନୂଆ ଲୁଗା ପିନ୍ଧି ଯିବାକୁ ହୋଇଥାଏ । ବୟସ୍କା ବୃଦ୍ଧୀ ସ୍ତ୍ରୀମାନଙ୍କର କାମ ହେଲା ବୋହୂମାନଙ୍କ ଉପରେ ଆଦେଶ ଜାରି କରିବା, ସେମାନଙ୍କ କାମରେ ଦୋଷ ଦେଖିବା । ଶାଶୂ ଉପରେ ବି ତ କାମ ଅଛି । ବୋହୂ ରୁଟି ତିଆରି କରିବ ତ ଶାଶୂ ପରସିବ । ଶାଶୂ ଆଉ ଆଉଁ ବୋହୂ କେବେହେଲେ ପରସି ପାରିବ ନାହିଁ । ଘରେ ବୋହୂ ନଥିଲେ ଯାଇ ବୃଢ଼ୀକୁ ପାଣି ଆଣିବାଲାଗି ଯିବାକୁ ହେବ । ଏକେତ ଏହା ହେଉଛି ପରିଶ୍ରମର କାମ । ଦ୍ୱିତୀୟରେ ପାଣି ଆଣିବା, ରୁଟି ତିଆରି କରିବା ଆଦି ହେଉଛି ଯୁବତୀ ବୋହୂ ଓ କୁମାରୀ ଝିଅମାନଙ୍କ ଉପରେ ପଡ଼ିଥିବା କାମ, ସ୍ତ୍ରୀମାନେ ପାଣି ଆଣିବାକୁ ଗଲେ ସୁନ୍ଦର ଘାଗରା ପିନ୍ଧିବେ । ସେମାନଙ୍କ ଓଢ଼ଣୀ ଥିବ ଛୁଟ ଛୁଟ ଓ ରଙ୍ଗୀନ୍ ଏବଂ ତାହା ଚମକ ଉଠୁଥିବ । ସେମାନେ ଜୁଡ଼ାକୁ ଭଲକରି ବାନ୍ଧିଥିବେ । ଗୋଟିଏ ହାତରେ ସେମାନେ ଲମ୍ବା ଓଢ଼ଣୀଟିକୁ ବାହାର କରିଥିବେ । ମୁଣ୍ଡରେ ଠେକାଟିଏ ରଖି ତାହା ଉପରେ ସେମାନେ ବଡ଼ ମାଟିର ଗୋଟିଏ ଘଡ଼ା ରଖିଥିବେ । ତାହା ଉପରେ ଆଉ

ଗୋଟିଏ ପଉଡ଼ିଥିବ ଏବଂ ତାହା ଉପରେ ପୁଣି ମାଠିଆ, ଆଉ ଗୋଟିଏ ମାଠିଆ ସେମାନେ କାଖରେ ଧରି ରହିଥିବେ । ମାଠିଆ ଉପରେ ଦଉଡ଼ି ରଖି ଅଣ୍ଟାକୁ ହଲେଇ ହଲେଇ ଦୁଇ ଆଙ୍ଗୁଠିରେ ଓଢ଼ଣାକୁ ଟାଣି ତାହାର ଉହାଡ଼ରୁ ଚୁହିଁ ଚୁହିଁ ସେମାନେ ଯାଉଥିବେ । ପ୍ରାୟ ଏକା ସମୟରେ ସମସ୍ତେ ଯାଇଥାନ୍ତି । ରଙ୍ଗ-ବେରଙ୍ଗ ଶାଢ଼ୀ ପିନ୍ଧିଥିବା ବ୍ରଜନାରୀମାନେ ପାଣି-ଘାଟରେ ଅନେକବେଳେ ଜଣା ଯାଆନ୍ତି ଯେପରି ଅବା ସ୍ୱର୍ଗର ଅପ୍ସରାମାନେ ବସିଛନ୍ତି ! ଏହି ଯେଉଁ ସମୟଟି ମିଳେ ସେତେବେଳେ ଶାଶୁ-ନଣନ୍ଦଙ୍କର ଶାସନ ସେମାନଙ୍କ ଉପରେ ନଥାଏ । ସେମାନେ ମାଠିଆରେ ପାଣି ଭରନ୍ତି ଏବଂ ଅମିଳ୍ପବେଳେ ମନ ଖୋଲି ପରସ୍ପର ସହିତ କଥାବାର୍ତ୍ତା କରିବାକୁ ଲାଗନ୍ତି । ନିଜର ସୁଖ ଦୁଃଖ ସେମାନେ ଅପରକୁ ଶୁଣାନ୍ତି । ତେଣୁ ଏହି ସମୟଟିକୁ ସେମାନେ ଖୁବ୍ ସୁଖଦ ବୋଲି ଧରଥାନ୍ତି ।

ଏବେ ସାରା ବ୍ରଜରେ ଗୋଟିଏ ବିଷୟରେ ଚର୍ଚ୍ଚା ଚାଲିଛି । ତାହା ହେଉଛି ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ସମ୍ପର୍କରେ । ଶ୍ରୀକୃଷ୍ଣ ଯେଉଁ ସମୟରେ ପାଣି ଘାଟ ଆଡ଼େ ଯାଆନ୍ତି ତାଙ୍କୁ ଦେଖିବାର ଆଶା ନେଇ ବ୍ରଜାଙ୍ଗନାମାନେ ବି ସେହି ସମୟରେ ପାଣି ଆଣିବାପାଇଁ ଯାଆନ୍ତି ଏବଂ ପହର ପହର ଧରି ତାଙ୍କୁ ପ୍ରତୀକ୍ଷା କରି ରହନ୍ତି । ଯେଉଁଦିନ ଶ୍ୟାମସୁନ୍ଦରଙ୍କର ଦର୍ଶନ ମିଳିଯାଏ, ସେଦିନ ସେମାନେ ନିଜ ଜୀବନକୁ ଧନ୍ୟ ମଣିଥାନ୍ତି । ଯେଉଁଦିନ ଦର୍ଶନ ନମିଳେ, ସେଦିନ ସେମାନେ ଉଦାସ ହୋଇ ଉଠନ୍ତି ଏବଂ ଦ୍ୱିତୀୟ ଦିନ ସେହି ସମୟ ପର୍ଯ୍ୟନ୍ତ ତାଙ୍କୁ ପ୍ରତୀକ୍ଷା କରି ରହନ୍ତି । ଏବେ ଖାଲି ଦର୍ଶନରେ ଶାନ୍ତି ମିଳେ ନାହିଁ । ଦିନେ କୌଣସି ଜଣେ ବ୍ରଜାଙ୍ଗନା କହିଲା, 'ଶ୍ୟାମସୁନ୍ଦର ! ମୋ' ମାଠିଆ ଟିକଏ ଉଠାଇ ଦିଅନ୍ତ ନାହିଁ ।' ଶ୍ୟାମ ଖୁବ୍ ଶୀଘ୍ର ଓ ଆଗ୍ରହର ସହିତ ମାଠିଆଟି ଉଠାଇ ଦେଲେ, ଦଉଡ଼ିଟି ଖୋଲି ଦେଲେ ଏବଂ ଭୁଲ୍‌ରେ ତାଙ୍କ ହାତ ଗୋପୀର ଦେହକୁ ଛୁଇଁ ଦେଲା ।

ଏବେ ତ ସମସ୍ତଙ୍କର ସାହସ ହୋଇଗଲା, ଏବଂ ସମସ୍ତେ ମାଠିଆ ଉଠା କାମଟି କରାଇବାକୁ ଲାଗିଲେ । ଏବେ ଶ୍ୟାମ ବି ମାଠିଆ ଦଉଡ଼ି ଧରି ପାଣି ଟାଣିବାକୁ ଲାଗିଲେ । "ସେ ଯମୁନାକୁ ଛାଡ଼ି ମାଠିଆ ଦଉଡ଼ିରେ ପାଣି କାହିଁକି ଟାଣୁଛନ୍ତି ?" ସେ କାହିଁକି ପାଣି ଟାଣୁଛନ୍ତି, ଏବେ ତୁମେ ତାଙ୍କୁ ହିଁ ପଚାର । ପ୍ରେମରେ କିଛି କାମ କେବଳ ପ୍ରେମପାଇଁ ହିଁ କରା ଯାଇଥାଏ । ସେଥିରେ କାହିଁକିର ପ୍ରଶ୍ନ ଉଠେ ନାହିଁ । କୃଷ୍ଣ ପାଣି ଉଠାଉଥିଲାବେଳେ ମାଠିଆଟିକୁ ଯେତେବେଳେ ବଙ୍କାଇ ଦିଅନ୍ତି, ସେତେବେଳେ ଗୋପୀମାନେ ବସ୍ତୁଶ୍ଚ ଓଦା ହୋଇ ଯାଆନ୍ତି । ସେମାନେ ଶ୍ୟାମଙ୍କୁ ଭର୍ତ୍ସନା କରି ଦପଦପ କହନ୍ତି । ଶ୍ୟାମ ଖାଲି ହସୁଥାନ୍ତି । ଏହାଦ୍ୱାରା ସେମାନଙ୍କର ସାହସ ଅଧିକ ବଢ଼ିଗଲା । ଏବେ କେବଳ ଦର୍ଶନ ଓ ସ୍ପର୍ଶରେ ସନ୍ତୋଷ ମିଳିଲା ନାହିଁ; ପ୍ରେମ କଳହ ବି ଲେଖିବାକୁ ଲାଗିଲା, ସେମାନଙ୍କ ଚିତ୍ତ

ଘୁରୁଥାଏ କେମିତି ସେମାନେ ତାଙ୍କ ସହିତ ଦନଗତ କଥାବାର୍ତ୍ତା ହେଉଥାନ୍ତେ । ଯେ କୌଣସି କଥା ହେଉନା କାହିଁକ, ସେହି କଥାର କିଛି ହିଁ ଅର୍ଥ ନାହିଁ । ଏହିପରି ଭାବରେ ପାଣି ଘାଟର ଲୀଳା ଅନେକ ପ୍ରକାରର । ହେ ମୁନିମାନେ ! ବ୍ରଜର ରସିକ ଭକ୍ତମାନେ ପାଣି ଘାଟର ଲୀଳାକୁ ଅନେକ ପ୍ରକାର ବର୍ଣ୍ଣନ କରିଛନ୍ତି । ତାହାକୁ ମୁଁ ଯଦି ବିସ୍ତୃତ ଭାବରେ କହୁଛି, ତା'ହେଲେ ଅନେକ ବର୍ଷ ବିତିଯିବ । ତଥାପି ତାହା ପୂରା ହେବ ନାହିଁ ; ତେଣୁ ମୁଁ ଏହି ପ୍ରସଙ୍ଗକୁ ଏହିଠାରେ ରଖୁଛି ।

"ଯେତେବେଳେ ଚିତ୍ତରେ କାହାର ମୂର୍ତ୍ତି ଗଢ଼ି ଉଠିଥାଏ, ସେତେବେଳେ ଚିତ୍ତ ନିରନ୍ତର ତା'ର ବିଷୟରେ ହିଁ ଚିନ୍ତା କରି ଚାଲିଥାଏ । ଏବେ ଗୋପୀମାନେ ତ ଘରର ସବୁ କାମଦାମ କରୁଛନ୍ତି । ଗୃହିଣୀ ହେଲା ହେତୁରୁ ଘର କାମରୁ ଛୁଟି ବା କେଉଁଠି ମିଳୁଛି ? କିନ୍ତୁ ଚିତ୍ତ ସର୍ବଦା ଚିତ୍ତ-ଚୋରଙ୍କ ପାଖରେ ଲାଗି ରହିଛି । କୌଣସି କୌଣସି କାମରେ ସେମାନେ ବାହାରକୁ ଯାଆନ୍ତି । ଗୋବର କାଢ଼ିବା ପାଇଁ, ଗୋଶାଳା ସଫା କରିବାପାଇଁ, ଦୁଧ ଦୁହିଁବା ପାଇଁ ଅଥବା କାହା ଘରୁ ଦହି,-ସର ଆଣିବାପାଇଁ କିମ୍ବା କିଛି ଜିନିଷ ଦେବା-ପାଇଁ ସେମାନଙ୍କୁ ବାହାରକୁ ଯିବାକୁ ପଡୁଥାଏ । ଶ୍ୟାମ କାଳେ ଆସୁଥିବେ, ସେଥିପାଇଁ ସେମାନେ ଏପଟ ସେପଟ କରି ଘୁରୁଥାନ୍ତି । ସେ ଯଦି ଆସି ଯାଆନ୍ତେ, ତାଙ୍କୁ ଥରେ ମାତ୍ର ଦେଖିନେଲେ ନେତ୍ର ପବିତ୍ର ହୋଇଯାଆନ୍ତା । "ଆଗୋ ! ହେଲା ଏବେ, ଶ୍ୟାମ ଦେଖିବାକୁ ସୁନ୍ଦର । ତାଙ୍କୁ ବାରମ୍ବାର ଦେଖିବାରେ କ'ଣ ବା ଲାଭ ? ଦେଖିଥିବା ଜିନିଷଟି ଲାଗି ଏତେ ଅଧୀରତା କାହିଁକି ? ଧର, ଦେଖିନେଲେ, ତେବେ ସେଥିରୁ କ'ଣ ବା ମିଳିଲା ?' ତୁମ୍ଭମାନଙ୍କର ଏହି ଶୁଷ୍କ ପ୍ରଶ୍ନଗୁଡ଼ିକର ସେମାନେ କ'ଣ ବା ଉତ୍ତର ଦେବେ ? ଛୋଟ ଛୋଟ ଦୁଇଚାରି ବର୍ଷର ବାଳକ-ବାଳିକାଙ୍କ ବୁଦ୍ଧିରେ ପ୍ରଣୟ ସଙ୍କେତ ହିଁ ଆସି ପାରେ ନାହିଁ । ପ୍ରେମରେ ପ୍ରତିକ୍ଷଣ ନବୀନତା ରହିଥାଏ । ଆଖି ଦୁଇଟିର ଆହାର ହେଉଛି ପ୍ରିୟ ବସ୍ତୁଟିକୁ ଦେଖିବା । ନାକ ଫୁଲଗୁଡ଼ିକୁ ଖାଏନାହିଁ; ସେ ସେଗୁଡ଼ିକର ବାସନାକୁ ନେଇ ତୃପ୍ତ ହୋଇଥାଏ । ଏହିପରି ଭାବରେ ଅଖି ଦୁଇଟିକୁ ଯଦି ପ୍ରିୟଙ୍କର ଦର୍ଶନ ମିଳିଯାଏ, ତା'ହେଲେ ସବୁ କିଛି ଜାଣ ମିଳିଗଲା । ଲୋଭୀକୁ ଯେତେ ଧନ ଦେଲେ ମଧ୍ୟ ତା'ର ତୃପ୍ତି ଆସେ ନାହିଁ । ଅଗ୍ନିରେ ଯେତେ ଇନ୍ଧନ ପକାଇଲେ ମଧ୍ୟ ତାହାର ତୃପ୍ତି ଆସେ ନାହିଁ । ଠିକ୍ ସେହିପରି ଯେ ନୟନରେ ପ୍ରିୟ ତାଙ୍କୁ ଦେଖିବାରେ ଜମା ତୃପ୍ତି ଆସି ନଥାଏ । ଏବେ-ହୁଏତ କୌଣସି ଗୋପୀ ତାଙ୍କୁ ପାଣି-ଘାଟରେ ଦେଖିନେଇଛି । ଘର-ଦୁଆର ମୁହଁକୁ ଆସି ସେ ବୁଲିପଡ଼ି ଦେଖୁଛି, ଆଉ ପୁଣି ସେ ଆସୁଛନ୍ତି ନା ନାହିଁ । ସେ ଯେତେବେଳେ ଘରୁ ବାହାରୁଛି, ସେତେବେଳେ ଏପଟ ସେପଟ କରି ଦେଖିନେଉଛି । ଯେତେବେଳେ ବଂଶୀର ଧ୍ୱନି ଶୁଣାଗଲା ତ ସେ ଧାଇଁ ଯାଇ ଛାତ ଉପରେ ଚଢ଼ିଯାଉଛି । ଶାଶୂ ବଡ଼ ପାଟିରେ ଡାକୁଛି 'ଆଲୋ ବୋହୂ ! ସେପେଇ ଛାଡ଼ି ଦେଇ କୁଆଡେ ଗଲୁ ?'

ସେ ସେଇଠାରୁ କହୁଛନ୍ତି, 'ଓଦା କାଠରେ ଚୁଲି ଜଳୁନାହିଁ । ମୁଁ ଦେଖିବାକୁ ଆସିଛି ଗୁହ ଉପରେ କିଛି ଶୁଖିଲା କାଠ ଅଛି କି ନାହିଁ । ଥିଲେ ମୁଁ ନେଇଯିବି ।' ସେ ହାତରେ କାଠଗୁଡ଼ିକୁ ଓଲଟ ପାଲଟ କରୁଛି; କିନ୍ତୁ ଚଞ୍ଚଳ ନୟନରେ ସେ ଏଣେତେଣେ ଚାହୁଁଛି । ଯଦି ଶ୍ୟାମ ଦେଖାଗଲେ ତେବେ ତ ଶ୍ରମ ସାର୍ଥକ ହୋଇଗଲା । ଯେ ପର୍ଯ୍ୟନ୍ତ ସେ ଆଖିକୁ ବଣୁଛନ୍ତି, ସେ ପର୍ଯ୍ୟନ୍ତ ତାଙ୍କ ଉପରେ ଆଖି ଲାଗି ରହୁଛି । ଯେତେବେଳେ ଆଖିରୁ ଦୂର ହୋଇଯାଉଛନ୍ତି ସେତେବେଳେ ଆଖି ଫେରି ଆସୁଛି । ଯଦି ଶ୍ୟାମ ଦେଖା ନଗଲେ, ତା'ହେଲେ ସେ ଅନ୍ୟମନସ୍କ ଭାବରେ ଆସି ପୁଣି ଘର କାମରେ ଲାଗିଯାଉଛି ।"

"ଆଉ ଗୋଟିଏ ସୁଯୋଗ ବି ମିଳୁଥିଲା ଦହି ବିକିବା ସମୟରେ । ପୂର୍ବେ ଯେ ଯେଉଁ ବ୍ୟବସାୟ କରୁଥିଲା, ରାଜା ହେଉଥିଲେ ସେଇ ଆକାରରେ ତାଙ୍କର ଶୁଳ୍କ ନେଉଥିଲେ । ଉଦାହରଣ ସ୍ୱରୂପ ଜଣେ ତେଲି ଅଛି । ରାଜା ତା'ଠାରୁ ତେଲ ରୂପରେ ଶୁଳ୍କ ନେବେ । କୃଷକ ହେଲେ ତା'ର ଉତ୍ପନ୍ନ ଶସ୍ୟର ଛଅଭାଗରୁ ଭାଗେ ରାଜା କର ରୂପରେ ନେବେ । ଜଣେ ଯଦି ଶାଗ ବିକୁଛି, ତା'ହେଲେ ତାକୁ ରାଜକର ରୂପରେ ଶାଗ କିଛି ଦେବାକୁ ପଡ଼ିବ । କିନ୍ତୁ ରାଜା ଥିଲେ ନନ୍ଦ । ସେ ପର୍ଯ୍ୟନ୍ତ ତାଙ୍କର କିଛି ପିଲାପିଲି ହୋଇ ନ ଥିଲେ ; ତେଣୁ ସେ ରାଜକର ପ୍ରତି ଧ୍ୟାନ ଦେଉ ନ ଥିଲେ । କେହି ଯଦି ଆସି ଦୁଧ ଦହି, ଲହୁଣୀ ଆଦି ଦେଇଗଲେ ସେ ତାହା ନେଉଥିଲେ । କେହି ନ ଦେଲା ତ ସେ ତାହାକୁ ମାଗୁ ନଥିଲେ । ନନ୍ଦଙ୍କର ଏବେ ପୁଅଟିଏ ହେଲା । ପୁଅଟି ଭାରି ବୁଦ୍ଧିଆ-ଚତୁର । କାହା ଘରେ କେତେ ଚୁରି ହେଉଛି, କିଏ ଶାଗ କରୁଛି ଇତ୍ୟାଦି ସବୁ ତାକୁ ଜଣାଥିଲା । ନନ୍ଦଙ୍କ ପୁଅ ଆଜ୍ଞା ଜାରି କରିଦେଲେ, 'କୌଣସି ଗୋପୀ ବିନା ଦହିର ଶୁଳ୍କ ନଦେଇ ବିକିବା ପାଇଁ ଯାଇପାରିବ ନାହିଁ ।' ଖାଲି ଆଜ୍ଞାଟି ଜାରି କରି ଦେଇ ସେ ସନ୍ତୁଷ୍ଟ ହୋଇ ରହିଲେ ନାହିଁ । ଗୋପାଳ-ବାଳକଙ୍କ ସେନାକୁ ଧରି ସେ ବନକୁ ଯାଇ ପ୍ରଧାନ ରାସ୍ତାରେ ବସନ୍ତି ଏବଂ ଯେଉଁ ଗୋପୀ ଶୁଳ୍କ ନ ଦିଏ ତାକୁ ହଇରାଣ-ହରକତ କରନ୍ତି । ଗୋପୀମାନେ ତ ଏଇଆ ହିଁ ଚାହୁଁଥିଲେ । ସେଥିପାଇଁ ସେମାନେ ନିଜ ଇଚ୍ଛାରେ ଖୁସି ହୋଇ ଶ୍ରୀକୃଷ୍ଣଙ୍କୁ ଜମା ଶୁଳ୍କ ଦେଉ ନଥିଲେ । ଶ୍ରୀକୃଷ୍ଣ ବି ସିଧା-ସଳଖ ଭାବରେ ତାହା ନେବାକୁ ଚାହୁଁ ନଥିଲେ । ବାସ୍ତବରେ ଶ୍ରୀକୃଷ୍ଣଙ୍କର ଦୁଧ, ଦହି, ଲହୁଣୀରେ କିଛି ଲୋଭ ନଥିଲା କିମ୍ବା ତାହା ଦେବା ପାଇଁ ଗୋପୀମାନଙ୍କର କିଛି ଆପତ୍ତି ବି ନଥିଲା । ସେମାନେ ଯେତେବେଳେ ନିଜର ଦେହ, ମନ, ଧନ ତଥା ସର୍ବସ୍ୱ ଶ୍ରୀକୃଷ୍ଣଙ୍କୁ ଅର୍ପଣ କରି ସାରିଛନ୍ତି, ସେତେବେଳେ ଦୁଧ, ଦହି ତ ହେଉଛି ତାଙ୍କର । ସେମାନେ ଦୁଧ, ଦହିର ଲୋଭରେ ମନା କରୁ ନଥିଲେ । ଶ୍ରୀକୃଷ୍ଣଙ୍କ ସହିତ କଳହ କରିବାରେ ସେମାନଙ୍କୁ ଆନନ୍ଦ ଲାଗୁଥିଲା । ଏହି କଥାକୁ ଉପଲକ୍ଷ୍ୟ କରି ସେମାନେ ଶ୍ରୀକୃଷ୍ଣଙ୍କୁ ବହୁତ କଥା କହି ପାରୁଥିଲେ । କେହି ଜଣେ କହେ, 'ତୁମର ଶୁଳ୍କ ନେବାର ଅଧିକାର ଅସିଲା କେଉଁଠୁ? ତୁମ ବାପା ତ କଂସଙ୍କୁ ବର୍ଷକୁବର୍ଷ କର

ଦେଉଛନ୍ତି । ବାସ୍ତବରେ ରାଜା ହେଉଛନ୍ତି କଂସ । ସେ ଆମଠାରୁ କର ନେଇପାରନ୍ତି । ମଝିରେ ତୁମେ ମାଗିଲାବାଲା କିଏ ?' ଆଉ କିଏ କଟାକ୍ଷ କହେ, 'ତୁମେ କ'ଣ ଆମକୁ ଶାସନ କରୁଛ ? ଖାଲି ଶୁଳ୍କ ନେବାପାଇଁ ଅଛ ନା ଆମର ଦୁଃଖ ବି ଦୂର କରୁଛ ?' ପୁଣି କିଏ କହେ, 'ତୁମେ ତ ଦୁଧ, ଦହି ଅଧାରୁଅଧା ଦାନରେ ନେଇ ଯାଉଛ । ଆମେ ତେବେ ବିକିବୁ ଆଉ କ'ଣ ?' କେହି କେହି ତାଙ୍କ ଆଗରେ ହିଁ ଶୁଳ୍କ ନ ଦେଇ ଚାଲିଯାଏ । ଶ୍ରୀକୃଷ୍ଣ ନିଜେ ଧାଇଁ ଯାଇ ତା'ର ହାତକୁ ଧରି ନିଅନ୍ତି ଏବଂ କହନ୍ତି, 'ଶୁଳ୍କ ନ ଦେଇ ତୁମେ ଚାଲି ଯାଉଛ ।' ସେତେବେଳେ ଶ୍ରୀକୃଷ୍ଣଙ୍କଠାରେ ମିଛ ରାଗ ଦେଖାଇ ସେ କହେ, 'ଏଇ ଦେଖ, ତୁମେ ରାଜକୁମାର ହେବ ତ ନିଜ ଘରେ ହେବ । ଏ କଥା ଠିକ୍ ହେଉନାହିଁ । ତୁମର ଯାହା କହିବାର କଥା ତାହା ଦୂରରୁ କହ । ଆଉ ଯଦି କେବେ ମୋ' ଦେହରେ ହାତ ଲଗାଇବ ତ କଥା ଠିକ୍ ହେବ ନାହିଁ ।' ସେଇଠୁ ସେ ନିଜେ ହସି ଉଠନ୍ତି ଏବଂ ତା'ର କାନକୁ ଧରି ପକାଇ କହନ୍ତି, 'ବାଉଳି ! କ'ଣ କହୁଛୁ ଟସ୍ତପ ଭାବିଲୁ କି ?' ଏହିପରି ଭାବରେ ଏଠାରେ ନିତି ନିତି ଗୋଟିଏ ସରସ ମଧୁମୟ ଲୀଳା ସଂଘଟିତ ହେଉଥାଏ । ଶ୍ରୀକୃଷ୍ଣ ଦଶ ପ୍ରକାର ଗାଳି ଦିଅନ୍ତି ତ ଗୋପୀମାନେ ଆଉ ଦଶ ପ୍ରକାର ଗାଳି ଦିଅନ୍ତି । ପ୍ରେମର ଏହି ଗାଳିଗୁଡ଼ିକ ଥାଏ ସବୁଠାରୁ ଅଧିକ ମିଠା ଏବଂ ହାଲୁଆଠାରୁ ଅଧିକ କୋମଳ । ହେ ମୁନିମାନେ ! ଏହିପରି ଭାବରେ ପ୍ରାଚୀନ କବିମାନେ ଓ ରସିକମାନେ ଏହି ରସ-ଦାନ-ଲୀଳା ସମ୍ପର୍କରେ ବଡ଼ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ମୁଁ ଯଦି ଏହି ବିଷୟକୁ ବିସ୍ତାର କରିବି, ତା'ହେଲେ ଦାନ-ଲୀଳାରେ ହିଁ କଥା ଶେଷ ହୋଇଯିବ ; ତେଣୁ ଏହି ପ୍ରସଙ୍ଗକୁ ମୁଁ ଏହିଠାରେ ଶେଷ କରୁଛି ।''

ଗୋପୀମାନେ ଯେ ଖାଲି ଶ୍ରୀକୃଷ୍ଣଙ୍କ ସହିତ ମିଳନ ଲାଗି ଉତ୍ସୁକ ହୋଇ ଉଠୁଥିଲେ, ସେ କଥା ଠିକ୍ ନୁହେଁ । ଶ୍ରୀକୃଷ୍ଣ ମଧ ସେମାନଙ୍କ ସହିତ ମିଳିତ ହେଲାପାଇଁ ସର୍ବଦା ଥିଲେ ଲାଳାୟିତ ; କିନ୍ତୁ ଯେଉଁ ଅସୁବିଧାମାନ ଗୋପୀମାନଙ୍କ ଆଗରେ ଥିଲା, ସେହି ଅସୁବିଧାମାନ ଶ୍ରୀକୃଷ୍ଣଙ୍କ ଆଗରେ ବି ଥିଲା । ଯେଉଁମାନଙ୍କ ସାଥିରେ ପାଣି-ଘାଟରେ, ଗୋଶାଳାରେ ତଥା ଦହି ଦେଉଥିବା ସମୟରେ ସାକ୍ଷାତ ହୋଇଯାଏ, ସେ ସେମାନଙ୍କ ମନର କଥା କହି ଦିଅନ୍ତି ଏବଂ ଆଖି ପୂରାଇ ଦେଖି ବି ନିଅନ୍ତି ; କିନ୍ତୁ ଯେଉଁମାନେ ବଡ଼ ଘରର ଝିଅ, ଯେଉଁମାନେ ଏହିସବୁ କାମ ଲାଗି ବାହାରକୁ ବାହାରନ୍ତି ନାହିଁ ସେମାନଙ୍କ ସାଥିରେ କେମିତି ବା ଭେଟ ହୋଇ ପାରିବ ? କାହା ଘରକୁ ଗଲେ ମଣ୍ଡପ ଉପରେ ବସିଥିବା ଗୋପାଳ ଡାକ କରି ସେଠାରେ ବସାଇ ଦେବେ । କୌଣସିମତେ ଘର ଭିତରେ ପଶିଗଲେ ଚମ ଧୁଡ଼ୁ ଧୁଡ଼ୁ କରୁଥିବା ମୁର୍ହିମାନଙ୍କ ବାରମ୍ବାର ହଲାଇ ହଲାଇ ବୁଢ଼ୀମାନେ ପ୍ରଶ୍ନର ଝଡ଼ ବୁହାଇ ଦେଇଯିବେ, 'ବାପା ! କେଉଁଥିପାଇଁ ଆସିଛୁ? ନନ୍ଦରାଣୀ ଭଲ ଅଛନ୍ତି ତ ? ତୋର ବାହାଘର କେବେ ହେଉଛି ?' ଶ୍ରୀକୃଷ୍ଣ ମନେ ମନେ ବିରକ୍ତ-

ଥାନ୍ତି, 'ଆରେ, ଆମେ କେଉଁଥିପାଇଁ ଆସିଛୁ, ସେଥିରେ ତୋ'ର କ ଯାଏ ଆସେ ? ତୁ ନିଜ କାମ ଦେଖ । ତୋ'ର ଯଦି ନନ୍ଦରାଣୀଙ୍କଠାରେ ଏତେ ପ୍ରେମ, ତା' ହେଲେ ତୁ ନିଜେ ଯାଇ ତାଙ୍କୁ କୁଶଳ-ଖବର ପଚ୍ଛିଆ । ଆମ କାମରୁ କାହିଁକି ବାଧା ଦେଉଛୁ ?' କିନ୍ତୁ ବଡ଼ ବଡ଼ ବୁଢ଼ୀମାନଙ୍କୁ କିଏ ବା ପଚ୍ଛିବ ? ଧଳା ବାଳ ଥିବା ଲୋକ ଆଗରେ କଳା ବାଳ ଥିବା ଲୋକଟି ଯେ କିଛି କହିପାରିବ ନାହିଁ । ଏହିସବୁ ଅସୁବିଧା କାରଣରୁ ଶ୍ରୀକୃଷ୍ଣଙ୍କୁ ଛଦ୍ମବେଶ ଧରିବାକୁ ପଡ଼ିଥାଏ । ସେ ମଧ୍ୟ ବିନା ଛଦ୍ମବେଶରେ ବେଳେ ବେଳେ ସିଧା-ସଳଖ ଅନ୍ତଃପୁରରେ ପ୍ରବେଶ କରି ପାରନ୍ତି । କେବେ ସେ ଦେଖନ୍ତି ଯେ ତାଙ୍କ ପ୍ରିୟତମା ଗୋପୀ ଜଣକ ଦେବୀ-ପୂଜାରେ ଲାଗି ଯାଇଛି । ସେତେବେଳେ ସେ ମାଳୀଣୀ ବେଶ ଧରି ଓଢ଼ଣା ଟାଣି ପୂଜା ଘରେ ପଶି ଯାଆନ୍ତି । କେବେ କେବେ ସେ ନୂଆ ବୋହୂଟିଏ ହୋଇ ଧୀରେ ଧୀରେ ପାଦ ପକାଇ ଏବଂ ପାଉଜି ହଲକୁ ବଜାଇ ବଜାଇ ଭଣ୍ଡାରୁଣୀ ପାଖରେ ଘର ଭିତରେ ପଶି ଯାଆନ୍ତି । କେବେ ସେ ପିଲାକୁ କୋଳେଇ କାଖେଇବାର ଦାସୀଟିର ରୂପ ଧରି କୋଳେଇ-କାଖେଇବା ପାଇଁ ଭିତରକୁ ଚାଲି ଯାଆନ୍ତି । କେବେ କେବେ ସେ ବଣିଆଣୀ ବେଶ ଧରି ଗହଣା ଦେବାଲାଗି ଏବଂ ନୂଆ ଗହଣା ତିଆରି କରିବା ଲାଗି ବିନା ଭୟରେ ଅନ୍ତଃପୁରରେ ପଶି ଯାଆନ୍ତି । କେବେ କେବେ କାଚରାଣୀ ହୋଇ କାଚ ପିନ୍ଧାଇବା ପାଇଁ ଯାଆନ୍ତି ଏବଂ ସେହି ସମୟରେ ଗୋପୀମାନଙ୍କର ହାତଟିମାନ ଛୁଇଁ ଦିଅନ୍ତି । କେବେ କେବେ ପାଟରାଣୀ ହୋଇ ଦର୍ପଣ କଜଳ ଇତ୍ୟାଦି ଜିନିଷଗୁଡ଼ିକୁ ଦେଖାଇବାଲାଗି ଭିତରେ ପଶି ଯାଆନ୍ତି ଏବଂ ଖୋଲାଖୋଲି ଭାବରେ ସେମାନଙ୍କ ସହିତ ପ୍ରେମପୂର୍ଣ୍ଣ କଥାବାର୍ତ୍ତା କରନ୍ତି । ଏହା ତ ଥାଏ ଯୁବତୀମାନଙ୍କର କାମନାର ବସ୍ତୁ । କେବେ ପାନେରାଣୀ ହୋଇ ପାନ ବିକିବାପାଇଁ ଆସି ଯାଆନ୍ତି । କେବେ ଭଣ୍ଡାରୁଣୀ ହୋଇ ନଖ କାଟନ୍ତି, ବେଣୀରେ ଫୁଲ ଲଗାନ୍ତି ଏବଂ ଗୋଡ଼ ଘଷି ଦିଅନ୍ତି, ପିଠି ଘଷି ଦିଅନ୍ତି । କେବେ ବଇଦ-ବୋହୂ ହୋଇ ନାଡ଼ ଦେଖନ୍ତି; ଓଷଦ ତିଆରି କରି ଦିଅନ୍ତି; ଏବଂ ହାତରେ ଅାଖି-ପତାଗୁଡ଼ିକୁ ଉଠାଇ ବାତ, ପିତ୍ତ ଓ କଫର ପରୀକ୍ଷା କରି ନିଅନ୍ତି; ହୃଦୟର ସ୍ପନ୍ଦନକୁ ହାତେ ରଖି ବହୁତ ଡେରି ପର୍ଯ୍ୟନ୍ତ ତାହାର ପରୀକ୍ଷା କରନ୍ତି । କେବେ ଶୁଆ-ଶାରୀ ନେଇ ଘରକୁ ଘର ବୁଲି ଖେଳ ଦେଖାଇବାର ସ୍ତ୍ରୀଟିଏ ହୋଇ ଯାଆନ୍ତି ତ ପୁଣି କେବେ ନାଚବାଲୀ ହୋଇ ଗାଉଣା-ବାଜଣା କରି ଓ ନାଚ ଦେଖାଇ ପ୍ରିୟତମାକୁ ଦେଖି ନିଅନ୍ତି । କେବେ ଗନ୍ଧ-ଦ୍ରବ୍ୟ ବିକିବାର ସ୍ତ୍ରୀଟିଏ ହୋଇଯାଇ ତେଲ ଓ ଅନ୍ୟାନ୍ୟ ବାସନା ଜିନିଷମାନ ବିକନ୍ତି । କେବେ ବୀଣା ବଜାଇବା ସ୍ତ୍ରୀଲୋକଟିଏ ହୋଇ ଘରକୁ ଘର ବୁଲି ବୀଣା ବଜାଇ ଫେରିଆସନ୍ତି । ସାର କଥା ହେଲା, ନିଜର ପ୍ରିୟତମା ସହିତ ମିଳିତ ହେବାର ଇଚ୍ଛା ନେଇ ସେ ନାନା ବେଶ ଧରନ୍ତି ଏବଂ ନିଜ ଆଖି ଦୁଇଟିକୁ ତୃପ୍ତ କରନ୍ତି । ଏହିପରି ଭାବରେ ଦୁଇପଟରୁ ଅନୁରାଗ ହେବାଦ୍ୱାରା ଉତ୍ସୁକତା ବଢ଼ି ବଢ଼ି ଯାଉଥାଏ ।

"ଶ୍ୟାମସୁନ୍ଦରଙ୍କ ରୂପ ଥିଲା ଖୁବ୍ ଆକର୍ଷକ । ତାହା ଏଭଳି ଆକର୍ଷକ ଥିଲା ଯେ ତାଙ୍କୁ ଯେ ଦେଖୁଥିଲା, ସେ ବିନା ମୂଲ୍ୟରେ ହିଁ ନିଜକୁ ବିକି ଦେଉଥିଲା ଏବଂ ଖୁବ୍ ମୂର୍ଚ୍ଛିତ ହୋଇ ଉଠୁଥିଲା । କୌଣସି ଜଣେ ଗୋପୀ କହୁଥାଏ, 'ଶ୍ୟାମ ! ମୋ' ସଖୀ ମୂର୍ଚ୍ଛିତ ହୋଇଯାଇଛି । ତୁମେ ଯଦି କିଛି ଯନ୍ତ୍ର-ମନ୍ତ୍ର. ଝାଡ଼-ଫୁଙ୍କ ଅଥବା ଯାଦୁ-ବିଦ୍ୟା ଜାଣିଛ, ତା'ହେଲେ ତାହାର ଉପଚାର ଦେଖାଅ ।' ଶ୍ୟାମ କହନ୍ତି, 'ହଁ ମୁଁ ଗୋଟିଏ ମନ୍ତ୍ର ଜାଣିଛି । ତାହାଦ୍ୱାରା ତା'ର ଚେତା ଫେରି ଆସିବ ।' ଏହା କହି ସେ ତା' ପାଖକୁ ଯାଆନ୍ତି ଏବଂ ତା କାନରେ କହନ୍ତି, 'ଆଗାମୀ ଶରତ ଋତୁର ରାତ୍ରିମାନଙ୍କରେ ତୁମେ ମୋ' ସହିତ ରାସ-ଲୀଳା କରିବ ।' ଏତିକ ଶୁଣିବା ମାତ୍ରେ ହିଁ ତା'ର ଚେତା ଫେରି ଆସେ । ସେହି ସୌଭାଗିନୀ ଗୋପୀ ଖୁବ୍ ଉତ୍ସୁକତାର ସହିତ ଶରତର ସେହି ରାତ୍ରିକ ଲାଗି ପ୍ରତୀକ୍ଷା କରି ରହେ । ଏବେ ବ୍ରଜଆଡ଼େ ଏ କଥା ପ୍ରକଟ ହୋଇଗଲା ଯେ ନନ୍ଦନନ୍ଦନ ଏଭଳି ମନ୍ତ୍ରସିଦ୍ଧ ପୁରୁଷ ଯେ କୌଣସି ଲୋକ ଯେତେ ମୂର୍ଚ୍ଛିତ ହୋଇଯାଇଥିଲେ, ମଧ୍ୟ ସେ ତାଙ୍କ ହାତରେ ଭଲ ହୋଇଯାଉଛି । ଏବେ ବିକଳତା ହେଉ ଯେଉଁ ସ୍ତ୍ରୀ ମୂର୍ଚ୍ଛିତା ହୋଇଯାଏ, ଝଟ୍ ଶୀଘ୍ର ତା'ର ସଖୀମାନେ ଶ୍ୟାମସୁନ୍ଦରଙ୍କୁ ଡକାଇ ଆଣନ୍ତି ଏବଂ ସେ ତା'ର କାନରେ ଏହି ମନ୍ତ୍ରଟିକୁ ପଢ଼ିଦିଅନ୍ତି । ସେ ସେତେବେଳେ ଚେତା ଫେରି ପାଇଥାଏ ।"

"ଗୋଟିଏ ବୁଢ଼ୀ ଥିଲା । ତା'ର ସନ୍ଦେହ ହେଲା, ଯେ ନନ୍ଦଙ୍କ ପୁଅଟା କେଜାଣି କ'ଣ ବୋହୂମାନଙ୍କ କାନରେ ମନ୍ତ୍ର ଫୁଙ୍କୁଛି ? ମନ୍ତ୍ର କ'ଣ ଯାଦୁ-ବିଦ୍ୟା ଯେ ତୁରନ୍ତ ସମସ୍ତେ ଭଲ ହୋଇ ଯାଉଛନ୍ତି ? ଅଚ୍ଛା, ମୁଁ ବି ଟିକିଏ ଦେଖିବି । ତେଣେ ସେହି ମିଛମିଛକା ମୂର୍ଚ୍ଛା ଗଲା । ତା'ର ବୋହୂ ଧାଇଁ ଧାଇଁ ଘନଶ୍ୟାମଙ୍କ ପାଖକୁ ଆସିଲା ଏବଂ କହିଲା, 'ବାବୁ ! ଆଜି ମୋ' ଶାଶୂ ମୂର୍ଚ୍ଛା ହୋଇଯାଇଛନ୍ତି । ତାଙ୍କ କାନରେ ବି ଟିକିଏ ମନ୍ତ୍ର ଫୁଙ୍କି ଦିଅନ୍ତୁ ।"

"ଶ୍ୟାମସୁନ୍ଦର କହିଲେ, 'ମୋ ମନ୍ତ୍ର ପାଚିଲାବାଳ ଥିବା ଲୋକମାନଙ୍କ ପ୍ରତି କାମ କରେନାହିଁ ।"

"ବୋହୂଟି କହିଲା, ବାବୁ ! ଆଉ ଟାଳଟୁଳ କରନ୍ତୁ ନାହିଁ, ଚାଲନ୍ତୁ । ଦେଖନ୍ତୁ ମୂର୍ଚ୍ଛିତ ହୋଇ ପଡ଼ି ରହିଛନ୍ତି ।"

"ତା'ର ଅନୁରୋଧକୁ ଶ୍ୟାମସୁନ୍ଦର କେମିତି ବା ଟାଳି ପାରନ୍ତେ । ସେ ବୁଢ଼ୀ ପାଖକୁ ଗଲେ ଏବଂ ଯାଇକରି ତାକୁ ଦେଖିଲେ । ସେ ତ ଥିଲେ ସର୍ବାନ୍ତର୍ଯାମୀ ପୁରୁଷ । ତାଙ୍କ ପାଖରେ କ'ଣ ବା ଲୁଚି ରହିବ ? ସେ ସବୁ ବୁଝିଗଲେ । ସେ କହିଲେ, 'ଏଠାରେ ତ ଭୂତ ପଶିଛି । ମୁଁ ଭୂତର ଔଷଧ ବି ଜାଣିଛି । ଦେଖ, ଭୂତ ଏବେ କେମିତି ଚିତ୍କାର କରି

ଉଠିବ ।’ ଏହା କହି ସେ ନନ୍ଦେ ବୃଦ୍ଧୀର ପିଠିରେ ଜୋର କରି ବାଧା ବସାଇବାକୁ ଲାଗିଲେ । ଏଥିରେ ବୃଦ୍ଧୀ ଚିତ୍କାର କରି ଉଠିଲା । ବୋହୂ କହିଲା, ‘ବାବୁ ତୁମେ ଏ କ’ଣ କରୁଛ ?”

“ନନ୍ଦର ମିଛିମିଛିକା ଗମ୍ଭୀର ଭାବ ଦେଖାଇ ସେ କହିଲେ, ‘ତୁ ପାଟି ଫିଟାନା ଏଇଟା ତ ଭୂତ ଚିତ୍କାର କରି ହଉଛି । ଗୋଟିଏ ଟୋକେଇ ଆଣ୍ । ସେଥିରେ ଏହାକୁ ବସାଇ ବାନ୍ଧିକରି ଆମେ କୂଅରେ ଝୁଲାଇ ଦେବା ଏବଂ ଏକାସାଥିରେ ଶହେ ପଚାଶ ଥର କୂଅରେ ବୁଡ଼ାଇ ଦେବା । ତେବେ ଯାଇ ଭୂତ ଛାଡ଼ି ପଳାଇଯିବ ।”

“ତାହା ଥିଲା ଶୀତ ଦିନ । ବୃଦ୍ଧୀ ବସ୍ତୁତଃ ଡରିଗଲା । ସେ ବଡ଼ ପାଟି କରି କହିଲା, ‘ମୋ’ ଦେହରେ ଭୂତ ଫୁତ କିଛି ନାହିଁ । ମୁଁ ତ ଭଲ ଓ ଚଞ୍ଚଳ ଅଛି ।’ ମୋତେ ବାନ୍ଧିକରି କୂଅରେ ପକାଅ ନାହିଁ ।”

“ଏହା ଶୁଣି ସେ ନନ୍ଦେ ହସି ଉଠିଲେ ଏବଂ କହିଲେ, ‘ଦେଖିଲ ଭୂତ କେମିତି ଛାଡ଼ି ପଳାଇଲା ?”

“ଏହିଭଳି ଭାବରେ ସାରା ବ୍ରଜ-ମଣ୍ଡଳୀର ଯୁବତୀମାନଙ୍କ ମଧ୍ୟରେ କଥାଟି ପ୍ରଘଟ ହୋଇଗଲା ଯେ ଶ୍ୟାମସୁନ୍ଦର ଶରଦ୍ ଋତୁର ରାତିମାନଙ୍କରେ ରାସ ଆରମ୍ଭ କରିବେ ଏବଂ ତାହା ଆଶ୍ୱିନ ମାସର ପୂର୍ଣ୍ଣିମାରେ ଆରମ୍ଭ ହେବ । ସେମାନେ ଶ୍ୟାମସୁନ୍ଦରଙ୍କ ସହିତ ମିଳନ-ପ୍ରତୀକ୍ଷାରେ ସେହି ଘଡ଼ିଗୁଡ଼ିକୁ ଯୁଗ ଭଳି ବିତାଇବାକୁ ଲାଗିଲେ । ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ତିଥିଟିକୁ ସେମାନେ ବଡ଼ ଉତ୍ସୁକତାର ସହିତ ଅପେକ୍ଷା କରି ରହିଲେ ଏବଂ ଦିନ ଗଣିବାକୁ ଲାଗିଲେ ।”

ସୂତ କହୁଥାନ୍ତି, “ହେ ମୁନିମାନେ ! ମୁଁ ଏ କଥା ବାରମ୍ବାର ସାବଧାନ କରିଦେବାକୁ ଯାଇ କହିବି ଯେ ସେମାନେ କୌଣସି ଜଣେ ସାଧାରଣ ବ୍ୟକ୍ତିଙ୍କ ସହିତ ମିଳିତ ହେବାପାଇଁ ଉତ୍କଣ୍ଠିତା ହୋଇ ଉଠୁ ନଥିଲେ । ସେମାନେ ଯାହାଙ୍କ ସହିତ ମିଳନ ଚାହୁଁଥିଲେ, ଯାହାଙ୍କ ସାଥିରେ କ୍ରୀଡ଼ା କରିବାପାଇଁ ଚାହୁଁଥିଲେ ସେ ହେଉଛନ୍ତି ଭଗବାନ । ସେ ହେଉଛନ୍ତି ସମସ୍ତଙ୍କ ଅନ୍ତର୍ଯାମୀ ପୁରୁଷ ଈଶ୍ୱର ।”

“ଗୋପୀମାନେ ଯେ ଖାଲି ଉତ୍ସୁକ ଥିଲେ ସେକଥା ନୁହେଁ । ଭଗବାନ ମଧ୍ୟ ବଡ଼ ଉତ୍ସୁକ ଥିଲେ । ସେ ମଧ୍ୟ ଶରତର ସେହି ରାତିମାନଙ୍କୁ ଦିନ ଗଣି ଗଣି ପ୍ରତୀକ୍ଷା କରି ରହୁଥିଲେ । କାତ୍ୟାୟିନୀ-ବ୍ରତ ପାଳନ କରୁଥିବା କନ୍ୟାମାନଙ୍କ ଲାଗି ମଧ୍ୟ ଏହି ତିଥି ନିର୍ଦ୍ଦିଷ୍ଟ ଥିଲା ।”

"ଏହିପରି ଦିନ ଗଣି ଗଣି ବର୍ଷା ଋତୁ ଚାଲିଗଲା । ଶିଶିର-ଧୂଆ ଆକାଶ ସ୍ୱଚ୍ଛ ହୋଇ ଉଠିଲା । କାଦୁଅ-ପଙ୍କ ଶୁଖିଗଲା । ଯମୁନାର ପାଣି ବର୍ଷା ହେତୁରୁ ମଇଳା ହୋଇ ଯାଇଥିଲା । ଏବେ ତାହା ମାଟି ତଳକୁ ବସିଗଲା । ତାହା ନିର୍ମଳ ହୋଇ ଉଠିଲା । ବୃନ୍ଦାବନର ଘରଦ୍ୱାରରେ ଧଳା ମଲ୍ଲୀ (ଧଳା ଗୁମେଲି) ଓ ସୁନା ରଙ୍ଗର ମଲ୍ଲୀ (ହଳଦିଆ ଗୁମେଲି)ର ବାସନା ଭରପୂର ହୋଇ ଉଠିଲା । ସେତେବେଳେ ବେଶୀ ଗରମ ନଥିଲା କିମ୍ବା ବେଶୀ ଥଣ୍ଡା ନଥିଲା । ତାହା ଥିଲା ଖୁବ୍ ସୁଖଦ ଓ ରମଣୀୟ ସମୟ ।"

ଏହାଶୁଣି ଶୌନକ କହିଲେ—"ସୂତ ମହାଶୟ ! ଶରତ୍ ଋତୁରେ ଏଭଳି ମଲ୍ଲୀ ଫୁଲ ଫୁଟେ କି ? କିନ୍ତୁ ଶରତ୍‌ରେ ମଲ୍ଲୀର ବର୍ଣ୍ଣନା ଆମେ ସାହିତ୍ୟର ବାକ୍ୟଗୁଡ଼ିକରେ ପାଇ ନଥାଉଁ । ଆପଣ ତା'ହେଲେ ମଲ୍ଲୀର ବର୍ଣ୍ଣନା କେମିତି କଲେ ?"

ସୂତ କହିଲେ—"ମହାରାଜ ! ଭଗବାନ ଲୋକ ଓ ବେଦ ଏହି ଦୁହିଁଙ୍କର ଅତୀତ । ଶରତ ଋତୁରେ ମଲ୍ଲୀଫୁଲ ନ ଫୁଟୁଥିଲେ ମଧ୍ୟ ଭଗବାନ୍‌ଙ୍କର ଇଚ୍ଛା ହେଲେ ତାହା ଫୁଟିଯିବ । ଏହିସବୁ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର, ତାରା ତଥା ଚରାଚର ବିଶ୍ୱର ଜୀବସମୂହ ତାଙ୍କର ସଙ୍କେତରେ ହିଁ ଘୂରି ବୁଲୁଛନ୍ତି । ପ୍ରକୃତି ତାଙ୍କର ଇଚ୍ଛା ସହିତ ନିଜ ଇଚ୍ଛାକୁ ମିଳାଇ ହସି ଉଠୁଛି । ସେହି ଦିନର ପ୍ରତୀକ୍ଷା ଲାଗି ସକଳ ବ୍ରଜାଙ୍ଗନାଙ୍କ ଚନ୍ଦ୍ର-ମୁଖର ଯେତେବେଳେ ହସି ଉଠୁଥିଲା, ସେତେବେଳେ ମଲ୍ଲୀଫୁଲ ନ ଫୁଟିକରି କେମିତି ବା ରହିପାରିବ ? ସମସ୍ତଙ୍କର ପ୍ରସନ୍ନତା ଦେଖିକରି ସେ ମଧ୍ୟ ପ୍ରସନ୍ନ ହୋଇ ଉଠିଲା; ସେ ମଧ୍ୟ ଫୁଟି ଉଠିଲା । ସେ ମଧ୍ୟ ନିଜର ବାସନାରେ ସାରା ବୃନ୍ଦାବନର ରାସସ୍ଥଳୀକୁ ଚହଟାଇ ଦେବାକୁ ଲାଗିଲା । ଭଗବାନ୍ କୌଣସି ସାହିତ୍ୟ, ସଙ୍ଗୀତ, ଅଥବା କଳାର ଅଧୀନ ହୋଇ କାମ କରି ନଥାନ୍ତି । ତାହାସବୁ ତାଙ୍କୁ ହିଁ ଅନୁସରଣ କରିଥାଏ । ସେହି ରାସ-ପୂର୍ଣ୍ଣିମା ଆସିଯିବାରେ ଯେଉଁ ଫୁଲଗୁଡ଼ିକ ଫୁଟୁ ନଥିଲା, ଯେଉଁ ଗୁଡ଼ିକର ଫୁଟିବାଲାଗି ସେହି ଋତୁଟି ବି ହୋଇ ନଥିଲା, ସେଗୁଡ଼ିକ ମଧ୍ୟ ଫୁଟି ଉଠିଲା । ବୃନ୍ଦାବନର ବାୟୁମଣ୍ଡଳ ସୁଗନ୍ଧରେ ଭରପୂର ହୋଇ ଉଠିଲା ।"

"ଗୋପୀମାନଙ୍କର ମନ ସେଦିନ ଖୁବ୍ ଜୋରରେ ଉଚ୍ଛୁଳି ଉଠିବାକୁ ଲାଗିଲା । ଆଜି ଶ୍ୟାମସୁନ୍ଦର ଆମ୍ଭମାନଙ୍କର ଚିରଦିନର ଅଭିଳାଷଟିକୁ ପୂର୍ଣ୍ଣ କରିବେ । ଆଜି ତାଙ୍କ ହୃଦୟରେ ହୃଦୟକୁ ଲଗ୍ନ କରି ଆମ୍ଭେମାନେ ମିଳନ-ସୁଖର ରସକୁ ଆସ୍ୱାଦନ କରିବୁ । ଆଜି ଆମ୍ଭମାନଙ୍କର ସକଳ ମନୋରଥ ପୂରିଯିବ । ଆଜି ଆମ୍ଭମାନଙ୍କର ଚିରଦିନର ଶାଧଟି ମେଣ୍ଟିଯିବ । ସେମାନେ ଯେ ଖାଲି ଏକା ଏକା ସେହି ଶରତ-ରାତିଗୁଡ଼ିକୁ ଦେଖି ଉତ୍ସୁକ ହୋଇ ଉଠୁଥିଲେ ତାହା ନୁହେଁ; ଭଗବାନ ମଧ୍ୟ ଅନୁରୂପ ଭାବରେ ଉତ୍ସୁକ ହୋଇ ଉଠୁଥିଲେ । ତାଙ୍କ ମନ ମଧ୍ୟରେ ବି ରମଣୀମାନଙ୍କ ସହିତ ରମଣ କରିବାର ପ୍ରବଳ ଇଚ୍ଛା

ଜାଗ୍ରତ ହୋଇ ଉଠୁଥିଲା । ଭଗବାନ ହେଉଛନ୍ତି ଆପ୍ତକାମ ଓ ପରିପୂର୍ଣ୍ଣ ଆତ୍ମାରାମ ପୁରୁଷ । ସେ ମଧ୍ୟ ଶରତ୍ ପୂର୍ଣ୍ଣିମାକୁ ଦେଖି ରାସ କରିବାପାଇଁ ମନ ବଳାଇଲେ ।”

ତାହାପରେ ଶୌନକ ପଚାରିଲେ—“ସୂତ ମହାଶୟ ! ଯାହାର କୌଣସି ଗୋଟିଏ ବିଷୟରେ ତୃପ୍ତି ନ ଥାଏ, ତାହା ପାଇବାଲାଗି ତା’ର ଇଚ୍ଛା ହୋଇଥାଏ । ଉଦାହରଣ ସ୍ୱରୂପ, ଆମେ ରାବିଡ଼ି ଖାଇଲୁ । ତାହା ଖୁବ୍ ସୁଆଦିଆ ଲାଗିଲା । ଇଚ୍ଛା ହେଲା, ପୁଣି କେମିତି ତାହା ଖାଆନ୍ତୁ ଅଥବା ଆମେ କାହା ମୁହଁରୁ ରାବିଡ଼ିର ପ୍ରଶଂସା ଶୁଣିଲୁ । ସେତେବେଳେ ଆମ ମନରେ ବି ଇଚ୍ଛା ହେଲା, ଆମେ କେମିତି ସେହି ରସଟି ଚାଖନ୍ତୁ । ଇଚ୍ଛା ହେବାଟା ହେଉଛି ଅପୂର୍ଣ୍ଣତାର ଚିହ୍ନ । ଯେ ହେଉଛନ୍ତି ପରିପୂର୍ଣ୍ଣ, ଯେ ହେଉଛନ୍ତି ଅପ୍ତକାମ, ତାଙ୍କର ପୁଣି କେମିତି ଇଚ୍ଛା ହେଲା ? ଆପଣ କହୁଛନ୍ତି—ପିଲାଟିଏ ଭଳି ସେ ଖେଳାଖେଳି କରନ୍ତି ; କିନ୍ତୁ ପିଲାର ତ ଖେଳିବା ପାଇଁ ଇଚ୍ଛା ହୋଇଥାଏ । ସେ ଖେଳନା ଆଦି ଜିନିଷମାନ ଆଣି ଠୁଳ କରିଥାଏ । ତା’ର ଏଥିରେ ଅପୂର୍ଣ୍ଣତା ଥାଏ ; କିନ୍ତୁ ଶ୍ରୀକୃଷ୍ଣ ତ ହେଉଛନ୍ତି ପରିପୂର୍ଣ୍ଣ ପୁରୁଷ । ତାଙ୍କର ଇଚ୍ଛା ହେବାଟା ଯଥାର୍ଥ ବୋଲି ବୋଧ ହେଉ ନାହିଁ ।”

ସୂତ ହସି ହସି କହିଲେ—“ମହାରାଜ ! ଯେ ପୂର୍ଣ୍ଣ ତାଙ୍କ ମନରେ ପୂର୍ଣ୍ଣତାର ଇଚ୍ଛା ଥାଏ । ସେ ପୂର୍ଣ୍ଣ ସହିତ ଖେଳିବେ । ତାଙ୍କର ଅନ୍ୟ ସାଧନ ପ୍ରତି ଅପେକ୍ଷା ନଥାଏ । ବୁଢ଼ିଆଣୀ ନିଜେ ନିଜର ଜାଲ ବୁଣି ତାହା ଭିତରେ ଚଲା-ବୁଲା କରୁଥାଏ । ସେ ଯେତେବେଳେ ଚାହେଁ ସେତେବେଳେ ସେଥିରୁ ବାହାରି ଯାଇଥାଏ । କୃଷ୍ଣ ହେଉଛନ୍ତି ନିର୍ଗୁଣ ବ୍ରହ୍ମ ସମାନ । ସେ ମୁଠା ମୁଠା ଗୁହଳ-ଚୂନାରେ ତିଆରି ହୋଇଥିବା ମିଠେଇ ନୁହନ୍ତି । ସେତ ନିର୍ଗୁଣ ହୋଇ କରି ବି ସୁଗୁଣ, ସରସ ଓ ମଧୁର । ସେ ନିଜେ ନିଜ ସହିତ ରମଣ କରନ୍ତି, ହସନ୍ତି, ଖେଳନ୍ତି ଓ କ୍ରୀଡ଼ା କରନ୍ତି । ଏଥିରେ ତାଙ୍କ ପରିପୂର୍ଣ୍ଣତାରେ କିମ୍ବା ଆପ୍ତକାମତାରେ କିଛି ହିଁ ବାଧା ଉପୁଜି ନଥାଏ ।”

ଶୌନକ କହିଲେ—“ହେ ସୂତ ! ଆଚ୍ଛା, ହେଲା ଏବେ ତାଙ୍କ ପରିପୂର୍ଣ୍ଣତାରେ କିଛି ବାଧା ପଡ଼ି ନଥାଏ ; କିନ୍ତୁ ଯେ ଏକ ଓ ଅଦ୍ୱିତୀୟ, ଯେ ନିରୀହ ନିର୍ବିକାର, ତାଙ୍କ କ୍ଷେତ୍ରରେ ତ ଖେଳ ହୋଇ ପାରିବ ନାହିଁ । ଏକାକୀ ଭଳି କେଉଁଠି ଖେଳ ହୋଇପାରେ ? ଏକାକୀ ଭଳି କେଉଁଠି ରମଣ ହୋଇପାରେ ?”

ସୂତ କହିଲେ—“ହଁ ମହାରାଜ ! ଏ କଥା ଅବଶ୍ୟ ସତ ଯେ ଏକାକୀ ଖେଳ ହୋଇପାରେ ନାହିଁ । ସେଥିପାଇଁ କିଛି ନା କିଛି ଆଶ୍ରୟ ଲୋଡ଼ା । ଭଗବାନ ନିଜ ମାୟାର ଆଶ୍ରୟ ନେଇ ହିଁ ରମଣ କରିବାପାଇଁ ଇଚ୍ଛା କରିଥିଲେ ।”

ଏହାଶୁଣି ଶୌନକ ଚମକି ପଡ଼ିଲେ ଏବଂ କହିଲେ—"ହେ ସୂତ ! ଅତି ଆଶ୍ଚର୍ଯ୍ୟ କଥା ଯେ ତୁମେ କ'ଣ କହୁଛ ? ଭଗବାନ ହେଉଛନ୍ତି ମାୟାତୀତ । ତାଙ୍କଠାରେ ମାୟା କପରି ବା ଆସିବ ? ଏହି ଦୁର୍ଦ୍ଦାନ୍ତ ମାୟା ଆମ୍ଭମାନଙ୍କୁ ସିନା ବଶ କରି ରଖିଛି, ଭଗବାନଙ୍କୁ କ'ଣ ଏହାର ପ୍ରଭାବ ଛୁଇଁ ନାହିଁ ?"

ଏହା ଶୁଣି ସୂତ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ସେ କହିଲେ—"ହେ ଶୌନକ ! ଆପଣ ମାୟାକୁ ଖରାପ ଭାବୁଛନ୍ତି । ବାସ୍ତବରେ ଲୋକେ ମାୟାକୁ ଯେତେଟା ଖରାପ ବୋଲି ଭାବନ୍ତି, ତାହା ସେତେଟା ଖରାପ ନୁହେଁ । ଏହିସବୁ ଯେତେ ଯେତେ ଖେଳା-ଖେଳି, ଲୀଳା କ୍ରୀଡ଼ା ଆଦି ବ୍ୟାପାର ଅଛି ତାହା ମାୟାକୁ ଆଶ୍ରୟ କରି ରହିଛି । ଯାହାକିଛି ସମ୍ଭବ, ତାହା ମାୟାର ଆଶ୍ରୟରେ ହିଁ ସମ୍ଭବ । ସେହି ମାୟା ପୁଣି ତିନି ପ୍ରକାର । ଗୋଟିଏ ହେଲା ଜଗନ୍ମୋହିନୀ ମାୟା । ଏଇଟି ହେଉଛି ମୁଁ, ଏଇଟି ହେଉଛି ମୋ'ର, ଏହି ବୁଦ୍ଧି ଯେଉଁ ମାୟା-ବଳରେ ହୋଇଥାଏ ସେହି ମାୟାରେ ତମୋଗୁଣ ଓ ରଜୋଗୁଣର ପ୍ରଧାନତା ରହିଛି । ଆଉ ଗୋଟିଏ ମାୟା ହେଉଛି ଭକ୍ତ-ମୋହିନୀ । ଏହାଦ୍ୱାରା ମୋହିତ ହୋଇ ଭକ୍ତ ଭଗବାନଙ୍କୁ ଚାହିଁଥାନ୍ତି । ସେ ତାହାର ଅଧୀନ ହୋଇ ଭଗବାନଙ୍କ ପ୍ରତି ଭକ୍ତି କରିଥାନ୍ତି । ସେହି ମାୟା ହେଉଛି ଶୁଦ୍ଧ ଏବଂ ସେଥିରେ ସତ୍ତ୍ୱଗୁଣର ପ୍ରଧାନତା ଅଛି । ଆଉ ଗୋଟିଏ ତୃତୀୟ ମାୟା ଅଛି ଯାହାକି ଭଗବାନଙ୍କୁ ବି ମୋହିତ କରି ଦେଇଥାଏ, ଏଥିରେ ଗୁଣ-ସମୂହର ଲେଶମାତ୍ର ଚିହ୍ନ-ବର୍ଣ୍ଣ ନାହିଁ । ଏହାକୁ ତୁମେ ସୀତା କହିପାର, 'ରାଧା' କହିପାର ଅଥବା 'ଶ୍ରୀ' କହିପାର, ତୁମେ ଯାହା ଚାହୁଁଛ, ତାହା କହିପାର । ଏହି ମାୟା ଭଗବାନଙ୍କୁ ବି ଚକା-ଭଉଁରୀ ଖେଳାଇ ଘୂରାଇ ଦେଇଥାଏ । ଏହାରି ଆଶ୍ରୟରେ ଭଗବାନ କାଠ-ପିତୁଳାଟି ଭଳି ନାଚି ଉଠିଥାନ୍ତି । ଏହାରି ଆଶ୍ରୟ ଲୀଳା, କ୍ରୀଡ଼ା, ରାସ, ବିଳାସ, ପରିହାସ, କଥନ, ଶ୍ରବଣ ସବୁକିଛି । ଏହାକୁ ଛୁଇଁ ଦେଲେ ଶ୍ରୀକୃଷ୍ଣ 'ଠନ୍ ଠନ୍ ମଦନଗୋପାଳ' ହୋଇଯାନ୍ତି ବୋଲି କୁହା ଯାଇଥାଏ । ଏହି ଯୋଗମାୟାର ଆଶ୍ରୟ ନେଇ ରାସେଶ୍ୱର ଭଗବାନ୍ ରାସ କରିବାପାଇଁ ଇଚ୍ଛା କଲେ । ଆପଣ ମାୟା କହିଲେ ଏହି ସଂସାରକୁ ଚଳାଉଥିବା ରଜୋ-ଗୁଣୀ ତମୋଗୁଣୀ ମାୟା ବୋଲି ବୁଝନ୍ତୁ ନାହିଁ ।"

ଶୌନକ କହିଲେ—"ହଁ, ସୂତ ମହାଶୟ ! ଏବେ କଥାଟା ବୁଝି ପଡ଼ିଲା । ହଁ, ସେଉଠୁ କ'ଣ ହେଲା ? ଏହି ବିଷୟଟି ତ ଖୁବ୍ ସରସ । ସୂତ ମହାଶୟ ! ଦେଖନ୍ତୁ, ଏହାର ବର୍ଣ୍ଣନରେ ଯେମିତି ଶୀଘ୍ରତା ପ୍ରକାଶ ନ ପାଏ । ଆମ୍ଭମାନଙ୍କର ତ ଆଉ କିଛି କାମ ନାହିଁ । ଆମ୍ଭମାନଙ୍କର କୃଷ୍ଣକଥା ହିଁ ଶୁଣିବାର ଅଛି । ଏହାକୁ ହିଁ ଶୁଣି ଆମ୍ଭେମାନେ ସମୟ ବିତାଇବୁ ; ତେଣୁ ଆପଣ ଏହି ବିଷୟକୁ ବିସ୍ତୃତ ଭାବରେ ବର୍ଣ୍ଣନ କରନ୍ତୁ ।"

ସୂତ କହିଲେ—"ମହାରାଜ ! ଏହି ବିଷୟଟିକୁ କିଏ ବା ବିସ୍ତୃତ କରି କହିପାରିବ ? ରାସ ଯଦି ଗୋଟିଏ ଦିନ ହୋଇଥାନ୍ତା, ତା'ହେଲେ ତାହାର ବର୍ଣ୍ଣନ କରି ହୁଅନ୍ତା ।

ଶ୍ରୀକୃଷ୍ଣଙ୍କ ରାସ ତ ହେଉଛି ନିତ୍ୟ, ତାହା ତ ଅନାଦି କାଳରୁ ହିଁ ସଂଘଟିତ ହୋଇ ଆସୁଛି । ତାହା ଅନନ୍ତ କାଳ ପର୍ଯ୍ୟନ୍ତ ହୋଇ ଆସୁଥିବ ଏବଂ ସେଥିରେ ନିତ୍ୟ ହିଁ ନବୀନତା ରହିଛି । ତାହା ତ ବର୍ଣ୍ଣନର ବିଷୟ ନୁହେଁ, ବରଂ ଅନୁଭବର ବିଷୟ । ତଥାପି ଗୁରୁଙ୍କ କୃପା ବଳରେ ମୋ'ର ବୁଦ୍ଧି ଓ ଶକ୍ତିକୁ ସୁଦ୍ଧି ନିଜ ବାଣୀକୁ ପବିତ୍ର କରିବା ଉଦ୍ଦେଶ୍ୟରେ ଏହାର ବର୍ଣ୍ଣନ ମୁଁ କରିବି । ଆପଣମାନେ ସମସ୍ତେ ସମାହିତ ଚିତ୍ତରେ ତାହା ଶୁଣନ୍ତୁ ।"

**ଛପ୍‌ପୟ**

ଇତ ଗୋପିନ କୋ ଚିତ୍ତ କୃଷ୍ଣକେ ରୂପ ଲୁଭାୟୋ ।
କରିବେ ରାସ ବିଳାସ ଶ୍ୟାମ ଉତ ମନ ଲଲଚାୟୋ ॥
ଅତି ସୁଖଦାୟିନୀ ଶରଦ୍ ପୂର୍ଣ୍ଣିମା କୀ ନିଶି ଆଈ ।
ସୁଷମା ଅତି ରମନୀକ ଦଶହୁ ଦିଶି ମାହିଁ ସୁହାଈ ॥
ମନମୋହନ ନେ ମୋହିନୀ ମାୟା କୋ ଆଶ୍ରୟ ଲୟୋ ।
ଆପ୍ତକାମ ପରିପୂର୍ଣ୍ଣ କୋ ମନ କ୍ରୀଡ଼ାକେ ହିତ ଭୟୋ ॥



## ଶାରଦୀୟ ଶଶୀର ସୁଷମା

ତଦୋଡୁରାଜଃ କକୁଭଃ କରୈର୍ମୁଖମ୍ ।
ପ୍ରାଚ୍ୟା ବିଲିମ୍ପନ୍ନରୁଣେନ ଶନ୍ତମୈଃ ॥
ସ ଚର୍ଷଣୀନାମୁଦଗାଚ୍ଛୁଚୋ ମୃଜନ୍ ।
ପ୍ରିୟଃ ପ୍ରିୟାୟା ଇବ ଦୀର୍ଘଦର୍ଶନଃ ॥

( ଶ୍ରୀ.ଭା. ୧୦ସ୍କ, ୨୯ଅ, ୨ ଶ୍ଳୋ )

**ଛପ୍‌ପୟ**

ଅତି ନିର୍ମଳ ନଭ ଭୟୋ ନୀଲିମା ଗହରୀ ଛାଈ ।
ଶାରଦୀୟ ଶଶୀ ବିହଁସି ଚନ୍ଦ୍ରିକା ଶୁଭ୍ର ଛିଟକାଈ ॥

ପ୍ରାଚୀ ଦର୍ଶକୀ ଲଲିତ ଲାଲିମା ଲାଗେ ଯାହେ ॥
ପଦ୍ମ ବଦେଶଟେଁ ରଚେଯା ପ୍ୟାରୀ ମୁଖ ଦେଖେସେ ॥
ସ୍ନିଗ୍ଧ ରଶ୍ମି ପଟଚେଁ ନିକସି, ପୂର୍ଣ୍ଣଚନ୍ଦ୍ର ନିକସିତ ଭୟେ ।
ସୂର୍ଯ୍ୟତାପ ସନ୍ତାପ ଦୁଃଖ, ନିରଖତ ଶଶୀ ସବ ଭଗି ଗୟେ ॥

ସଂସାରରେ ସୁଖ, ଦୁଃଖ, ଅନୁକୂଳ, ପ୍ରତିକୂଳ ସବୁକିଛି ସହିବାକୁ ପଡ଼ିଥାଏ । ଦ୍ୱନ୍ଦ୍ୱର ଅନ୍ୟ ନାମ ହେଉଛି ସଂସାର । ସଂସାରର ସ୍ଥିତି ଲାଗି ସୁଖର ଆବଶ୍ୟକତା ଅଛି ଏବଂ ଦୁଃଖର ବି ଆବଶ୍ୟକତା ଅଛି । ଦୁଃଖ ନଥିଲେ ସୁଖର ଅନୁଭବ ବା କିପରି ହୋଇପାରିବ ? ପ୍ରତିକୂଳ ନଥିଲେ ଅନୁକୂଳରେ ଆନନ୍ଦ ବା କିପରି ଆସିବ ? ଗ୍ରୀଷ୍ମ, ବର୍ଷା ଓ ଶୀତ ସବୁ ଋତୁର ଆବଶ୍ୟକତା ଅଛି । ଏହି ସବୁଥିରେ ସୁଖ ଅଛି । ଆଉ ଦୁଃଖ ବି ଅଛି । ଗ୍ରୀଷ୍ମଋତୁ ନ ଆସିଲେ ସୂର୍ଯ୍ୟ ନିଜ କିରଣରଶ୍ମିଦ୍ୱାରା ଜଳକୁ କେମିତି ବା ଶୋଷି ନେବେ । ସେ ଜଳକୁ ଶୋଷି ନନେଲେ ବର୍ଷା ବା କେମିତି ହେବ ? ଶୀତ ଯଦି ନପଡ଼ିବ, ତେବେ ଅଗ୍ନି କିପରି ବା ପ୍ରିୟ ହେବ ? ଗ୍ରୀଷ୍ମଋତୁ ଆବଶ୍ୟକ; କିନ୍ତୁ ଗ୍ରୀଷ୍ମଋତୁରେ କେତେ ଯେ କଷ୍ଟ ହୁଏ, ଶୋଷ କରେ ଓ ଝାଳ ବୁହେ, ତାହାର ଠିକଣା ନାହିଁ । ଏହିପରି ଭାବରେ ଜଳ ହେଉଛି ଜୀବନ ; କିନ୍ତୁ ବର୍ଷା ହେବାଦ୍ୱାରା ସ୍ଥାନସ୍ଥାନରେ କାଦୁଅ-ପଙ୍କ ଜମିଯାଏ । ସବୁବେଳେ ଆକାଶର ମେଘ ଘୋଟି ହୋଇ ରହିଥାଏ ; କିନ୍ତୁ ବର୍ଷା ଚାଲିଯିବା ପରେ ଯେତେବେଳେ ଆକାଶ ସ୍ୱଚ୍ଛ-ନିର୍ମଳ ହୋଇ ଉଠେ, କାଦୁଅ-ପଙ୍କ ଶୁଖିଯାଏ, ନଦୀଗୁଡ଼ିକର ଜଳ ସ୍ୱଚ୍ଛ ହୋଇ ଉଠେ, ପୃଥିବୀ ନାନା ପ୍ରକାର ଶସ୍ୟରେ ଶ୍ୟାମଳ ହୋଇ ଉଠେ, ସେହି ସମୟର ଦୃଶ୍ୟ ଥାଏ ଅନୁପମ । ସେଥିପାଇଁ ସାହିତ୍ୟରେ ସର୍ବତ୍ର ଶାରଦୀୟ ପୂର୍ଣ୍ଣଚନ୍ଦ୍ରଙ୍କର ଉପମା ଦିଆଯାଇଛି । ଶରତ ଋତୁର ଚନ୍ଦ୍ର ନିର୍ମଳ, ସ୍ୱଚ୍ଛ ଓ ପରମ ସୁଖଦ ହୋଇଥାନ୍ତି । ଶୁଣାଯାଏ ଯେ ଏହିଦିନ ଚନ୍ଦ୍ର-କିରଣରୁ ବିଶେଷ ଭାବରେ ଅମୃତ ରସ ପଡ଼ିଯାଏ । ସେହି ଦିନର ଚନ୍ଦ୍ରଙ୍କୁ ଦର୍ଶନ କରିବାରେ ତେଣୁ ବିଶେଷ ମାହାତ୍ମ୍ୟ ରହିଅଛି ।

ସୂତ କହୁଥାନ୍ତି, "ହେ ମୁନିମାନେ ! କାର୍ତ୍ତିକ ମାସର ଆରମ୍ଭରେ କିଛିଦିନ ଖରା ଖୁବ ଟାଣ ହୋଇଥାଏ । ଏହାର କାରଣ ହେଲା, ଆକାଶ ନିର୍ମଳ ରହିଥାଏ ; ତେଣୁ ଗରମ ବେଶୀ ହୋଇଥାଏ । ବର୍ଷା କାଳରେ ଆକାଶ ମେଘରେ ଭରପୂର ଥିବା ହେତୁ ଘୋଟି ରହିଥାଏ । ଏବେ ତ ମେଘ ବରଷି ବରଷି କରି ଚାଲିଯାଇଥାଏ । ଏବେ ସୂର୍ଯ୍ୟଙ୍କ କିରଣସମୂହ ସିଧା ଆସି ପଡ଼ୁଥାଏ । ସେହି ଉଷ୍ଣ ଉତ୍ତାପଦ୍ୱାରା ଛୋଟ ଛୋଟ ବୃକ୍ଷ ଗଛଗୁଡ଼ିକ ଝାଉଁଳି ଯାଏ, ହରିଣର ରଙ୍ଗ କଳା ପଡ଼ିଯାଏ ଏବଂ ନରନାରୀ ଜ୍ୱରରେ ଅଶାନ୍ତ ହୁଅନ୍ତି । ମହର୍ଷିମାନେ କଷ ପଦାକୁ କାଢ଼ି ଧକେଇବାକୁ ଲାଗନ୍ତି । ପକ୍ଷୀମାନେ

ବିକଳ ହୋଇ ଉଠନ୍ତି । ସମସ୍ତେ ସେହି ସୂର୍ଯ୍ୟତାପରେ ସନ୍ତପ୍ତ ହୋଇ ଉଠନ୍ତି । ଦିନରେ ପଡ଼ାକୁ ବାହାରିବା ବଡ଼ କଠିନ ହୋଇ ଯାଏ ; କିନ୍ତୁ ଚନ୍ଦ୍ର ଯେତେବେଳେ ନିଜର କଳା ସମ୍ଭାର ଧରି ପୂର୍ବଦିଗରେ ଉଦି ଆସନ୍ତି, ସେତେବେଳେ ତାଙ୍କ ଉଦି ଆସିବା ମାତ୍ରେ ହିଁ ସବୁ ପ୍ରାଣୀଙ୍କର ସନ୍ତାପ ଦୂର ହୋଇ ଯାଇଥାଏ । ଯେ ଅନ୍ୟମାନଙ୍କ ସନ୍ତାପକୁ ଦୂର କରିଦିଅନ୍ତି ତାଙ୍କୁ ଲୋକେ ସାଧୁପୁରୁଷ ବୋଲି କହିଥାନ୍ତି । ତାଙ୍କର ଯେଉଁଭଳି ରୂପ-ରଙ୍ଗ ଆଉନା କାହିଁକି, ପୂର୍ବେ ସେ ଯେଉଁଭଳି କାର୍ଯ୍ୟ କରିଥାନ୍ତୁ ନା କାହିଁକି, ଯଦି ସେ ବର୍ତ୍ତମାନକୁ ସୁଧାରି ନେଇପାରିଛନ୍ତି, ପରୋପକାର କରିବାପାଇଁ ବ୍ରତକୁ ଗ୍ରହଣ କରିସାରିଛନ୍ତି, ତା'ହେଲେ ତାଙ୍କର ପୂର୍ବର ସବୁ ଅବଗୁଣକୁ ଲୋକେ ଭୁଲି ଯାଆନ୍ତି ଏବଂ ସେ ସମସ୍ତଙ୍କର ପ୍ରିୟ ହୋଇ ଉଠନ୍ତି, ଏଇ ଚନ୍ଦ୍ରଙ୍କୁ ଦେଖନ୍ତୁ । ତାଙ୍କର ଜନ୍ମ ହୋଇଛି ସମୁଦ୍ରରୁ । ସମୁଦ୍ର ମନ୍ଥନ ସମୟରେ ସର୍ବପ୍ରଥମେ ବିଷ ହିଁ ବାହାରି ଥିଲା ; ତେଣୁ ସିଏ ତାଙ୍କର ବଡ଼ଭାଇ, ଯେଉଁ କାଳକୂଟ ବିଷ । ଅମୃତ ବି ସିଏ ତାଙ୍କର ଭାଇ; କିନ୍ତୁ ସେ ସିଏଙ୍କଠାରୁ ସାନ । ସିଏଙ୍କ ପ୍ରତି ଶ୍ୱଶୁରଙ୍କର ଅଭିଶାପ ବି ଅଛି । ସିଏଙ୍କ ଦେହରେ କ୍ଷୟ ରୋଗ ବି ଅଛି । ସେ ନିତ ବଢ଼ନ୍ତି ଓ ଛୁଟନ୍ତି । ବିରହିଣୀମାନଙ୍କର ତ ସେ ଶତ୍ରୁ । ସିଏଙ୍କୁ ଦେଖିବା ମାତ୍ରେ ହିଁ ବିରହିଣୀମାନଙ୍କ ବିରହ-ଦୁଃଖ ଦୁଇଗୁଣ ବଢ଼ି ଯାଇଥାଏ । ସେମାନଙ୍କର ନିଜ ପ୍ରାଣପତିମାନଙ୍କ କଥା ଖାଲି ମନେପଡ଼େ । ସେମାନେ କାନ୍ଦି ଉଠିଥାନ୍ତି ଏବଂ ସିଏଙ୍କ ଉପରେ ରାଗି ଉଠିଥାନ୍ତି । ସିଏଙ୍କୁ କଳଙ୍କମୟ ବୋଲି ଭାବି ପଡ଼, ସିଏଙ୍କର ମୁହଁ ବି ଚାହିଁ ନଥାଏ । ସିଏଙ୍କର ଉଦୟ ମାତ୍ରେ ହିଁ ସେ ବୁଜି ହୋଇ ଯାଇଥାଏ, ନିଜକୁ ସଙ୍କୁଚିତ କରି ଆଖି ବୁଜି ଦେଇଥାଏ । ସିଏଙ୍କ ବିନା ପୂର୍ବଦିଗଟି ବିଧବା ଭଳି ହୋଇ ଉଠିଥାଏ ଏବଂ ତା'ର ମୁହଁଟି କଳା ପଡ଼ିଯାଇଥାଏ । ଯେଉଁ ସ୍ତ୍ରୀର ପତି ପାଖରେ ନାହାନ୍ତି, ତା'ର ମୁହଁଟି ବା କେମିତି ହସି ଉଠିବ ? ମୁହଁ ତ ଅନୁରାଗରେ ହିଁ ହସି ଉଠିଥାଏ । ଯେଉଁଠି ଗୃହ ଆଖି ଏକାଠି ମିଶିଥାଏ, ସେଇଠି ହିଁ ଅନୁରାଗ ପ୍ରକଟିତ ହୋଇଥାଏ ।

"ଗୋପୀମାନଙ୍କର ଏହି ଚନ୍ଦ୍ରଙ୍କ ସହିତ ଥିଲା ଶତ୍ରୁତା । ଏହାର କେତେଗୁଡ଼ିଏ କାରଣ ଥିଲା । ଦିନବେଳା ତ ସେମାନେ କେତେବେଳେ ପାଣି-ଘାଟକୁ ଯାଉଥିଲେ, କେତେବେଳେ ଗୋଶାଳାକୁ ଯାଉଥିଲେ, କେତେବେଳେ ଗାଇ ଦୁହିଁବାକୁ ଯାଉଥିଲେ ଏବଂ ଆଉ କେତେବେଳେ ଦହି ବିକିବାକୁ ଯାଉଥିଲେ । ସେହି ସମୟରେ ସେମାନେ ଶ୍ୟାମଙ୍କୁ ଦେଖି ବି ନେଉଥିଲେ ; କିନ୍ତୁ ଯେତେବେଳେ ରାତି ହେଉଥିଲା, ଯେତେବେଳେ ଚନ୍ଦ୍ର ହାତ ବଢ଼ାଇ ଦେଉଥିଲେ, ଯେତେବେଳେ କାଣ ଗୋପୀମାନଙ୍କୁ କାରବାସ ଦଣ୍ଡ ହୋଇ ଯାଉଥିଲା, ସତରେ ସ୍ତ୍ରୀମାନେ କେମିତି ବାହାରକୁ ଅସି ପାରିବେ ? ସେମାନେ ଅଗଣାରେ ବସିରହି କାନ୍ଦି ଉଠୁଥିଲେ । ସେମାନେ ଆକାଶ ଉପରକୁ ଚାହିଁ ଦେଖନ୍ତି ତ ସେଠି ହସି ଉଠୁଥିବା ଚନ୍ଦ୍ର ଦେଖା ଯାଉଛନ୍ତି । ସେମାନେ ଅନୁଭବ କରୁଥିଲେ ସତେ

ଯେମିତି ଚନ୍ଦ୍ର ସେମାନଙ୍କୁ ଚାହିଁ ହସି ଉଠୁଛନ୍ତି । ଶ୍ରୀକୃଷ୍ଣଙ୍କ ମୁଖର ଆଭା ମଧ୍ୟ ଚନ୍ଦ୍ରଙ୍କ ସହିତ ମେଳ ଖାଇ ଯାଉଥିଲା । ସମାନ ବସ୍ତୁକୁ ଦେଖି ସେମାନଙ୍କ ମନରେ ନିଜ ପ୍ରିୟତମଙ୍କ ସ୍ମୃତି ଜାଗି ଉଠୁଥିଲା । ରୂପରେ ଖାଲି ସମାନତା ଥିଲେ କିଛି ନଥିଲା, ନାମରେ ମଧ୍ୟ ଥିଲା ସମାନତା । ଶ୍ରୀକୃଷ୍ଣଚନ୍ଦ୍ର, ବ୍ରଜଚନ୍ଦ୍ର, ତଥା ବୃନ୍ଦାବନଚନ୍ଦ୍ର ଏହି ନାମ ସବୁରେ ଚନ୍ଦ୍ର ଲାଗି ରହିଛି । ଚନ୍ଦ୍ରଙ୍କୁ ଦେଖିବା ମାତ୍ରେ ହିଁ ଶ୍ୟାମସୁନ୍ଦରଙ୍କର ସ୍ମୃତି ଆହୁରି ଅଧିକ ଜାଗ୍ରତ ହୋଇ ଉଠୁଥିଲା । ଶ୍ରୀକୃଷ୍ଣଙ୍କର ଯେଉଁ ପୀତବାସଟି ଥିଲା, ତାହା ଚନ୍ଦ୍ରକିରଣ ଭଳି ଚକମକ କରୁଥିଲା । ଯେଉଁ ଆକାଶରେ ଚନ୍ଦ୍ର ବିଚରଣ କରୁଛନ୍ତି, ତାହାର ରଙ୍ଗ ସହିତ ଘନଶ୍ୟାମଙ୍କ ଶ୍ରୀଅଙ୍ଗର ରଙ୍ଗ ମେଳ ଖାଇ ଯାଉଥିଲା । ଏହିସବୁ ସ୍ମୃତି ସେମାନଙ୍କୁ ସାରା ରାତି ଜମା ଶୁଆଇ ଦେଉ ନଥିଲା । ସେମାନେ କହୁଥିଲେ, 'ଏହି କଳଙ୍କମୟ ଚନ୍ଦ୍ର ଆକାଶରେ ବିଚରଣ କରୁଥିବାଯାଏ ଆମକୁ ନିଦ ଆସିବ ନାହିଁ ।' ଚନ୍ଦ୍ର ଏହି ଗାଳିଗୁଡ଼ିକ ସହି ସହି ନିତି ନିତି ମଳିନ ପଡ଼ି ଯାଉଥିଲେ ଏବଂ ଶେଷରେ ଅମାବାସ୍ୟା ଦିନ ଲୁଚି ଯାଉଥିଲେ । ପୁଣି ସେ ଦ୍ୱିତୀୟା ତିଥିରେ ପ୍ରକଟିତ ହେଉଥିଲେ । ଗୋପୀମାନେ ତାଙ୍କୁ ଆଦର କରିବେ, ଏହି ଆଶା ତାଙ୍କ ମନରେ ଥିଲା । ଦ୍ୱିତୀୟା ତିଥିର ଚନ୍ଦ୍ରଙ୍କୁ ଦେଖି ସେମାନେ ନମସ୍କାର କରୁଥିଲେ । ସେତେବେଳେ ତାଙ୍କର ସାହସ ବଢ଼ି ଉଠୁଥିଲା; କାରଣ ସେମାନଙ୍କର ରାଗ କମି ଯାଇଥିଲା । ସେ ବଢ଼ି ବଢ଼ି ଯାଉଥିଲେ ଏବଂ ସେଇ ବଢ଼ିବାରେ ଗୋପୀମାନଙ୍କ ମନକୁ ଟାଣି ନେଉଥିଲେ । ସେ ଯେତେବେଳେ ପୂର୍ଣ୍ଣ ହୋଇ ଯାଉଥିଲେ, ସେତେବେଳେ ଗୋପୀମାନେ ପୁଣି କାନ୍ଦି ଉଠୁଥିଲେ ଏବଂ ତାଙ୍କୁ ଗାଳିମନ୍ଦ କରୁଥିଲେ । ସେଥିରେ, ବିଚରା ଚନ୍ଦ୍ରଙ୍କର ମୁଖ ମଳିନ ହୋଇ ଉଠୁଥିଲା; ତାଙ୍କ ଉତ୍ସାହ ଭାଙ୍ଗି ପଡ଼ୁଥିଲା, ଏବଂ ସେ ପୁଣି ଧୀରେ ଧୀରେ ପ୍ରଭାହୀନ, ତେଜହୀନ ହୋଇ ଯାଉଥିଲେ ।"

ଶରତ୍ ପୂର୍ଣ୍ଣିମା ଦିନ ସେ ନିଜର ସମସ୍ତ ସାହସକୁ ଠୁଳ କରାଇଲେ ଏବଂ ଦୃଢ଼ ନିଶ୍ଚୟ କଲେ, 'ଆଜି ମୁଁ ସକଳ ଜୀବଙ୍କର ସୂର୍ଯ୍ୟତାପ ଜନିତ ସନ୍ତାପକୁ ଦୂର କରିଦେବି ! ଆଜି ଚରାଚର ବିଶ୍ୱକୁ ନିଜ କମନୀୟ କିରଣରାଶିଦ୍ୱାରା ଆହ୍ଲାଦିତ କରିଦେବି ।' ଏହା ଭାବି ସେ ପ୍ରଥମେ ଉଦିତ ହେବା ମାତ୍ରେ ହିଁ ପୂର୍ବଦିଗର ମୁହଁଟିକୁ ସିନ୍ଦୂର ରଙ୍ଗରେ ରଞ୍ଜିତ କରି ଦେଲେ ।"

ଶୌନକ ପଚାରିଲେ—"ସୂତ ମହାଶୟ ! ବିଚରା ପୂର୍ବଦିଗଟି କି ପାପ କରିଥିଲା ଯେ ଚନ୍ଦ୍ର ଉଦିତ ହେବା ମାତ୍ରେ ହିଁ ନିଜ ଶୁଭ୍ର କିରଣ ଦ୍ୱାରା ତା'ର ମୁହଁଟିକୁ ରକ୍ତରଞ୍ଜିତ କରି ଦେଲେ ?"

ଏହାଶୁଣି ସୂତ ହସି ଉଠିଲେ ଏବଂ କହିଲେ—"ମହାରାଜ ! ଆପଣ ତ ବାବାଜି ଲୋକ ବୋଧ ହେଉଛନ୍ତି । ଆପଣ ଏଭଳି ରସାଳ ପ୍ରଶ୍ନ କିପରି ପଚାରୁଛନ୍ତି ? ଅଥବା

ଆପଣ ତ ଭୋଳା ଲୋକ ଏବଂ ସେଥିପାଇଁ ଏଭଳି ପ୍ରଶ୍ନ କରୁଛନ୍ତି ? କିମ୍ବା ଆପଣ ଜାଣିଶୁଣି କରି ପ୍ରସଙ୍ଗଟିକୁ ସରସ କରାଇବା ଉଦ୍ଦେଶ୍ୟରେ ଏଭଳି ରହସ୍ୟମୟ ରସାଳ ପ୍ରଶ୍ନଗୁଡ଼ିକୁ ଉଠାଉଛନ୍ତି ? ଶେଷ କଥାଟି ହୁଏତ ଠିକ୍ ହୋଇପାରେ । ହେ ପ୍ରଭୁ ! କଥାଟି ହେଉଛି ଏଇଆ । କୌଣସି ଜଣେ ପ୍ରିୟତମା ସ୍ତ୍ରୀର ପତି ବିଦେଶ ଚାଲି ଯାଇଛନ୍ତି । ଗଲାବେଳେ ସେ ଗୋଟିଏ କଥା ଦେଇ ଯାଇଛନ୍ତି ଯେ ଦଶଦିନ ମଧ୍ୟରେ ଫେରି ଆସିବେ । ସେହି ସ୍ତ୍ରୀଟି ବୟସ୍କା ଥିଲା ଭାରି ସାଧା-ସିଧା । ସେ ବଜାରରୁ ସେଦିନଠି ବୁଟା-ଖିଅ ଟାଣିଆଣି ରଖିଥିଲା । ନିତି ଉଠି ସେ ଗୋଟିଏ ଲେଖାଏଁ ବୁଟା-ଖିଅକୁ ନଷ୍ଟ କରି ଦେଉଥିଲା, ଯେଉଁଦିନ ସବୁତକ ବୁଟା-ଖିଅ ନଷ୍ଟ ହୋଇଗଲା, ସେଦିନ ତା'ର ଉତ୍ସୁକତା ଖୁବ୍ ବଢ଼ି ଉଠିଲା । ମୁହୂର୍ତ୍ତିକୁ ମୁହୂର୍ତ୍ତି ସେ ଘର ଭିତରକୁ ଯାଉଥିଲା ଏବଂ ପୁଣି ବାହାରକୁ ଆସୁଥିଲା । ପତିଙ୍କର ବି ଏହିଭଳି ଉତ୍କଣ୍ଠା ଥିଲା, ସେ ଠିକ୍ ସମୟରେ ହିଁ ଆସିଗଲେ । ସ୍ତ୍ରୀର ହୃଦୟ ଫାଟିଗଲା । ପ୍ରେମର ସ୍ରୋତ ଉଚ୍ଛୁଳି ଉଠିଲା । ଆଖିରୁ ଆପେ ଆପେ ଲୁହ ଝରିବାକୁ ଲାଗିଲା । ସେ ପତିଙ୍କ ପାଦତଳେ ପଡ଼ି କାନ୍ଦିବାକୁ ଲାଗିଲା । ତା'ର ମୁହଁଟି ବିରହ ତାପରେ ତାତି ଉଠୁଥିଲା । ହୃଦୟ ଥରି ଉଠୁଥିଲା । ପତିଙ୍କ ସୁଖଦ ସ୍ପର୍ଶ ଯେତେବେଳେ ମିଳିବ, ସେତେବେଳେ ତା'ର ଦୀର୍ଘ ଦିନର ସନ୍ତାପ ଦୂର ହୋଇଯିବ । ସ୍ତ୍ରୀ ପତିଙ୍କୁ ପୂଜା କରିବାଲାଗି ଗିନାରେ କୁଙ୍କୁମ ଭରିକରି ରଖିଥିଲା ; କିନ୍ତୁ ପତିଙ୍କୁ ପାଇ ସେ ସବୁକିଛି ଭୁଲିଗଲା । ପତି ସେହି ଚନ୍ଦନ କର୍ପୂର ମିଶ୍ରିତ କେଶରକୁ ନିଜ ହାତରେ ନେଇ ଏକ ଗାଢ଼ ଆଲିଙ୍ଗନ ତା'ର ମୁଖ-ପଦ୍ମରେ ବୋଳି ଦେଲେ । ଏକେତ ପତିଙ୍କ ହାତର ସୁଖଦ ସ୍ପର୍ଶ । ଦ୍ୱିତୀୟରେ ପୁଣି କେଶର-କର୍ପୂର-ଚନ୍ଦନର ଶୀତଳତା ଦ୍ୱାରା ତା'ର ସକଳ ସନ୍ତାପ ଦୂର ହୋଇଗଲା । ସେ ପୁଲକିତା ହୋଇ ଉଠିଲା । ପ୍ରଣୟଭରା ଦୃଷ୍ଟିରେ ସେ ପ୍ରାଣନାଥଙ୍କ ମୁଖଚନ୍ଦ୍ରକୁ ନିରୀକ୍ଷଣ କରି ଅଟକି ଗଲା । ଠିକ୍ ଏହିଭଳି ଭାବରେ ପୂର୍ବଦିଗର ସନ୍ତାପକୁ ଦୂର କରିବା ନିମିତ୍ତ ପୂର୍ଣ୍ଣଚନ୍ଦ୍ର ନିଜର କିରଣରାଶିଦ୍ୱାରା ଆକାଶର ଲାଲିମା ସାହାଯ୍ୟରେ ତାହାର (ପୂର୍ବ ଦିଗର) ମୁଖକୁ ରଞ୍ଜିତ କରି ଦେଲେ । ସିଧା କଥାରେ କହିବାକୁ ଗଲେ ପୂର୍ବଦିଗର ଲାଲିମାକୁ ଚିରି ଚନ୍ଦ୍ର ଉଇଁ ଉଠିଲେ । ଆଜି ସେ ଖିଲି ଖିଲି ହୋଇ ହସି ଉଠୁଥିଲେ । ସମସ୍ତ ପ୍ରାଣୀଙ୍କୁ ସେ ସୁଖକର ପ୍ରତୀତ ହେଉଥିଲେ । ଆଜି ସେ ସମସ୍ତଙ୍କୁ ଖୁବ୍ ଭଲ ଲାଗୁଥିଲେ ।"

ଶୌନକ ପଚାରିଲେ—"ସୂତ ମହାଶୟ ! ଚନ୍ଦ୍ର କାହିଁକି ହସି ଉଠୁଥିଲେ ?"

ଏ କଥା ଶୁଣି ସୂତ ପୁଣି ହସି ହସି କହିଲେ—"ମହାରାଜ ! ସେ କାହିଁକି ହସୁଥିଲେ ଏ କଥା ଚନ୍ଦ୍ରଙ୍କୁ ହିଁ ଜଣା । ଆମେ କେବଳ ଯାହା ଅନୁମାନ କରି ପାରିବା । ଚନ୍ଦ୍ର ହୁଏତ ଭାବୁଥିବେ, 'ଏହି ଗୋପୀମାନେ ତ ମତେ ସବୁବେଳେ ଗାଳିମନ୍ଦ କରୁଥାନ୍ତି । ଆଜି ନିଜ ଚିତ୍ତଚୋରଙ୍କୁ ପାଇ, ଏମାନେ ନିଶ୍ଚିତ ଭାବରେ ମତେ ଆଶୀର୍ବାଦ ଦେବେ ।'

ଏହି ପ୍ରସନ୍ନତାରେ ସେ ହସି ଉଠୁଥିବେ । ଅଥବା ଆଜ ସାରା ପ୍ରକୃତିକୁ ବେଶ ଭୂଷାରେ ସଜ୍ଜିତା ଏକ ନବବଧୂ ଭଳି ଲାଜରେ ଓଢ଼ଣା ଟାଣିଥିବାର ଦେଖି ତାହାର ଶୋଭାରେ ସେ ବିମୁଗ୍ଧ ହୋଇ ଉଠୁଥିବେ । ଅଥବା କୁମୁଦିନୀମାନଙ୍କୁ ହସି ଉଠୁଥିବାର ଦେଖି ସେ ହସି ଉଠୁଥିବେ । ଅଥବା ଆଜ ଯୋଗେଶ୍ୱରଙ୍କର ପରମ ରହସ୍ୟମୟ ଲୀଳା ଦେଖିବାର ସୌଭାଗ୍ୟ ତାଙ୍କୁ ମିଳିବ । ସେହି ଲୀଳାରେ ସେ ଆଲୋକ ଦେଖାଇବେ । ତାଙ୍କଠାରେ ମଶାଲ ଦେଖାଇବାର ଦାୟିତ୍ୱ ଅଛି, ଏହି ପ୍ରସନ୍ନତାରେ ସେ ହୁଏତ ହସୁଥିବେ । ଅଥବା ଶ୍ରୀକୃଷ୍ଣଙ୍କର ଆଜ ଅଦ୍ଭୁତ ଜଗନ୍ମୋହନ ଶୃଙ୍ଗାରକୁ ଦେଖି ସେ ହସି ଉଠୁଥିବେ । ଯାହା ବା କିଛି ହେଉ, ତାଙ୍କର ଏହି ହାସ୍ୟ ଥିଲା ଆନ୍ତରିକ ପ୍ରସନ୍ନତାର ପ୍ରକାଶକ ।"

ସୂତ କହୁଥାନ୍ତି—"ହେ ମୁନିମାନେ ! ଶରତ ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ନିଜର ସକଳ କଳାରାଶି ସହିତ କୁମୁଦିନୀମାନଙ୍କୁ ବିକଶିତ କରି ଦେଉଥିଲେ । ନିଶା-ରାଣୀଙ୍କୁ ଦୁଇ କାଖରେ କୁତୁ କୁତୁ କରି ଦେଇ ସେ ତାଙ୍କୁ ହସାଉଥିଲେ । ନିଜର ଶାନ୍ତ କିରଣ ରାଶିଦ୍ୱାରା ସେ ସମସ୍ତଙ୍କୁ ସୁଖୀ କରାଇ ଦେଉଥିଲେ । ଯେତେବେଳେ ଏହିଭଳି କରି ସେ ଶରତ୍ କାଳର ନିର୍ମଳ ଆକାଶରେ ଉର୍ଦ୍ଧ୍ୱ ଉଠିଲେ, ସେତେବେଳେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସାଥିରେ ରମଣ କରିବାର ଇଚ୍ଛା କଲେ ।"

## ଛପ୍ପୟ

ନଭକୁଁ ଝାର ବୁହାର ରଁଗେଶ୍ୟା ନୀଳମଟୈ ମାନୋଂ ।
ମୋତୀ ଦୟେ ବଖେର ଖିଲେ ତାରାଗନ ଜାନୋଂ ॥
ଶ୍ରୀ ମୁଖମଣ୍ଡଳ ସରସ ସୁଖଦ ଶୋଭାଯୁତ ନିଶିପତି ।
ରଶ୍ମାଞ୍ଜଳତୈଂ ଛଲକତି କରତ ଜଗକୁଁ ପ୍ରମୁଦିତ ଅତି ॥
ପ୍ରାଚୀ ଦିଶି କୁଙ୍କୁମ ରଁଗୀ, ବର ଉଡୁଗନପତି ଶୁଭ୍ର ଅତି ।
ମନହୁଁ ପ୍ରିୟା ପରଧାନ ମୁଖ, ଝାଁପି ହସତ ପ୍ରିୟ ପ୍ରାନପତି ॥



# ଆହ୍ୱାନ

ଦୃଷ୍ଟ୍ୱା କୁମୁଦ୍ୱନ୍ତ ମଖଣ୍ଡମଣ୍ଡଳମ୍ ।
ରମାନନାଭଂ ନବକୁଙ୍କୁମାରୁଣମ୍ ॥
ବନଂ ଚ ତତ୍କୋମଳଗୋଽଭିରଞ୍ଜିତମ୍ ।
ଜଗୌ କଳଂ ବାମଦୃଶାଂ ମନୋହରମ୍ ॥

(ଶ୍ରୀ ଭା ୧୦ ସ୍କ, ୨୯ ଅ ୩ ଶ୍ଳୋକ)

## ଛପ୍ପୟ

ହୃଦୟ ଭରତ ଅନୁରାଗ ଚଲତ ଶଶି ସବନ୍ ହେରତ ।
ମନହୁଁ ହରନ କର କମଲ ରାଗ ଚହୁଁ ଓର ବଖେରତ ॥
ଫେଙ୍କୀ କୋମଲ କିରନ ଭୟୋ ବୃନ୍ଦାବନ ରଞ୍ଜିତ ।
ଜପାକୁସୁମହୁଁ ପାଇ ଫଟିକମନ ଜନୁ ଅତି ହରଷତ ॥
ବୃନ୍ଦାବନ ଅତି ମନହରନ, ଅଚ୍ୟୁ ଗୋପୀଜନରମନ ।
ନଟନାଗର ସଜି ବଜି ମୁରତ, ରାସ କରନ ଯମୁନାପୁଲିନ ॥

ଯେମିତ ତିଲର ଅଣୁ ଅଣୁରେ ତେଲ ବ୍ୟାପ୍ତ ଥାଏ, ଯେମିତ ଦୁଧରେ ଘିଅ, ଫୁଲରେ ଗନ୍ଧ ଓ ଇନ୍ଧନରେ ଅଗ୍ନି ସର୍ବଦା ବ୍ୟାପ୍ତ ଥାଏ, ଠିକ୍ ସେମିତ ବିଶ୍ୱବ୍ରହ୍ମାଣ୍ଡରେ ମୋହନଙ୍କ ମୁରଲୀର ମଧୁର ସ୍ୱର ବ୍ୟାପ୍ତ ରହିଥାଏ । ଯେମିତ ଏହିସବୁ ଜିନିଷକୁ ମନିଷ ଯୁକ୍ତିଦ୍ୱାରା, ଶ୍ରମଦ୍ୱାରା ପାଇଥାଏ, ଠିକ୍ ସେମିତ ବନମାଳୀଙ୍କ ବଂଶୀର ମଧୁର ଧ୍ୱନିକୁ ପ୍ରେମୋତ୍କଣ୍ଠା ଓ ପ୍ରତୀକ୍ଷାଦ୍ୱାରା ଶୁଣା ଯାଇଥାଏ । ସ୍ୱାତିର ଜଳ ସର୍ବତ୍ର ବରଷିଥାଏ ; କିନ୍ତୁ ତାହା ଚାତକକୁ ସବୁଠାରୁ ବଳି ଅଧିକ ସୁଖଦ ହୋଇଥାଏ । ମୋହନଙ୍କ ମୁରଲୀ ଅବାରିତ ସ୍ୱରରେ ବାଜୁଥାଏ ; କିନ୍ତୁ ତାହାକୁ କେବଳ ଗୋପୀମାନେ ହିଁ ଶୁଣିଥାନ୍ତି । ଅନ୍ୟାନ୍ୟ ଲୋକେ ନାନା ପ୍ରକାର ବ୍ୟବସାୟରେ ବୁଡ଼ି ରହିଥାନ୍ତି ; ତେଣୁ ସେମାନେ ଏହାକୁ ଶୁଣି ପାରନ୍ତି ନାହିଁ । କେହି କେହି ଶୁଣି ମଧ୍ୟ ନ ଶୁଣିଲା ଭଳି ହୋଇଥାନ୍ତି । କିନ୍ତୁ ଅନୁରାଗବତୀ ଗୋପୀମାନଙ୍କୁ ଏହି ଧ୍ୱନି ପାଗଳିନୀ କରିଦିଏ । ବଂଶୀ ତ ହୋଇଗଲା

ନିତ ନିତ ବାଜୁଥାଏ, କିନ୍ତୁ ପ୍ରତୀକ୍ଷା ପରେ, ଉତ୍କଣ୍ଠା ଉତ୍ତୀର୍ଣ୍ଣ ନିର୍ଣ୍ଣିତ ସମୟରେ ଯେଉଁ ବଂଶୀ ବାଜେ ତାହା ଉନ୍ମାଦକାରୀ ହୋଇ ଉଠିଥାଏ । ଆଖି କାନ ବନ୍ଦ କରି ଯେଉଁମାନେ ଚିରକାଳ ଲାଗି ଅବିରତ ଶବ୍ଦ ଶ୍ରବଣ କରିବାର ଅଭ୍ୟାସ କରିଥାନ୍ତି, ସେହି ଶବ୍ଦବ୍ରହ୍ମଙ୍କ ଉପାସକମାନଙ୍କୁ ମୁରଲୀର ମଧୁର ଧ୍ୱନି ଅବଶ୍ୟ ଶୁଣା ଯାଇଥାଏ । ବାସ୍ତବିକ, ତାହା ସେମାନଙ୍କୁ ସ୍ପଷ୍ଟ ଶୁଣା ଯାଇଥାଏ । ସେମାନଙ୍କୁ ଖାଲି ମୁରଲୀ ତ ନୁହେଁ, ରାସର ସକଳ ବାଦ୍ୟ ଶୁଣା ଯାଇଥାଏ ।

ସୂତ କହୁଥାନ୍ତି—"ହେ ମୁନିମାନେ ! ଯେଉଁ ରାତିଗୁଡ଼ିକର ପ୍ରତୀକ୍ଷାରେ ଗୋପୀମାନେ ବ୍ୟଗ୍ର ଥିଲେ, ଶ୍ରୀକୃଷ୍ଣ ବି ଛଟପଟ ହେଉଥିଲେ, ବ୍ୟାକୁଳ ହୋଇ ଉଠୁଥିଲେ; ଦିନ ଗଣି ବସୁଥିଲେ, ଶରତର ସେହି ସୁନ୍ଦର ରାତିଗୁଡ଼ିକ ଏବେ ଆସିଗଲା ।"

"ଶରତର ଚନ୍ଦ୍ରଙ୍କ ନବକୁଙ୍କୁମ ଭଳି ଅଖଣ୍ଡ ମଣ୍ଡଳାକାର ଦେଖି ଏବଂ ତାଙ୍କର ଅମୃତମୟ କୋମଳ କିରଣରାଶିଦ୍ୱାରା ବୃନ୍ଦାବନର ବୃକ୍ଷଲତା ପତ୍ର, କୁଞ୍ଜ ଓ ନିକୁଞ୍ଜ ଆଦି ରଞ୍ଜିତ ହୋଇ ଉଠିଥିବାର ଦେଖି ନନ୍ଦ-ନନ୍ଦନଙ୍କର ହୃଦୟ ଅଧୀର ଆବେଗରେ ଉଚ୍ଛ୍ୱଳ ଉଠିବାକୁ ଲାଗିଲା । ପୂର୍ବ ଦିଗର ନୀଳିମାରୁ ପତଳା ଅଞ୍ଚଳଟିକୁ ଚନ୍ଦ୍ର ଟାଣି ଆଣୁଥିଲେ । ତାହା ଦେଖି ଶ୍ୟାମସୁନ୍ଦରଙ୍କ ହୃଦୟରେ ନିଜ ପ୍ରିୟତମା କମଳାଙ୍କ ମୁଖର ସ୍ମୃତି ଜାଗ୍ରତ ହୋଇଉଠିଲା । ସେହି ସ୍ମୃତି ଅନନ୍ତମୁଖ ଚନ୍ଦ୍ରଙ୍କ ଚଳନ୍ତନ ଆଗରେ ଉପସ୍ଥିତ ହେବା ଫଳରେ ବ୍ରଜବଲ୍ଲଭ ଅଧୀର ହୋଇ ଉଠିଲେ । ସେ ରାସର ଯୋଗ୍ୟ ବେଶ ଧରିଲେ । ପାଞ୍ଚ ରଙ୍ଗର ଜାମା ପିନ୍ଧି ତାହା ଉପରେ ସେ ଧଳା ରଙ୍ଗର ଫିତା ବାନ୍ଧିଲେ । ଗୋଟିଏ ପିତାମ୍ବର ସେ କଣ୍ଠରେ ଝୁଲାଇଲେ । ପଗଡ଼ିରେ ସେ ମୟୂର ପୁଚ୍ଛର ମୁକୁଟ ପିନ୍ଧିଲେ, ତାହା ଉପରେ ଝଟକ ଉଠୁଥିବା ଛୋଟ କନା ବାନ୍ଧିଲେ । ଏହିପରି ଭାବରେ ସଜବାଜ ହୋଇ ହାତରେ ବଂଶୀ ଧରି ସେ ସଙ୍କେତ-ସ୍ଥାନ ଦିଗରେ ଅଗେଇ ଚାଲିଲେ । ପ୍ରକୃତି ଦେବୀ ସମ୍ପୂର୍ଣ୍ଣ ଶୃଙ୍ଗାର ରଚନା କରିଥିଲା । ଅଭିସାରିକାଟିଏ ଭଳି ସଜବାଜ ହୋଇ ସେ ପ୍ରିୟତମଙ୍କ ପ୍ରତୀକ୍ଷାରେ ରହିଥିଲା । ବୃନ୍ଦାବନର ବନଶ୍ରୀ ମଧ୍ୟ ଅତି ପ୍ରସନ୍ନତାରେ ଫୁଲି ଉଠୁଥିଲା । ତାହାର ଦେହ ବି ରୋମାଞ୍ଚିତ ହୋଇ ଉଠୁଥିଲା । ବୃନ୍ଦାବନର ଗଛ-ଗହ୍ୱଳରେ ନିବାସ କରୁଥିବା ପଶୁ-ପକ୍ଷୀମାନେ ଆଜି ଶୋଇ ନ ଥିଲେ, କିନ୍ତୁ ସେମାନେ କଳରବ କରିବା ବନ୍ଦ କରି ଦେଇଥିଲେ । ବନ୍ୟ ପଶୁମାନେ ବି ନିଜ ନିଜର ଗାତଟିମାନଙ୍କରେ ନୀରବରେ ବସି ରହିଥିଲେ । ଆଜି ସମସ୍ତେ ଶାନ୍ତ ଚିତ୍ତରେ ହସି ଉଠୁଥିଲେ । ଭୂମି ଦେବୀ ନିଜର ବିସ୍ତୃତତାକୁ ଗୁଡ଼ି ଦେଇଥିଲେ । ପ୍ରକୃତି ଦେବୀ ସବୁଜ ରଙ୍ଗର ସୁନ୍ଦର ଘାସର ଗାଲିଚା ବିଛାଇ ଦେଇଥିଲେ । ଆକାଶ ରାସ-ସ୍ଥଳୀ ଉପରେ ନୀଳ ରଙ୍ଗର ଚାନ୍ଦୁଆଟିଏ ଟାଣି ଦେଲେ । ଚନ୍ଦ୍ର ହାତରେ ଆଲୁଅ ଧରି ଠିଆ ହୋଇଗଲେ । ପବନ ଦେବତା ଚଅଁର ଧରି ଠିଆ ହୋଇଗଲେ । ଲୀଳାର ସକଳ ସମ୍ଭାର ଯଥାଯଥ

ସ୍ଥାବରେ ଉପସ୍ଥିତ ହୋଇସିବା ଉତ୍ତାରୁ ପ୍ରଥମେ ଶ୍ୟାମସୁନ୍ଦର ଏକାକୀ ସେଠାରେ ପ୍ରବେଶ କଲେ ।

ତାହା ଥିଲା ଏତେ ବଡ଼ ବିସ୍ତୃତ ରଙ୍ଗ ଭୂମି । ସେଥିରେ ଠନ୍ ଠନ୍ ମଦନ-ଗୋପାଳ ଏକୁଟିଆ ଥାଇ ଜମା ଶୋଭା ପାଉ ନଥିଲେ । ଏକାକୀ କେବଳ ଅଦ୍ୱୈତ ଥାଇ ସେଠାରେ ବସି ବସି ସେ ବା କ'ଣ କରନ୍ତେ ? ତାଙ୍କର ବଂଶୀଟି ନାଦ-ବ୍ରହ୍ମର ପ୍ରକାଶ କରୁଥାଏ । ତାହା ରସର ବର୍ଷା କରୁଥାଏ । ତେଣୁ ନିଜ ବଂଶୀଟିର କଥା ତାଙ୍କର ସ୍ମରଣ ହେଲା, ସ୍ମରଣ ଆସିବା ମାତ୍ରେ ହିଁ ସେ ତାହାକୁ ଆଦର କଲେ । ନାଭି-କମଳ ପାଖରେ ଯାହା ଅଣ୍ଟାରେ ଖୋସା ହୋଇଥିଲା ତାହାକୁ ସେ ହୃଦୟ, କଣ୍ଠ ଓ ଓଠରେ ନେଇ ଲଗାଇଲେ । କରକମଳର କୋଷ ଉପରେ ତାହାକୁ ସେ ଶୁଆଇ ଦେଲେ । ତାଙ୍କର ଅଧର ଥିଲା ଅତ୍ୟନ୍ତ କୋମଳ, ରସାଳ ଓ ଲାଲ ଟହ ଟହ । ତାହାକୁ ତକିଆ କରାଇ ତାହା ଉପରେ ସେ ବଂଶୀଟିକୁ ଶୁଆଇ ଦେଲେ । ପୁଣି ଶ୍ୟାମସୁନ୍ଦର ନିଜର ଦିବ୍ୟ ମୁଖ କମଳର ଗନ୍ଧଯୁକ୍ତ ଫୁଙ୍କ ତାହାର ମୁହଁରେ ଭରିବାକୁ ଲାଗିଲେ । ଜଣାଗଲା, ସତେ ଅବା ସେ ତାହାକୁ ପ୍ରଣୟର ପାଠ ପଢ଼ାଉଛନ୍ତି । ସେ ନିଜେ ଯେଉଁ କାମଟି କରିବାକୁ ଥିଲେ ଅସମର୍ଥ, ତାହାକୁ ସେ ବଂଶୀଦ୍ୱାରା କରାଇବାକୁ ଲାଗିଲେ । ଯିଏ କାହାଦ୍ୱାରା କୌଣସି କାମ କରାଇବାର ଥାଏ, ତା'ହେଲେ ତା'କୁ ଅତ୍ୟଧିକ ଆଦର କରାଯାଇଥାଏ । ତା'ପ୍ରତି ଆବଶ୍ୟକତାଠାରୁ ଅଧିକ ଆତ୍ମୀୟତା ବଢ଼ି ଉଠିଥାଏ । ସେଥିପାଇଁ ଶ୍ୟାମସୁନ୍ଦର ଶୁଖିଲା ପୋଲା ବାଉଁଶରେ ତିଆରି ବଂଶୀଟିକୁ ଏତେ ଅଧିକ ସ୍ୱାଗତ-ସତ୍କାର କରିବାକୁ ଲାଗିଲେ ।''

ସୂତ କହୁଥାନ୍ତି—''ହେ ମୁନିମାନେ ? ସେହି ବଂଶୀଟି ଥିଲା କପରି ? ତାହା ଥିଲା ବଂଶଭିତ୍ତି ପେଟରୁଟିଏ ଜଳ । ତାହା ଥିଲା ଉନ୍ମାଦ-ଭାବର ଧାରା ବୁହାଉଥିବା ଗୋଟିଏ ନଦୀ । ତାହା ଥିଲା ଏକ ଅଦ୍ଭୁତ ଦିବ୍ୟ ଔଷଧର ପୁଡ଼ିଆଟିଏ ଭଳି ଯାହାକି ବସ୍ତୁକୁ ନିଜ ଆଡ଼କୁ ଟାଣି ନେଉଥିଲା । ନିଜର ତାନ-ରୂପୀ ସୁଧା-ମାଧୁରୀମା'କୁ ବର୍ଷା କରାଇ ତାହା ସମସ୍ତଙ୍କ ସନ୍ତପ୍ତ ହୃଦୟଗୁଡ଼ିକୁ ଶୀତଳ କରି ଦେଉଥିଲା । ଯୋଗିଜନମାନେ ଧ୍ୟାନ ଧାରଣାରେ ନିମଗ୍ନ ଥାଆନ୍ତି । ସେମାନଙ୍କ ଧ୍ୟାନକୁ ମଧ୍ୟ ବଳପୂର୍ବକ ତାହାର ସ୍ୱର ଲହରୀ ସମ୍ପୂର୍ଣ୍ଣ ଆକର୍ଷିତ କରି ଦେଉଥିଲା । ଶ୍ୟାମସୁନ୍ଦରଙ୍କ ଅଭିଳାଷ ଥିଲା, ସେ ଏକରୁ ଅନେକ ହେବେ । ତାଙ୍କର ଇଚ୍ଛା ଥିଲା, ସେ ରସନାନାସ୍ୱର ମୂଖକୁ ଆସ୍ୱାଦନ କରିବେ । ତାଙ୍କର କାମନା ଥିଲା ସେ କନ୍ଦର୍ପର ଦର୍ପକୁ ଚୂନା କରିଦେବେ । ଏହି ଅଭିଳାଷ, ଏହି ଇଚ୍ଛା, ଏହି କାମନା ନେଇ ସେ ବଂଶୀକୁ ମୁହଁରେ ଲଗାଇ ଫୁଙ୍କିବାକୁ ଲାଗିଲେ । ପ୍ରିୟଜନର ମୁହଁରେ ଫୁଙ୍କିବା ଦ୍ୱାରା ଏକ ଅନିର୍ବାଚନୀୟ ସୁଖ ମିଳିଥାଏ ।''

ଏହା ଉପରେ ଶୌନକ ପ୍ରଶ୍ନ କଲେ—''ସୂତ ମହାଶୟ ! ଭଗବାନ କନ୍ଦର୍ପର ଦର୍ପକୁ ଦଳିବାର କିପରି କାହିଁକି କଲେ ? ଇନ୍ଦ୍ର ତ ସାଂବର୍ତ୍ତିକ ମେଘର ବର୍ଷା କରିବାର

ଆଦେଶ ଦେଇ ଧୃଷ୍ଟତା ଦେଖାଇଥିଲେ । ସେଥିପାଇଁ ଦାମୋଦର ତାଙ୍କ ଦର୍ପକୁ ଚୂର୍ଣ୍ଣ କରି ଦେଇଥିଲେ । କାମଦେବ ଏମିତି କେଉଁ ଧୃଷ୍ଟତା ଦେଖାଇଲା ଯେ ସେଥିପାଇଁ ଭଗବାନ ଏହିସବୁ ଲୀଳା କଲେ ?"

ଏହାର ଉତ୍ତର ଦେଇ ସୂତ କହିଲେ—"ମହାରାଜ ! କଥା ହେଲା ଚିଁତେ ନା ଏହି କାମକୁ ବ୍ରହ୍ମା ଜନ୍ମ ଦେଇଥିଲେ । ଜନ୍ମ ହେବାମାତ୍ରେ ହିଁ ସେ ବ୍ରହ୍ମାଙ୍କୁ ବି ନିଜର ବଶ କରି ନେଲା । ସେ ମଧ୍ୟ ଏହି କାମର ଅଧୀନ ହୋଇଗଲେ । ସ୍ୱାହାସ୍ୱ ଋଷି, ମୁନି, ଦେବତା ଯକ୍ଷ, ଗନ୍ଧର୍ବ, ମନୁଷ୍ୟ, ତଥା ପଶୁ, ପକ୍ଷି, କୀଟ ପତଙ୍ଗ ଆଦି ସମସ୍ତେ କବଳିତ ହୋଇଗଲେ ବଡ଼ ବଡ଼ ବୀତରାଗ ତ୍ୟାଗୀ ତପସ୍ୱୀମାନେ ବି ଏହାକୁ ଅତିକ୍ରମ କରି ପାରିଲେ ନାହିଁ । ସେମାନେ ଅବଶ୍ୟ ଆଉସବୁ ବନ୍ଧନରୁ ମୁକ୍ତ ହୋଇ ବନକୁ ଚାଲିଯାଆନ୍ତି : କିନ୍ତୁ ସ୍ତ୍ରୀ ନିକଟରୁ ସେମାନେ ହାରି ମାନିଯାଆନ୍ତି । ଶଙ୍କରଙ୍କୁ ମଧ୍ୟ ସେ ବଡ଼ ନାଚଟିଏ ନଚାଇଦେଲା । ନାରଦ ବାବା ହେଉଛନ୍ତି ବାଲବ୍ରହ୍ମଚାରୀ । ସେ ବି ସ୍ମର କବଳରେ ପଡ଼ିଗଲେ । ଶିବ ତାଙ୍କ ପୂର୍ବ କ୍ରୋଧର ସହାୟତାରେ ସ୍ମରକୁ ଅବଶ୍ୟ ଭସ୍ମ କରି ଦେଇଥିଲେ : କିନ୍ତୁ ସ୍ମର ସ୍ତ୍ରୀ ଯେତେବେଳେ ଯାଇ ଖୁବ୍ କନ୍ଦାକଟା କଲା, ସେତେବେଳେ ଭୋଳାବାବା ଶିବ ତରଳି ଗଲେ । ସେ ଦୟାରେ ବଶୀଭୂତ ହୋଇଗଲେ । ସେ କହିଲେ, 'ତୁମର ସ୍ୱାମୀ ଅନଙ୍ଗ ହୋଇ ମଧ୍ୟ ସମସ୍ତଙ୍କ ହୃଦୟରେ ବ୍ୟାପ୍ତ ରହିବେ ଏବଂ ସମସ୍ତଙ୍କ ମନକୁ ମନ୍ଥନ କରୁଥିବେ ।' ସେହି ଦିନଠାରୁ ସ୍ମର ନାଁ ହୋଇଗଲା ଅନଙ୍ଗ ଓ ମନ୍ମଥ । ପୂର୍ବେ ସ୍ମର ଦେହ ଥିଲା । ସେ ଆସୁଥିବା ଅବସ୍ଥାରେ ଦେଖା ଯାଉଥିଲା । ଏବେ ସ୍ମର ସ୍ପର୍ଶ ଶରୀର ହୋଇ ଯାଇଛି । ସେ' କେବେ ମନ ଭିତରେ ପଶି ଯାଏ ତାହା ଜମା ଜଣାପଡ଼େ ନାହିଁ । ସେ କଥା ସେତିକବେଳେ ଜଣାପଡ଼େ ଯେତେବେଳେ ମନ କେଉଁଠି ହଜିଗଲାଭଳି ଲାଗେ । ସେ ବଡ଼ ବଡ଼ ଯୋଗୀମାନଙ୍କ ଚଉକୁ ବି ଘିରି ଘିରି କରି ବୁଲାଇ ଦେଲା—ସେମାନଙ୍କୁ ପରାସ୍ତ କରିଦେଲା । 'ନାରାୟଣ' ମୁନିଙ୍କ ବ୍ୟତୀତ ସ୍ମର ସହିତ ଲଢ଼େଇ କରି କେହି ହେଲେ ଆଜି ପର୍ଯ୍ୟନ୍ତ ଜିତି ଯାଇ ନାହିଁ ।

ଏହି କାମଦେବ ଦେଖିଲା ଯେ ଶ୍ରୀକୃଷ୍ଣଙ୍କର ପ୍ରଭାବ ଖୁବ୍ ବେଶି । ସେ ଭାବିଲା, 'ମୁଁ ତ ମୋ' ନିଜ ବାପା ବ୍ରହ୍ମାଙ୍କୁ ବି ବଶୀଭୂତ କରି ଦେଇଛି । ଏହି ବ୍ରହ୍ମା ବି ସୂତ, ମାଗଧବନ୍ଦୀମାନଙ୍କ ଭଳି ଶ୍ରୀକୃଷ୍ଣଙ୍କର ସ୍ତୁତି କରିଥାନ୍ତି । ମତେ ତେଣୁ ଏହି ଶ୍ରୀକୃଷ୍ଣଙ୍କୁ ଜିଣିବାକୁ ପଡ଼ିବ ।' ଏହା ଭାବି ସେ ନିଜର ଧନୁ ଓ ଫୁଲ ବାଣଗୁଡ଼ିକୁ ଧରିଲା ଏବଂ ସଜବାଜ ହୋଇ ଏକାନ୍ତରେ ଶ୍ରୀକୃଷ୍ଣଙ୍କ ପାଖକୁ ଆସିଲା ।

ଭଗବାନ ପଚାରିଲେ—"ତୁ କିଏରେ ?"

ଅନଙ୍ଗ କହିଲା—"ମୋ'ର ନାଁ ହେଉଛି କାମ ।"

ଭଗବାନ୍ କହିଲେ—"କାମ ହେଲେ କ'ଣ ହେଲା ? ତୁ କ'ଣ ମଣିଷ ଉପରେ ଚଢ଼ିଯିବୁ ? ତୁ ଦୂର ହୋଇ ଯା, ମୋ' ଆଗରେ ଠେଙ୍ଗା ଭଳି କାହିଁକି ଠିଆ ହୋଇ ରହିଛୁ ?"

କାମ କହିଲା—"ମହାରାଜ ! ମୁଁ ଆପଣଙ୍କ ସାଥିରେ ଲଢ଼ିବି ।"

ଭଗବାନ୍ କହିଲେ—"ଆରେ, ତୁ ଏବେ ନିଜ କାମ ଦେଖ୍ । ବିନା କାରଣରେ ମୋ' ସାଥିରେ କାହିଁକି ତୁ ଲଢ଼ିବାପାଇଁ ବାହୁଁଛୁ ? ଏତେ ବଡ଼ ସଂସାରଟାଏ ପଡ଼ିଛି । ତୁ ଯାହା ସାଥିରେ ବାହୁଁଛୁ ଯାଇ ଲଢ଼େଇ କର୍ ।"

ସେ କହିଲା—"ମହାରାଜ ! ମୁଁ ସାରା ସଂସାରକୁ ଜିଣିସାରି ସାରିଲିଣି । ଏବେ ଖାଲି ଆପଣ ହିଁ ବାକି ରହି ଯାଇଛନ୍ତି ।"

ଭଗବାନ କହିଲେ—"ଆଚ୍ଛା, ମତେ କହ ତ ତୁ କିପରି ଲଢ଼ିବୁ ?"

କାମ ଉତ୍ତର ଦେଲା—"ମୋର ଜଣେ ମନ୍ତ୍ରୀ ଅଛି । ତା'ର ନାଁ ହେଉଛି ସଂକଳ୍ପ । ମୁଁ ସ୍ତ୍ରୀ-ପୁରୁଷ ଦୁହିଁଙ୍କ ମନରେ ପ୍ରଥମେ ତାକୁ ପ୍ରବେଶ କରାଇ ଦେଇଥାଏ । ମନରେ ସେ ଯେଉଁ ଜାଗାରେ ଯାଇ ପ୍ରବେଶ କରେ, ମୁଁ ସେଠାକୁ ଯାଇ ସ୍ତ୍ରୀ-ପୁରୁଷଙ୍କ ମନକୁ ଦଳାମକ୍ଟି ପକାଏ । ଯଦି ସେହି ସମୟରେ ପୁରୁଷକୁ ସ୍ତ୍ରୀ ମିଳିଯାଏ ଏବଂ ସ୍ତ୍ରୀକୁ ପୁରୁଷ ମିଳିଯାଏ, ତା' ହେଲେ ମୁଁ ପ୍ରକଟିତ ହୋଇ ଦୁହିଁଙ୍କୁ ପରାସ୍ତ କରିଦିଏ । ଏହି ଘାତରେ ମୁଁ ସମସ୍ତଙ୍କୁ ପରାସ୍ତ କରି ଦେଇଛି ।"

"ଭଗବାନ କହିଲେ—"ଆଚ୍ଛା, ଭଲ କଥା । ମୁଁ ତୋ'ର ଯୁଦ୍ଧ-ଡାକରାକୁ ଗ୍ରହଣ କରୁଛି । ଜଣେ ନୁହେଁ, ମୁଁ ହଜାର ହଜାର ସ୍ତ୍ରୀଙ୍କ ସାଥିରେ ରମଣ କରିବି । ତୁ ତୋ'ର ପୁରା ସୈନ୍ୟ-ବାହିନୀ ଧରିକରି ଆସିଯା । ମୁଁ ବି ମୋର ସମସ୍ତ ସେନା ଧରି ଆସିବି । ଆମ ଦୁହିଁଙ୍କ ମଧ୍ୟରେ ଖୋଲା ଖୋଲି ଭାବରେ ବିସ୍ତୃତ ଲଢ଼େଇ ଭୂଇଁରେ ଲଢ଼େଇ ହେବ । ଯଦି ତୁ ମତେ ଜିତିଯିବୁ, ତା'ହେଲେ ମୁଁ ତୋର ଅଧୀନ ହୋଇଯିବି । ଯଦି ମୁଁ ଜିତିଯିବି, ତା'ହେଲେ ତା'ର ସାରା ମୁହଁରେ, ଚୂନକାଳି ଦେଇ ଗୁଡ଼ିବି ।"

"ସେ କହିଲା—"ଅଚ୍ଛା, ହେଲା । ଶରତ ପୂର୍ଣ୍ଣିମା ଦିନ ମୋ'ର ଆପଣଙ୍କ ସାଥିରେ ଲଢ଼େଇ ହେବ । ଆପଣ ବି ଆପଣଙ୍କ ସ୍ତ୍ରୀମାନଙ୍କ ସହିତ ବୃନ୍ଦାବନରେ ଯମୁନା-କୂଳରେ ରହିଥିବେ । ମୁଁ ବି ମଳୟ ପବନ, ବସନ୍ତ, ରତି ତଥା ସଙ୍ଗୀତ ଆଦିଙ୍କୁ ସାଥିରେ ଧରି ହାଜର ହେବି ।" ଏହା କହି କାମଦେବ ଚାଲିଗଲା ।

"ଅଜ ହିଁ ଥିଲା ଶରତ ପୂର୍ଣ୍ଣିମା । ଦୁହିଁକ ଦୁହେଁ ସଜବାଜ ହୋଇ ଲଢ଼େଇପାଇଁ ଅସିଗଲେ । ପ୍ରକୃତ ନିଜେ ରଙ୍ଗସ୍ଥଳୀକୁ ସଜାଇ ରଖିଥିଲା । ଶ୍ୟାମସୁନ୍ଦର ଲଳିତ ତ୍ରିଭଙ୍ଗ

ଠାଣିରେ କଦମ୍ବ ମୂଳରେ ବଂଶୀ ଧରି ଠିଆ ହୋଇଗଲେ ଏବଂ ବଂଶୀ ବଜାଇବାକୁ ଲାଗିଲେ । ସେ ବଂଶୀ ବଜାଇ ବଜାଇ ଗ୍ଲଲିଥିଲେ । ତାଙ୍କର ସେଉଁ ରଙ୍ଗ ଭୁବନକୁ ମୋହି ଦେଉଥିବାର ଫୁଙ୍କ ତାହାକୁ ସେ ବଂଶୀରେ ଭରି ଦେବାକୁ ଲାଗିଲେ । ସେହି ସ୍ୱର ବିଶ୍ୱକୁ ମୋହିତ କରି ଦେଉଥିଲା । ତାହା ବ୍ରଜସୁନ୍ଦରୀମାନଙ୍କର ମନକୁ ହରି ନେଇ ସାରା ବ୍ରଜମଣ୍ଡଳରେ ବିଚ୍ଛୁରିତ ହୋଇଉଠିଲା ଏବଂ ସେହି ଗୋପନାରୀମାନଙ୍କ କର୍ଣ୍ଣକୁହରରେ ପରିବ୍ୟାପ୍ତ ହୋଇଗଲା । ମାଦକ ଜିନିଷ ପିଇଲାବେଳେ କିଛି ଜଣା ପଡ଼େ ନାହିଁ ; କିନ୍ତୁ ତାହାକୁ ପିଇ ସାରିବା ପରେ ତାହାର ପ୍ରଭାବ ଜଣାପଡ଼େ । ଠିକ୍ ସେମିତି ଗୋପୀମାନଙ୍କ ପାଇଁ ସେହି ବିଶ୍ୱମୋହନ ବଂଶୀର ମଧୁର ଗାନ ପ୍ରଥମେ ପ୍ରଥମେ ଖୁବ୍ ସୁଖଦ ବୋଧ ହେଉଥିଲା ; କିନ୍ତୁ କିଛି ସମୟ ପରେ ସେହି ସ୍ୱନକୁ ଶୁଣିବା ମାତ୍ରେ ହିଁ ସେମାନେ ଅସ୍ୱସ୍ତି ହୋଇ ଉଠିଲେ । ସେମାନେ ସେହି ଶବ୍ଦ-ସ୍ରୋତର ପାଖକୁ ଯିବାପାଇଁ ବ୍ୟାକୁଳ ହୋଇ ଉଠିଲେ ।”

ସୂତ କହି ଗ୍ଲଲିଥାନ୍ତି—“ହେ ମୁନିମାନେ ! ଶ୍ୟାମସୁନ୍ଦର ଯେଉଁ ସଂକଳ୍ପ କରି ମୁରଲୀ ବଜାଇଥିଲେ, ଯେଉଁମାନଙ୍କୁ ମୋହିତ କରିବାର ସଂକଳ୍ପ ରଖି ସେ ମୋହନମନ୍ତ୍ର ଫୁଙ୍କୁଥିଲେ, ସେହିସବୁ ବ୍ରଜାଙ୍ଗନା ସେହି ଶବ୍ଦ ଶୁଣି ମୋହିତ ହୋଇ ଉଠିଲେ । ମନ୍ତ୍ର ନିଜର ପ୍ରଭାବକୁ ସଙ୍ଗେ ସଙ୍ଗେ ଦେଖାଇ ଦେଲା ।”

## ଛପ୍ପୟ

ହେଁ ତ୍ରିଭଙ୍ଗ ମନହରନ ପୌଂଟତୈଂ ବେନୁ ନିକାରୀ ।
କର କମଲନତେଂ ପରସି ପ୍ରେମତେଂ ପୌଂଛି ସମ୍ହାରୀ ।।
ପୁନି ଅଧରନପେ ଧରୀ କରୀ କଛୁ ଫରଛୀ ପ୍ୟାରୀ ।
ଦାବେ ଅଁଗୁରିନ ଛିଦ୍ର ଫୁଁକ ମୃଦୁ ମୁଖମହଁ ମାରୀ ।।
ସ୍ୱରଲହରୀ ପ୍ରକଟିତ ଭଈ, ବିଶ୍ୱ ନିଖିଲ ରବ ଭଇ ଗୟୌ ।
ମଧୁର ଗାନ କାନନ ପର୍ୟୌ, ଯୁବତିନ ଚିତ ଚଞ୍ଚଲ ଭୟୌ ।।



# କୃଷ୍ଣଙ୍କ ନିକଟକୁ ଅଭିଗମନ

ନିଶମ୍ୟ ଗୀତଂ ତଦନଙ୍ଗବର୍ଦ୍ଧନମ୍ ।
ବ୍ରଜସ୍ତ୍ରୀୟଃ କୃଷ୍ଣଗୃହୀତମାନସାଃ ॥
ଆଜଗ୍ମୁରନ୍ୟୋନ୍ୟମଲକ୍ଷିତୋଦ୍ୟମାଃ ।
ସ ଯତ୍ର କାନ୍ତୋ ଜବଲୋଲକୁଣ୍ଡଳାଃ ॥

(ଶ୍ରୀଭା: ୧୦ ସ୍କ, ୨୯ ଅ, ୪ ଶ୍ଳୋକ)

## ଛପ୍‌ପୟ

ମନମୋହନମହିଁ ପ୍ରଥମ ତଉ ଅସକ୍ତ ସବନକୋ ।
କରତ ପ୍ରତୀକ୍ଷା ପରୟୋ ଶ୍ରବନ ରବ ବଂଶୀ ଧୁନକୋ ॥
ଜ୍ୟୋଁ ଜଲନଧି ତେଂ ମିଲନ ଜାହିଂ ଦ୍ରୁତଗତିତେଂ ସରିତା ।
ଅବବଜାଇ ସବ ଚଲୀଂ ଶ୍ୟାମ ଢିଁଗ ତେଂୟାଂ ବ୍ରଜବନିତା ॥
ତନ, ମନ, ଘର, ପରିବାରକୀ ସୁରତ ତ୍ୟାଗି ସବ ଚଲ ଦଈଂ ।
କାମ କାଜ ବସରେ ସକଲ ମନ୍ତ୍ର-ମୁଗ୍‌ଧସୀ ବନ ଗଈଂ ॥

ପ୍ରେମରେ ପ୍ରତିଟି ପଦକ୍ଷେପ ଗୋପନ ହୋଇଥାଏ । ପ୍ରେମକୁ ପ୍ରଗୋପନ କରି ରଖିବା ଅସତ୍ୟ ନୁହେଁ । ପ୍ରେମରେ ଲୁଚ-ଗୋପନ କରି ରଖିବା ତ ଏକ ସ୍ୱାଭାବିକ ପ୍ରାଚୀନ ପରିପାଟୀ । ଓଠ ଉପରେ ବସିଥିବା ମଶିଷ ଉପରକୁ ତଳକୁ ଦୋହଲୁଥାଏ ; କିନ୍ତୁ ଓଠ କ୍ଷେତରେ ତାହା ଘଟି ନଥାଏ । ଓଠ ଉପରେ ବସିଥିବା ମଶିଷ ହିଁ ଏପରି ଦୋହଲୁଥାଏ । ଭାବକୁ ଗୋପନ କରିବାଦ୍ୱାରା ପ୍ରେମର ସ୍ୱାଦ ଆହୁରି ବଢ଼ିଥାଏ । କେହି ଯେମିତ ଆମର ଭାବକୁ ଜାଣିବାକୁ ନପାଏ । ପ୍ରେମ ଓ କସ୍ତୁରୀକୁ ଲୁଚାଇ ରଖିଲେ ମଧ୍ୟ ତାହା ଲୁଚି ରହେନାହିଁ । ତଥାପି ଲୋକମାନେ ଖୁବ୍ ଯତ୍ନର ସହିତ ଏହାକୁ ଲୁଚାଇ ରଖିବାପାଇଁ ଚେଷ୍ଟା କରିଥାନ୍ତି । ଏହାଦ୍ୱାରା ତାହାର ମହତ୍ୱ ବଢ଼େ ସିନା ; କିନ୍ତୁ କମେ ନାହିଁ । ଅନ୍ୟ କେହି ଦ୍ୱିତୀୟ ଲୋକ ପଛକେ ନ ବୁଝନ୍ତୁ, ଯେଉଁମାନେ ଗୋଟିଏ ପଥର ପଥିକ ସେମାନେ ସବୁ ବୁଝିଯାଆନ୍ତି ; ତେଣୁ ସେମାନଙ୍କଠାରୁ ବି ପ୍ରେମକୁ ଗୋପନ ରଖିବାକୁ ପଡ଼ିଥାଏ ସର୍ପର ଗତି ଭଳି ଏହି ପ୍ରେମର ଗତି କେତେ ଯେ କୁଟିଳ ସତେ !

ସୂତ କହିଚାଲିଥାନ୍ତି—"ହେ ମୁନିମାନେ ! ଶ୍ରୀକୃଷ୍ଣଙ୍କର ବଂଶୀ ଧ୍ୱନି ଥିଲା ଅତି ମଧୁର । ତାହା ଶୁଣି ବ୍ରଜର ଗୋପୀମାନେ ଡୋରିରେ ବନ୍ଧା ହୋଇଥିବା କପୋତମାନଙ୍କ ଭଳି ଟାଣି ହୋଇ ଭଗବାନଙ୍କ ପାଖକୁ ଚାଲିଗଲେ । ସେମାନେ କାହିଁକି ଚାଲିଗଲେ ? କୃଷ୍ଣ ସେମାନଙ୍କର ସର୍ବସ୍ୱ ହରଣ କରି ନେଇଥିଲେ । ତେଣୁ ସେମାନେ ଏଇଥିପାଇଁ କି ଚାଲିଗଲେ । ଆପଣମାନେ ପଚାରି ପାରନ୍ତି, 'କୃଷ୍ଣ ତ ବନରେ ବସିଥିଲେ । ସେଠାରେ ବସିରହି ସେ କେମିତି ବା ସେମାନଙ୍କର ସର୍ବସ୍ୱ ଅପହରଣ କରିନେଲେ ?' ଆଚ୍ଛା, ମହାରାଜ ! ରାଜା କ'ଣ ଲଢ଼ିବା ପାଇଁ ଯାଇଥାନ୍ତି ? ଲଢ଼ିବା ପାଇଁ ତ ତାଙ୍କ ସୈନ୍ୟମାନେ ଯାଇଥାନ୍ତି । ସୈନ୍ୟମାନେ ଯେଉଁ ଦେଶକୁ ଜିଣି ଯାଆନ୍ତି, ତାହାକୁ ରାଜାଙ୍କ ଦ୍ୱାରା ଜିଣା-ଯାଇଥିବା ଦେଶ ବୋଲି କୁହାଯାଇଥାଏ । ଏହିପରି ଭାବରେ ଚୋର-ଡକାୟତମାନଙ୍କ ସର୍ଦ୍ଦାର ନିଜେ ଅନ୍ୟ ଚୋରମାନଙ୍କୁ ଲୁଟିବା ପାଇଁ ପଠାଇଥାଏ । ଲୁଟି ଡରି ସେମାନେ ସବୁ ଧନରତ୍ନ ଆଣି ନିଜ ସର୍ଦ୍ଦାରକୁ ଦେଇଥାନ୍ତି । ଏହିପରି ଭାବରେ ଶ୍ରୀକୃଷ୍ଣ ଥିଲେ ଜଣେ ବଡ଼ ଚୋର—ଚୋରମାନଙ୍କର ଶିରୋମଣି । ସେ ଚୋରୀରେ ଚତୁର ବଂଶୀର ଧ୍ୱନିକୁ ବ୍ରଜାଙ୍ଗନାମାନଙ୍କ ପାଖକୁ ପଠାଇଥିଲେ । ସଂଯୋଗର ବିଷୟ ହେଉଛି ଏହି ଯେ ସେତେ-ବେଳେ ଗୋପୀମାନଙ୍କର କର୍ଣ୍ଣ-କପାଟ ଖୋଲିଥିଲା । ସେମାନେ ସେ ପର୍ଯ୍ୟନ୍ତ ଶୋଇ ନ ଥିଲେ । ଅତି ଗୋପନ ଭାବରେ ବଂଶୀ-ଧ୍ୱନି ସେମାନଙ୍କ କର୍ଣ୍ଣ-ଦ୍ୱାର ଦେଇ ମନ-ମନ୍ଦିର ମଧ୍ୟରେ ଯାଇ ପ୍ରବେଶ କଲା । ସେଠି ଥିଲା ଗୁପ୍ତ ପେଟରାଟିଏ । ତାହା ଭିତରେ ଧୃତି, ସ୍ମୃତି, ବିବେକ, ଲୋକ-ଲଜ୍ଜା, ଗତି ଓ ମତି, ଏହି ବହୁ ମୂଲ୍ୟ ରତ୍ନଗୁଡ଼ିକ ସାଇତା ହୋଇ ରଖା ଯାଇଥିଲା । ସବା ଆଗ ତାହା (ବଂଶୀ-ଧ୍ୱନି) ସେହି ରତ୍ନଗୁଡ଼ିକୁ ସେମାନଙ୍କ ମନ-ମନ୍ଦିରରୁ ଅପହରଣ କରିନେଲା ଏବଂ ସେଗୁଡ଼ିକୁ ଧରି ପଳାଇ ଯାଇ ଶ୍ରୀକୃଷ୍ଣଙ୍କ ପାଖରେ ଦାଖଲ କରିଦେଲା । ଆପଣମାନେ ପଚାରି ପାରନ୍ତି, 'ଘରେ ତ ଧନ ଥିଲା । ସ୍ତ୍ରୀମାନଙ୍କର ଖୁବ୍ ଦାମିକା ଅଳଙ୍କାରପତ୍ର ବି ଥିଲା । ଏହିସବୁ ଜିନିଷକୁ ବେଣୁନାଦ କାହିଁକି ବା ଚୋରାଇ ନ ନେଲା ?' ଯଦି ଚୋରମାନଙ୍କୁ ଅତି ଦାମିକା ଜିନିଷଗୁଡ଼ିଏ ମିଳିଯାଏ, ତେବେ ସେ ଅଳ୍ପ ଦାମିକା ଜିନିଷଗୁଡ଼ିକ ଉପରେ କମା ହାତ ଲଗାଏ ନାହିଁ । ତା'କୁ ଯେତେ-ବେଳେ ସୁବର୍ଣ୍ଣରତ୍ନ ମିଳିଗଲା, ସେତେବେଳେ ସେ ଘାସ-କୁଟାକୁ ବାନ୍ଧି କରି ବୁଥାରେ କାହିଁକି ବା ନିଜ ବୋଝକୁ ଭାରି କରାଇଥାନ୍ତା ? ତା'କୁ ଯେତେବେଳେ ମନ-ମନ୍ଦିରରେ ଲୁଚାଇ ରଖା ଯାଇଥିବା ରତ୍ନଗୁଡ଼ିକ ମିଳିଗଲା, ସେତେବେଳେ ସୁନା-ରୂପାର ଅଳଙ୍କାର-ଗୁଡ଼ିକର ମୂଲ୍ୟ ତା' ପାଖରେ ବା କ'ଣ ? ଏହି କଥା ଭାବି ସେ ସେଗୁଡ଼ିକରେ ହାତ ଲଗାଇ ନ ଥିଲା ।"

"ଗୋପୀମାନେ ଶୋଇ ନ ଥିଲେ । ସିନ୍ଧି କରି ତ କେହି ଚୋରି କରୁ ନ ଥିଲା । ସେ'ତ ଡାକୁଥିଲା । ଆଖି ଆଗରେ ସର୍ବସ୍ୱ ଲୁଟି କରି ନେଇ ଚୋର ପଳାଇ ଯାଇଥିଲା ।

ସ୍ୱେର ବ ଉଣ-ନୋତ୍ତଏ ଙ୍ଖ୍ୟାର ନ ଥିଲେ । ସ୍ୱେର ଥିଲ କାଣ ଏକୁଟିଆ । ସେମାନଙ୍କର ସାହସ ବଢ଼ିଗଲ । ସେମାନେ ସ୍ୱେରର ପିଛୁ କଲେ । ସେମାନେ ଜାଣିଥିଲେ ଯେ ଯାକୁ ପଠାଇଥିବା ବଡ଼ ସ୍ୱେର ଜଣକ ଏକୁଟିଆ ବସି ରହୁଛ । ସେମାନେ ଭାବୁଥିଲେ, 'ଏହ ସ୍ୱେର ଆମର ସଙ୍ଗ ଅପହରଣ କରନେଇ ତା'ଙ୍କୁ ହିଁ ଦେବ । ଆମେ ତାଙ୍କୁ ପ୍ରାର୍ଥନା କର କହବା । ଯଦ ସମ୍ଭବ ହୁଏ, ସେ ଆମର ଉତୁଗୁଡ଼ିକ ଫେରାଇ ଦେବ ।' ଏହସବୁ କଥା ଭାବ ଭାବ ସେହ ସ୍ୱେରର ପଦାଙ୍କ ଅନୁସରଣ କର କର ସେମାନେ ସେହ ଦଗକୁ ଚୁଲିଲେ । ଯିବାବେଳେ ବ୍ୟଗ୍ରତା ହେତୁ ସେମାନଙ୍କ କାନର କୁଣ୍ଡଳଗୁଡ଼ିକ ହଲି ଉଠୁଥିଲ । ସେମାନେ ପରସ୍ପରକୁ କଛ ବ କହ ପାରଲେ ନାହିଁ । ଯେ ଯେଉଁଠି ଯେଉଁ ଅବସ୍ଥାରେ ବସିଥିଲ, ସେ ସେଠାରୁ ସେହ ଅବସ୍ଥାରୁ ଉଠି ଚୁଲି ଆସିଲ । ବ୍ୟଗ୍ରତାରେ ଯିବାର ଭାବ ଠିକ୍ ଏହ ସି ହିଁ ହୋଇଥାଏ ।"

କେତେକ ଲୋକ କହନ୍ତି ଯେ ଏଠାରେ ସ୍ୱେରର କଥା କଛ ନଥିଲ । ବଂଶୀ ପ୍ରଳୟ-ରଚନା କରବାର ଉପ୍ତର କରନେଲ । କଥାରେ ଅଛ, ଯେ ନଜ ବଂଶର ଲୁହେଁ, ସେ କାହାର ବ ଲୁହେଁ । ବଂଶୀର ଜନ୍ମ ଯେଉଁ ବାଉଁଶରୁ ସେହ ବାଉଁଶଗୁଡ଼ିକ ପରସ୍ପର ସହତ ଘଷି ହୋଇ ନଜ ବଂଶକୁ ବ ଜଳାଇ ପାଉଁଶ କର ଦେଇଥାଆନ୍ତି । ବଂଶ-ପରମ୍ପରା ଅନୁସାରେ କଛ ଗୁଣ ତ ବଂଶୀଠାରେ ଆସି ଯିବାର କଥା । ସେଥିପାଇଁ ଶ୍ୟାମଙ୍କ ମୁହଁର ପବନ ଦ୍ୱାରା ପ୍ରଜ୍ୱଳିତ ହୋଇ ସେହ ଅଗ୍ନି ଗୋପୀମାନଙ୍କ କାନ ମଧ ଦେଇ ସେମାନଙ୍କ ହୃଦୟରେ ପ୍ରବେଶ କଲ । ପବନଦ୍ୱାରା ତ ଅଗ୍ନିର ସୃଷ୍ଟି ହୋଇଥାଏ । ସେହ ଅଗ୍ନି ଗୋପୀମାନଙ୍କ ହୃଦୟଗୁଡ଼ିକୁ ଦଗ୍ଧ କର ଦେବାକୁ ଆରମ୍ଭ କଲ । ସେମାନେ ବ୍ୟାକୁଳ ହୋଇ ଉଠିଲେ । ଜଳନ୍ତା ନିଆଁକୁ ଘନ ବା ମେଘ ଶାନ୍ତ କର ଦେଇଥାଏ । ସେଥିପାଇଁ ଶାନ୍ତିର ଅଭିଳାଷରେ ସେମାନେ ଘନଶ୍ୟାମଙ୍କ ପାଖକୁ ଧାଇଁଗଲେ ।"

କେହ କେହ କହନ୍ତି, ଏହ କାମଦେବ ହେଉଛ ବଡ଼ ଦୁଷ୍ଟ । ଏହାର ଦୁଷ୍ଟତା ହେତୁ କୈଳାସବାସୀ ଜଟାଧାରୀ ଶିବ ରାଗିଯାଇ ଏହାକୁ ଜାଳି ଦେଇଥିଲେ । ଉଚ ସ୍ତ୍ରୀର ଚେଷ୍ଟାରେ ହିଁ ଏହ ପାପୀ ପୁଣି ଜୀବନ ପାଇ ଉଠିଲ । ଶିବଙ୍କର ଅବଶ୍ୟ ସ୍ୱେ କଛ କ୍ଷତ କରପାର ନଥିଲ ; କନ୍ତୁ ଯେଉଁ ଜୀବଜନ୍ତୁ ପଶୁମାନଙ୍କର ସେ ହେଉଛନ୍ତି ସ୍ୱାମୀ ହେତୁ, ପଶୁପତଙ୍କର ଅମେସବୁ ପୁରୁଷ-ସ୍ତ୍ରୀ ହେଉଛୁ ପ୍ରଜା । ସେମାନଙ୍କ ହୃଦୟରେ ପଶି ସ୍ୱେ ସେମାନଙ୍କୁ ଜାଳଦେବା ପାଇଁ ଠିକଣା କଲ । ଏହ କାମଦେବର ଶରୀର ନାହିଁ; ସେ ଅନଙ୍ଗ । ବଂଶୀର ଯେଉଁ ସ୍ୱର ତାହାର ମଧ ଶରୀର ନାହିଁ । ଦୁହିଁଙ୍କ ମଧ୍ୟରେ ବେଶ୍ ମିଳତା ହୋଇଗଲ । ଏହ କାମ ବ୍ରଜ ଯୁବତୀମାନଙ୍କ ହୃଦୟରେ ଛପି ଛପି ପ୍ରବେଶ କଲ । ଠିକ୍ ଯେମିତ ମାଂସତଳେ ବଥ ଲୁଚି ରହୁଥାଏ, ସେ ସେମିତ ଛପି କର ରହଥିଲ । ତାହା ଯେତେବେଳେ ବାହାରକୁ ଫୁଟିକରି ଆସିଯାଏ, ସେତେବେଳେ ତାହା ଅସହ୍ୟ ପୀଡ଼ା

ଦେଇଥାଏ । ଗୁପ୍ତ ଅଗ୍ନି-ସ୍ଫୁଲିଙ୍ଗ ଭଳି ଯେତେବେଳେ ଅନଙ୍ଗ ହୃଦୟରେ ଛପି ରହିଥିଲା, ସେତେବେଳେ ବେଣୁନାଦରୂପୀ ପବନ ଆସି ତାହାକୁ ପ୍ରଦୀପ୍ତ କରିଦେଲା । ଗୋପୀମାନଙ୍କର ହୃଦୟ ଜଳିବାକୁ ଲାଗିଲା । ସ୍ତ୍ରୀମାନଙ୍କ ହୃଦୟରେ କାମାଗ୍ନି ଯଦି ଜଳିଉଠେ, ତେବେ ତାହାକୁ ଶାନ୍ତ କରିବାପାଇଁ ଏକମାତ୍ର ପୁରୁଷ ହିଁ ସମର୍ଥ ହୋଇଥାଏ । ଏକମାତ୍ର ଶ୍ରୀକୃଷ୍ଣ ହେଉଛନ୍ତି ପୁରୁଷ । ଯେତେ ଯେତେ ଜୀବମାନେ ଅଛନ୍ତି, ସେମାନେ ପ୍ରକୃତି ହୋଇଥିବା ହେତୁ ହେଉଛନ୍ତି ସ୍ତ୍ରୀ । ସେଥିପାଇଁ ଜୀବମାନଙ୍କ ଅନ୍ତରର ବେଗକୁ ଶ୍ରୀକୃଷ୍ଣ ହିଁ ଶାନ୍ତ କରିବାପାଇଁ ସମର୍ଥ । ସେ ମନ୍ମଥର ମନକୁ ବି ମନ୍ଥନ କରି ଦେବାରେ ସମର୍ଥ । ସେ କୋଟି କନ୍ଦର୍ପଙ୍କ ଦର୍ପକୁ ଦଳି ଦେଇପାରନ୍ତି । ଏହି ଆଶାରେ କାମାଗ୍ନିରେ ବ୍ୟାକୁଳ ହୋଇ ଗୋପୀମାନେ ଶ୍ରୀକୃଷ୍ଣଙ୍କ ପାଖକୁ ଧାଇଁଗଲେ । ସେମାନେ ପରସ୍ପରକୁ ନିଜ ନିଜ ମନର ଅଭିପ୍ରାୟ କହିଲେ ନାହିଁ । ଆପଣମାନେ ହୁଏତ ପଚାରି ପାରନ୍ତି, 'ସେମାନଙ୍କର ତ ପରସ୍ପର ମଧ୍ୟରେ ଏତିକି ପ୍ରେମ ଥିଲା । ତା'ହେଲେ ଜଣେ ଅନ୍ୟ ଜଣକୁ ସଖୀମାନଙ୍କ ଗହଣରେ ନିଜ ମନର କଥା କହିଲା ନାହିଁ କାହିଁକି ?' ଏବେ ଏ କଥା ଆମେ କ'ଣ ବା ଜାଣିବୁ ? ସେମାନଙ୍କ ମନର କଥା ସେମାନେ ଜାଣିଥିବେ ଅଥବା ମଦନମୋହନ ଜାଣିଥିବେ । ନିଜର ଲେଖକ ତ ସାମାନ୍ୟ ଟିକିଏ ବୁଦ୍ଧି ଖେଳାଇ ଅନୁମାନ କରି ଦେଇପାରେ । ଗୋଟିଏ କାରଣ ଏହା ହୋଇପାରେ ଯେ ମୋହନଙ୍କ ମୁରଲୀର ସ୍ୱର ସେମାନଙ୍କ ଚିତ୍ତକୁ ଏତିକି ବ୍ୟାକୁଳ କରି ଦେଇଥିଲା ଯେ ସେମାନେ କାହାକୁ କିଛି ଜଣାଇବା ଶୁଣାଇବା ପାଇଁ ଭୁଲିଗଲେ । ଯେ ଯେପରି ବସିଥିଲା, ସେ ସେପରି ଅବସ୍ଥାରୁ ଉଠିଯାଇ ସେହି ଧ୍ୱନିକୁ ଅନୁସରଣ କରି କରି ସେହି ଦିଗକୁ ଧାଇଁବାକୁ ଲାଗିଲା । ଅଥବା ପ୍ରେମରେ ଏ କଥା ବି ଘଟିଥାଏ । ପ୍ରଥମେ ମୁଁ ମୋ' ପ୍ରିୟତମଙ୍କ ପ୍ରେମପ୍ରସାଦ ପାଇବାକୁ ଯେମିତି ସମର୍ଥ ହୁଏ, ଏହି ଉତ୍କଣ୍ଠାରେ କାହାକୁ କିଛି ନକହି ସବା ଆଗ ନିକଟରେ ପହଞ୍ଚିବାର ସଙ୍କଳ୍ପ ନେଇ ସମସ୍ତେ ଚାଲିଲେ । ଅଥବା ଚାଲିଲାବେଳେ ସେମାନଙ୍କର ଚିତ୍ତ ଏଭଳି ତନ୍ମୟ ହୋଇ ଯାଇଥିଲା ଯେ, କାହାକୁ କିଛି କହିବାର ସାମର୍ଥ୍ୟ ସେମାନଙ୍କର ନଥିଲା । ପ୍ରେମରେ ସେମାନଙ୍କର ବାଣୀ ଅବରୁଦ୍ଧ ହୋଇଗଲା—ପାଦମାନଙ୍କର ଗତି ସ୍ତବ୍ଧ ହୋଇଗଲା । ବିନା ଯତ୍ନରେ ପାଦ ଆପଣା ଛାଏଁ ସେହି ଦିଗକୁ ଚାଲିବାକୁ ଲାଗିଲା । ସେମାନେ ଯାହା କଲେ ମଧ୍ୟ ଏପଟ-ସେପଟ ବୁଲିବା ପାଇଁ ଓ ସମର୍ଥ ହୋଇ ପାରୁ ନ ଥିଲେ । ଯନ୍ତ୍ର ଭଳି ସେହି ଦିଗକୁ ଅବ୍ୟାହତ ଗତିରେ ଧାଇଁ ଚାଲୁଥିଲେ । ଯାହା କିଛି ହେଉନା କାହିଁକି, ସେମାନେ ସମସ୍ତେ ସେହି କାମୋଦ୍ଦୀପକ ବେଣୁନାଦକୁ ଶୁଣି ଶ୍ରୀକୃଷ୍ଣଙ୍କ ପାଖକୁ ଧାଇଁଗଲେ । ଧାଉଁଥିବା ସମୟରେ ସେମାନଙ୍କ କୁଣ୍ଡଳଗୁଡ଼ିକ ଦୋହଲି ଉଠୁଥିଲା ।"

ଶୌନକ ପଚାରିଲେ—"କୁଣ୍ଡଳଗୁଡ଼ିକ କାହିଁକି ଦୋହଲୁ ଥିଲା ?"

ସୂତ ଉତ୍ତର ଦେବାକୁ ଯାଇ କହିଲେ—"ବାଃ ! ବଡ଼ ଉତ୍ତମ ପ୍ରଶ୍ନଟିଏ ତ ଆପଣ ପଚାରିଲେ ! ଚାଲିଲାବେଳେ କୁଣ୍ଡଳଗୁଡ଼ିକ ଦୋହଲନ୍ତି ନାହିଁ ? ବେଗରେ ଚାଲିଲେ ତାହାର କୁଣ୍ଡଳଗୁଡ଼ିକ ତ ଆପଣା ଛାଏଁ ଦୋହଲିବ ।"

ଶୌନକ କହିଲେ—"ପୁଣି ଏହା କହିବାର କି ପ୍ରୟୋଜନ ତେବେ ଥିଲା ?"

ସୂତ ଉତ୍ତର ଦେଲେ—"ପ୍ରୟୋଜନ ହେଲା, କୃଷ୍ଣଙ୍କ ସହିତ ମିଳନର ବ୍ୟଗ୍ରତା କେବଳ ଯେ ଚୈତନ୍ୟମୟୀ ଗୋପୀମାନଙ୍କର ନଥିଲା, କାନରେ ଥିବା ଜଡ଼ କୁଣ୍ଡଳଗୁଡ଼ିକ ବି ତାଙ୍କ ସହିତ ମିଳନ ଲାଗି ବ୍ୟଗ୍ର ହୋଇ ଉଠିଥିଲେ, ଲାଳାୟିତ ହୋଇ ଉଠିଥିଲେ, ଅଧୀର ହୋଇ ଉଠିଥିଲେ, ଏବଂ ଉତ୍ସୁକ ହୋଇ ଉଠିଥିଲେ । ସେଗୁଡ଼ିକ ଗୋପୀମାନଙ୍କ କାନରେ ହଲି ହଲି କହୁଥିଲେ, 'ଦେଖ, ତୁମେ ତ ସୁକୁମାରୀ ସ୍ତ୍ରୀ । ତୁମର କଟିପ୍ରଦେଶ ସ୍ଥୂଳ । ବକ୍ଷସ୍ଥଳରେ ବି ଦୁଇଟି ଭାର କଳସ ଅଛି । ତୁମର ଉଦର କୃଶ । ସେଥିପାଇଁ ତୁମେ ଶୀଘ୍ର ଶୀଘ୍ର ଚାଲିବାରେ କ୍ଲାନ୍ତ ହୋଇ ପଡ଼ୁଛ । ନିତମ୍ବର ଭାର ଫଳରେ ତୁମର ପାଦଗୁଡ଼ିକ ଯମୁନାର ବାଲିରେ ଧସିକି ପଶି ଯାଉଛି । ତେଣୁ ତୁମେ ଶୀଘ୍ର ଶୀଘ୍ର ଦଉଡ଼ି ପାରୁନାହଁ । ତୁମେ ଥକି ଯାଉଛ; ତୁମ ମୁହଁରେ ବିନ୍ଦୁ ବିନ୍ଦୁ ଝାଳ ଦେଖା ଦେଉଛି । ତାହାକୁ ପୋଛିବା ପାଇଁ ତୁମକୁ ସମୟ ଲାଗି ଯାଉଛି । ତେଣୁ ଆମେ ଜାଣି ପାରୁନୁ, ତୁମେ କେବେ ଯାଇ ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚିବ । ଆମକୁ ନିଜ କାନରୁ ଛାଡ଼ି ଦିଅ, ଆମେ ଧାଇଁ ଧାଇଁ ଯାଇ ଶ୍ରୀକୃଷ୍ଣଙ୍କ ପାଖରେ ଶୀଘ୍ର ପହଞ୍ଚିଯିବୁ; ତାଙ୍କ ପାଦତଳେ ଯାଇ ଲୋଟି ପଡ଼ିବୁ ।' କିନ୍ତୁ ଗୋପୀମାନେ ତ ନିଜକୁ ଭୁଲି ଯାଇଥିଲେ । ସେମାନଙ୍କର ଧ୍ୟାନ ଜମା କୁଣ୍ଡଳଗୁଡ଼ିକ ପ୍ରତି ନ ଥିଲା । ସେମାନେ ସେହି କଥାକୁ ଜମା ଶୁଣୁ ହିଁ ନ ଥିଲେ । କୁଣ୍ଡଳଗୁଡ଼ିକ ତେଣୁ ରାଗି ଯାଉଥିଲେ ଏବଂ ବାରମ୍ବାର ନିଜ ବ୍ୟଗ୍ରତାକୁ ପ୍ରକଟିତ କରୁଥିଲେ । ଏଥିରୁ ପ୍ରମାଣିତ ହେଉଛି ଯେ ଜଡ଼, ଚେତନ ସମସ୍ତେ ଶ୍ରୀକୃଷ୍ଣଙ୍କ ସହିତ ମିଳନ ଲାଗି ଥିଲେ ବ୍ୟଗ୍ର ଓ ଅଧୀର ; କିନ୍ତୁ ସେମାନଙ୍କୁ ବିଶୁଦ୍ଧ ପନ୍ଥା ମିଳୁ ନଥିଲା । ସେମାନେ କଣ୍ଟକମୟ ସୃଷ୍ଟି ମାର୍ଗରେ ଚାଲିଛନ୍ତି । ସେଥିରେ ସେମାନେ ଆଗକୁ ଚାଲିପାରୁ ନାହାନ୍ତି କିମ୍ବା ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚିପାରୁ ନାହାନ୍ତି । ଗୋଟିଏ କଣ୍ଟା ଲାଗିଗଲା ତ ତାହାକୁ ବାହାର କରିବାପାଇଁ କିଛି ସମୟ ଲାଗି-ଯାଉଛି । କଣ୍ଟା ବାହାର କରି ଦେବାଦ୍ୱାରା କିଛି ସୁଖ ମିଳୁଛି କି ନାହିଁ ପୁଣି ଆଉ ଗୋଟିଏ କଣ୍ଟା ପଶି ଯାଉଛି । ସେମାନଙ୍କର ସମସ୍ତ ସମୟ କଣ୍ଟା ବାହାର କରିବାରେ ହିଁ କଟି-ଯାଉଛି । ଏଇ ଏବେ ସୁଖ ମିଳିଯିବ, ଏହି ଆଶାରେ ସେମାନେ ଗୋଟିକ ପରେ ଗୋଟିଏ କରି କଣ୍ଟା ବାହାର କରୁଛନ୍ତି ; କିନ୍ତୁ ସୁଖ ମିଳୁ ନାହିଁ । ଦୁଃଖ ଦୂର କରିବାପାଇଁ ସେମାନେ ସତତ ଚେଷ୍ଟା କରୁଛନ୍ତି ; କିନ୍ତୁ ଘୋର ଦୁଃଖ ଜମା ଦୂର ହେଉନ୍ତି ନାହିଁ । ଯଦି କୁଣ୍ଡଳଗୁଡ଼ିକ ଭଳି କୌଣସି ଭାବମୟୀ ଗୋପୀର ପାଦ-ଚିହ୍ନଗୁଡ଼ିକୁ ଅନୁସରଣ କରି ସେହି ଆଡ଼କୁ ବଢ଼ି ଚାଲିବାକୁ ହେବ, ତା'ହେଲେ ନିଶ୍ଚିତ ଭାବରେ ଶ୍ରୀକୃଷ୍ଣଙ୍କ ପାଖରେ ପହଞ୍ଚିପାରି ହେବ ।"

ସୂତ କହୁଅଛନ୍ତି—"ହେ ମୁନିମାନେ ! ଏହିଭଳି ସ୍ୱରରେ ଭଗବାନଙ୍କ ମୁରଲୀ ଧ୍ୱନି ଶୁଣି ଅତ୍ୟନ୍ତ ବ୍ୟଗ୍ରତାର ସହିତ ଘରର ସବୁ କାମଦାମ ଛାଡ଼ି ଗୋପୀମାନେ ଶରତ୍ ରାତିରେ ବଣ-ଭୂଇଁରେ ଶ୍ରୀକୃଷ୍ଣଙ୍କ ପାଖକୁ ଚାଲିବାକୁ ଲାଗିଲେ ।"

### ଛପ୍ପୟ

ଦୂଧ ଦୁହେୟା କୋ ଦୁହେୟା ଗାୟନକେ ନୀଚେ ପଟକେୟା ।
ରହୀ ପାଲନୋ ଖୋଲ ତଜେୟା ଜେୟାଂକୋ ତେୟାଂ ଲଟକେୟା ॥
ଦହୀ ମଥନ ହୀ ଛୋଡ଼ ଚଲୀଂ ମାଖନ୍ ନ ନକାର୍‌ୟୋ ।
ଛୋଡ଼ ଚୂଲ୍ହିପେ ଦୂଧ ଚଲୀଂ ନୀଚେ ନ ଉତାରୟୋ ॥
ପତି ଭୋଜନ ତଜି ଚଲୀ ଇକ, ପ୍ରେମ ଚଟପଟୀ ହିୟଲଗୀ ।
ହଲୁଆ ଓଘାଟତ ରହୀ ଇକ, ଛୋଡ଼କଡ଼ାଇମହଁ ଭଗୀ ॥



## ଗମନ ଲାଗି ଉତ୍ସୁକତା

ଦୁହନ୍ତ୍ୟୋଽଭିଯୟୁଃ କାଶ୍ଚିଦ୍ଦୋହଂ ହିତ୍ୱା ସମୁତ୍ସୁକାଃ ।
ପୟୋଽଧିଶ୍ରିତ୍ୟ ସଂୟାବମନୁଦ୍ୱାସ୍ୟାପରା ଯୟୁଃ ॥

(ଶ୍ରୀ ଭା ୧୦ ସ୍କ, ୨୯ ଅ ୫ ଶ୍ଳୋକ)

### ଛପ୍ପୟ

କଛୁକ ଅଙ୍କ ବୈଠାଇ ପୂତକୂଁ ଦୂଧ ପିଆଵେଂ ।
କଛୁକ ପ୍ରାନପତି ହେତୁ ଫୂଲକୀ ସେଜ ବଛାଵେଂ ॥
କଛୁ ଭୋଜନ କରଵାଇ ସବନକେ ବାସନ ମାଁଜେଂ ।
କଛୁ ଉବଟନ କର ନ୍ହାଇ ନେତ୍ରମହଁ ଅଞ୍ଜନ ଆଁଜେଂ ॥
କଛୁ କୁଙ୍କୁମ ଚନ୍ଦନ ଘିସତୀ, କଛୁ ତନମାଁହିଁ ଲଗାଵତୀଂ ।
କଛୁକ କେଶ କାଢ଼ତ ରହୀଂ, କଛୁ ବେଂଦୀ ଚପକାବତୀଂ ॥

କେହି ଯଦି ଅନ୍ୟକୁ କହେ କାମ କରିବାପାଇଁ କହେ, ତେବେ ଆମେ ସିଧା-ସଳଖ ଉତ୍ତର ଦେଇଥାଉଁ, ଆମକୁ ଜମା ସମୟ ନାହିଁ । କାହା ପାଖରୁ ଚଠି ଉପରେ ଚଠି

ଅସିଲେ ବି ଆମେ ଉତ୍ତର ଦେଇ ନଥାଉଁ । ଯଦି ସେ ବେଶି ବିଚାର କରନ୍ତି, ତା'ହେଲେ ଦୁଇପଦ ଉତ୍ତର ଦେଇ କହୁଥାଉଁ, "ମତେ କ୍ଷମା କରନ୍ତୁ । ସମସ୍ତ ଅକ୍ଷରକୁ ଉତ୍ତର ଦେଇପାରି ନଥିଲି । ସେଥିପାଇଁ ଦୁଃଖିତ ।" ଏବେ ଆପଣ ଭାବନ୍ତୁ ତ ସମସ୍ତାଙ୍କର ଅର୍ଥ କ'ଣ ? ଆପଣ କ'ଣ କାଗଜ-କଲମ ଧରି ଲେଖୁ ନାହାନ୍ତି ? ହଁ ଲେଖୁଛନ୍ତି; ସାରା ଦିନ ଲେଖୁଛନ୍ତି । ତା'ହେଲେ ଗୋଟିଏ ଛୋଟ ଚିଠି ଲେଖିବାପାଇଁ ଆପଣଙ୍କୁ ବେଳ ମିଳୁନାହିଁ କାହିଁକି ? ସେଥିପାଇଁ ତାହାର ଉତ୍ତର ଦେବାକୁ ଆମେ ଆବଶ୍ୟକ ବୋଲି ଭାବି ନଥାଉଁ । କାହାଠାରୁ କିଛି ଯଦି ପାଇବାର ସମ୍ଭାବନା ଅଛି, ତେବେ ଆମେ ସବୁ କାମ ଛାଡ଼ି ଦେଇ ଅତି ପ୍ରେମର ହୃଦ୍ୟ ଚିଠି ଲେଖି ବସିବା । ସଂସାରରେ ପ୍ରେମହିଁ ହେଉଛି ଆବଶ୍ୟକ ବସ୍ତୁ । ଯାହା ପ୍ରତି ଆମର ଅଧିକ ପ୍ରେମ ହେବ, ତା'ଲାଗି ଆମେ ସବୁକିଛି ଛାଡ଼ିଦେବା । ସେହିମାନଙ୍କର ଜାତି ପ୍ରତି ପ୍ରେମ ଥାଏ, ସେମାନେ ଜାତି ପାଇଁ ଜୀବନ-ବଳି ଦେଇଥାନ୍ତି । ଦେଶାତ୍ମ ନେତା ଦେଶର ଲାଗି ସବୁ କାମ ଛାଡ଼ି ଦେଇଥାଏ । ଯଦି କାହା ଉପରେ ଗୁରୁ-ଅଭିଯୋଗ ଆଏ, ତା'ହେଲେ ସେ ତାହାକୁ ଅତ୍ୟାବଶ୍ୟକ ବୋଲି ମନେ କରି ବେପାରରେ କ୍ଷତିକୁ ବି ମାନି ନେଇଯାଇଥାଏ । ଯଦି ନିଜ ପ୍ରାଣରେ ସ୍ତ୍ରୀ ଅଥବା ପ୍ରିୟ ପୁତ୍ରଠାରେ କିଛି ଅସାଧ୍ୟ ରୋଗ ଆସି ଦେଖାଦେଲେ, ତେବେ ଧନ ପ୍ରତି ମମତା ରହିଯାଇ ନଥାଏ । ଏହାର କାରଣ ହେଲା, ତା' ପ୍ରତି ଆମର ଖୁବ୍ ଅନୁରାଗ ଥାଏ । ଗୃହିଣୀ ସ୍ତ୍ରୀମାନଙ୍କର ଘର-କାମ ପ୍ରତି ଅତ୍ୟନ୍ତ ଅନୁରାଗ ଥାଏ ; କିନ୍ତୁ ଯଦି କୌଣସି ଜଣେ ପ୍ରିୟତମା ସଖୀ ଆସିଯାଏ, ତେବେ ସେ ସେହି କାମଗୁଡ଼ିକୁ ମଧ୍ୟ ଛାଡ଼ି ଦେଇଥାଏ । ପ୍ରେମରେ ନମସ୍କାର ଜମା ନଥାଏ । ଯେପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରେମଭାବ ଅସିନାହିଁ, ସେପର୍ଯ୍ୟନ୍ତ ସଂସାର ଲୋକମାନଙ୍କର ସାଂସାରିକ ବସ୍ତୁଗୁଡ଼ିକ ପ୍ରତି ପ୍ରେମ-ଭାବ ରହିଥାଏ । ଯେଉଁଠି ଶ୍ରୀକୃଷ୍ଣ-ପ୍ରେମର ପ୍ରବଳ ଆକର୍ଷଣ ଦେଖାଦିଏ, ସେଠାରେ ଏହିସବୁ ସମ୍ବନ୍ଧ ଫିକା ପଡ଼ିଯାଇଥାଏ । ଏସବୁ ଦେଖାଯାଏ ବିଷ ସମାନ, ଶରୀରରୁ ତ୍ୟାଗ କରୁଥିବା ମଳମୂତ୍ର ସମାନ, ବାନ୍ତି ହୋଇଥିବା ଖାଦ୍ୟ ସମାନ, ଲୋମ-କୂପଗୁଡ଼ିକରୁ ନିର୍ଗତ ହେଉଥିବା ସ୍ୱେଦ-ବିନ୍ଦୁ ସମାନ, କଟା ହୋଇଥିବା ନଖ ଓ କେଶ ସମାନ, ଉପୁଡ଼ା ହୋଇଥିବା ଦନ୍ତ ସମାନ, କଣ୍ଠରୁ ବାହାରିଥିବା ଶ୍ଳେଷ୍ମା ସମାନ ତଥା କାନରୁ ବାହାରିଥିବା ମଳ ସମାନ । ଏଗୁଡ଼ିକ ଘୃଣାସ୍ପଦ ଓ ତ୍ୟାଜ୍ୟ ଭଳି ବୋଧ ହୋଇଥାଏ । ଯେ ଯେତେ ପ୍ରକାର ଆଗ୍ରହ ଦେଖାଉ ଅଥବା ପ୍ରଲୋଭନ ଆଣୁ, ସେଗୁଡ଼ିକ ପ୍ରତି ତା'ର ଜମା ଆସକ୍ତି ଅସିବ ନାହିଁ ।

ସୂତ କହି ଚାଲିଥାନ୍ତି—"ହେ ମୁନିମାନେ ! ନିଜ ନିଜର ଘର-କାମରେ ଲାଗି ରହିଥିବା ଗୋପୀମାନେ ଶରତର ପୂର୍ଣ୍ଣିମା ରାତିରେ ହଠାତ୍ ମୁରଲୀର ମଧୁର ଧ୍ୱନି ଶୁଣିଲେ । ତାହା ଶୁଣିବା ମାତ୍ରେ ହିଁ ସେମାନେ ପ୍ରେମରେ ବିହ୍ୱଳ ହୋଇ ଉଠିଲେ ।

ଏତେ ଦିନ ଧରି ଯେଉଁ ସମୟକୁ ସେମାନେ ପ୍ରତୀକ୍ଷା କରି ଆସୁଥିଲେ, ତାହା ଏବେ ପାଖେଇ ଆସିଛି । ଶ୍ରୀକୃଷ୍ଣ ଆମକୁ ଡାକୁଛନ୍ତି—କ୍ରୀଡ଼ା କରିବାପାଇଁ ଆହ୍ୱାନ କରୁଛନ୍ତି । ଆହା ! ଆଜି ଦୀର୍ଘ ଦିନର ପ୍ରତୀକ୍ଷା ପରେ ପ୍ରିୟ-ମିଳନର ଅନୁପମ ସୁଖ ମିଳିବ ! ଏହି କଥା ମନେ ପକାଇବା ମାତ୍ରେ ହିଁ ସେମାନଙ୍କଠାରେ ରୋମାଞ୍ଚ ଜାତି ଉଠିଲା । ସେମାନଙ୍କର ସବୁ ବୁଦ୍ଧି ଲୋପ ପାଇଗଲା । ସେମାନେ ଯେଉଁ କାମ କରୁଥିଲେ, ତାହା ସେମିତି ରହିଗଲା । ଅନେକ ଗୋପୀ ଗୋଶାଳାରେ ଗାଈ ଦୁଧ ଦୁହିଁବାର ଉଦ୍ୟମରେ ଥିଲେ । ସେମାନେ ବାଛୁରୀମାନଙ୍କୁ ଛାଡ଼ି ଦେଇଥିଲେ । ଗାଈମାନେ ପହ୍ନେଇ ସାରିଥିଲେ । ବାଛୁରୀମାନଙ୍କୁ ବାନ୍ଧି ଠିକ୍ ଦୁଧ ଦୁହିଁବାକୁ ଗଲାବେଳେ ସେମାନଙ୍କୁ ବଂଶୀ-ଧ୍ୱନି ଶୁଣାଗଲା । ତୁରନ୍ତ ସେମାନେ ବାଛୁରୀମାନଙ୍କୁ ନ ବାନ୍ଧି ଦୁହିଁବାର ସାମଗ୍ରୀମାନ ସେଠାରେ ଛାଡ଼ି ଦେଇ ଚାଲିଗଲେ । ଅନେକ ଗୋପୀ ଅଧା ଦୁଧ ଦୁହିଁ ସାରିଥିଲେ । ସେମାନେ ମୁରଲୀର ତାନ ଶୁଣି ଦୁହିଁବାର ସାମଗ୍ରୀମାନ ଓ ଦୁଧକୁ ସେଠାରେ ଛାଡ଼ି ଦେଇ ଶ୍ରୀକୃଷ୍ଣଙ୍କ ଆଡ଼କୁ ଚାଲିଗଲେ । ଅନେକ ଗୋପୀ ଦୁଧ ଦୁହିଁ ସାରିଥିଲେ । ସେମାନେ ତାହାକୁ ସେଠାରେ ଛାଡ଼ିଦେଲେ । ଅନେକ ଗୋପୀ ଘରକୁ ଦୁଧ ନେଇ ତାହାକୁ ହାଣ୍ଡିରେ ରଖି ଗରମ କରିବାକୁ ଯାଉଥିଲେ । ସେମାନେ ବେଣୁ ଗୀତ ଶୁଣିବା ମାତ୍ରେ ତାହାକୁ ଚୁଲିରେ ନ ବସାଇ ସେମିତି ଛାଡ଼ି ଚାଲିଗଲେ । ଅନେକଙ୍କର ଦୁଧ ଗରମ ହେଉଥିଲା । ସେମାନେ ତାହାକୁ ଗରମ ହେଉଥିବା ଅବସ୍ଥାରେ ଛାଡ଼ି ଦେଇ ଚାଲିଗଲେ । ଅନେକ ଗୋପୀ ମୋହନ-ଭୋଗ ତିଆରି କରୁଥିଲେ । ସେମାନେ କନିକୁ ଗରମ ପାଣିରେ ଗୋଳାଇ ତାହାକୁ ଚୁଲିନେଇ ସାରିଥିଲେ । ସେମାନେ ସୁଜିକୁ ଘିଅରେ ଭାଜୁଥିଲେ । ଏହି ସମୟରେ ସେମାନଙ୍କ କାନରେ ବଂଶୀ-ଧ୍ୱନି ପଡ଼ିଲା । ସୁଜି ସେମିତି ଚୁଲି ଉପରେ ଥିଲା ଏବଂ ସିଝା କଡ଼େଇରେ ଥିଲା । ସେସବୁକୁ ଯେଉଁଠି ଥିଲା ସେଠି ଛାଡ଼ି ଦେଇ ଶୀଘ୍ର ଶୀଘ୍ର ସେଇ ଧ୍ୱନିକୁ ଅନୁସରଣ କରି ସେହି ଦିଗକୁ ସେମାନେ ଚାଲିବାକୁ ଲାଗିଲେ । ଅନେକ ଗୋପୀ ଓଡ଼ଣା ଟାଣି ରୁଟି ତିଆରି କରି ଚାଲିଥିଲେ ଏବଂ ଗରମ ଗରମ ରୁଟି ପିଠା ଓ ଦେବରମାନଙ୍କ ପାଇଁ ଥାଳରେ ପକାଇ ଚାଲିଥିଲେ । ସମସ୍ତେ ସେପେଇରେ ବୁଡ଼ି ରହିଥିଲେ । ଏହି ସମୟରେ ଉନ୍ମାଦ କରାଇ ଦେଉଥିବା ବଂଶୀଟି ବାଜି ଉଠିଲା । ସେତେବେଳେ ସବୁ ଗୁଡ଼ ଜାଣ ଗୋବର ପାଲଟିଗଲା । ସେମାନେ ବେଲା ହୋଇଥିବା ଅଟାକୁ ଲୁହା-କଡ଼େଇରେ ଛାଡ଼ିଦେଲେ; ତାଉଥିବା ରୁଟିକୁ ତାୱାରେ ଛାଡ଼ିଦେଲେ ଏବଂ ଚୁଲିରେ ବସିଥିବା ରୁଟିକୁ ସେମିତି ଜଳୁଥିବା ଅବସ୍ଥାରେ ଛାଡ଼ିଦେଲେ । ଏହା କରି ସେମାନେ ବସିବା ଜାଗାମାନଙ୍କରୁ ଉଠି ଚାଲିଗଲେ ।”

କେହି କେହି ଗୋପୀମାନେ ନିଜର ଛୋଟ ଛୋଟ ପିଲାମାନଙ୍କୁ କୋଳରେ ଧରି ଅଞ୍ଚଳର ଅନ୍ତରାଳରେ ଦୁଧ ପିଆଉଥିଲେ । କେହି କେହି ନିଜର ଛୋଟ ଛୋଟ ଝିଅ,

କଉଣୀ, ଦୁଗ୍‌ଧ, ଝିଅମାନଙ୍କୁ ଗାଈର ଅଇଁଠା ହୋଇଥିବା ଦୁଧରେ ମିଶ୍ରି ମିଶାଇ ଚାମଚରେ ସେମାନଙ୍କୁ ତାହା ପିଆଉଥିଲେ । ସେମାନେ ଯେମିତି ବଂଶୀର ଧ୍ୱନି ଶୁଣିଲେ, ସେମିତି ତୁରନ୍ତ ସମସ୍ତଙ୍କୁ ଯେଉଁଠି ଥିଲେ ସେଠି ଛାଡ଼ିଦେଇ ଶ୍ରୀକୃଷ୍ଣଙ୍କ ପାଖକୁ ଯମୁନାକୂଳ ଆଡ଼େ ଧାଇଁଗଲେ । କେହି କେହି ଶେଯରେ ଶୋଇ ନିଜ ସ୍ୱାମୀମାନଙ୍କୁ ଶୃଙ୍ଗାର ସହିତ ସେବା କରୁଥିଲେ । ସେମାନଙ୍କ ଗୋଡ଼ ଘଷି ଦେଉଥିଲେ, ମୁଣ୍ଡରେ ତାଳୁରେ ଘିଅ, ତେଲ ଲଗାଇ ଦେଉଥିଲେ । ସେମାନେ ମଧ୍ୟ ମନ୍ତ୍ରମୁଗ୍ଧ ଭଳି ହୋଇ ଉଠିଲେ । ସେମାନଙ୍କ ହାତରେ ଘିଅ, ତେଲ ଯେମିତି ଲାଗିଥିଲା । ସେହି ଅବସ୍ଥାରେ ସେମାନେ ଉଠିପଡ଼ି ବାହାରିଗଲେ ।

କେହି କେହି ନିଜ ଶାଶୁ, ଶଶୁର, ସ୍ୱାମୀ, ଦିଅର, ଦେଢ଼ଶୁର, ପୁଅଝିଅ ଆଦିଙ୍କୁ ଖାଇବାକୁ ଦେଇସାରି ନିଜେ ସ୍ୱାମୀଙ୍କ ଥାଳିରେ ବସି ପ୍ରସାଦ ପାଉଥିଲେ । ପ୍ରସାଦ ପାଉଥିବା ଅବସ୍ଥାରେ ସେମାନଙ୍କ କର୍ଣ୍ଣକୁହରରେ ପାଗଳିନୀ କରାଇ ଦେଉଥିବା ବଂଶୀର ମୋହନ ସ୍ୱନ ପ୍ରବେଶ କଲା । ହାତର ଅନ୍ନ ହାତରେ ହିଁ ରହିଗଲା, ମୁଖର ଅନ୍ନ ମୁଖରେ ହିଁ ରହିଗଲା । ସେ ତାହାକୁ କାଢ଼ିଦେଇ ପାରିଲେ ନାହିଁ କିମ୍ବା ଆଚମନ ବି କରିପାରିଲେ ନାହିଁ । ଯେଉଁ ଅବସ୍ଥାରେ ଥିଲେ ଠିକ୍ ସେମିତି ଅବସ୍ଥାରେ ସେମାନେ କୃଷ୍ଣଙ୍କ ପାଖକୁ ଧାଇଁଲେ ।

କେହି କେହି ହଳଦୀ ଲଗାଉଥିଲେ । ଆପଣମାନେ ପଚାରି ପାରନ୍ତି, 'ରାତିରେ ହଳଦୀ ଲଗାଇବା କ'ଣ ଦରକାର ? ହଳଦୀ ଲଗାଇ ତ ଗାଧୋଇବାକୁ ପଡ଼ିଥାଏ । ଅଧ ରାତିରେ ହଳଦୀ ଲଗାଇ ଗାଧୋଇଲେ ତ କଷ୍ଟ ହେବ ।' ନିଜ ପ୍ରିୟତମଙ୍କୁ ଆନନ୍ଦ ଦେବାଲାଗି ସବୁ କିଛି କରିପାରେ । ଦେହକୁ ନିଜଲାଗି ସଜା ଯାଇ ନଥାଏ । ଏହାକୁ ଦେଖି ପ୍ରିୟତମ ଖୁସି ହେବେ, ସୁଖୀ ହେବେ ଏହି ଭାବନା ହିଁ ମନରେ ରହିଥାଏ । ହଳଦୀ ଲଗାଇ ଗରମ ପାଣିରେ ନିର୍ଜନ ଜାଗାରେ ଗାଧୋଇଲେ ଶରତ ଋତୁରେ ଦେହକୁ ସୁଖ ଦେଇଥାଏ । ଗୋପୀମାନେ ସଂଧ୍ୟାବେଳେ ମଧ୍ୟ ହଳଦୀ ଲଗାଇ ଶୃଙ୍ଗାର କରୁଥିଲେ । ଗାଧୋଇ ସାରି ନିଜ ବକ୍ଷସ୍ଥଳରେ ତଥା ଅନ୍ୟାନ୍ୟ ଅଙ୍ଗଗୁଡ଼ିକରେ ସେମାନେ କେଶର କସ୍ତୁରୀଯୁକ୍ତ ସୁଗନ୍ଧିତ ଚନ୍ଦନ ଓ ଅଙ୍ଗରାଗର ପ୍ରଲେପ ବୋଳି ହେଉଥିଲେ । ପ୍ରଲେପ ଲାଗି କେହି କେହି ଚନ୍ଦନ ଘୋରୁଥିଲେ । ସେମାନେ ଚନ୍ଦନକୁ ଅଧାଘୋରା ଅବସ୍ଥାରେ ଛାଡ଼ିଦେଇ ଚାଲିଗଲେ । କେହି କେହି ଅଙ୍ଗରାଗ ଲଗାଉଥିଲେ, ଦେହରେ କେଶରର ପ୍ରଲେପ ଦେଉଥିଲେ । ଦେହର ଅଧା ଅଂଶରେ ପ୍ରଲେପ ଦିଆ ସରିଥିଲା ଏବଂ ଆଉ ଅଧା ଅଂଶ ବାକିଥିଲା । ସେମାନେ ତାହାର ମଝିରେ ହିଁ ଛାଡ଼ିକରି ଚାଲିଗଲେ । କେହି କେହି ଦେହକୁ ନିର୍ମଳ କରି ଲୁଗା ପିନ୍ଧୁଥିଲେ । ମୁରଲୀର ଧ୍ୱନି ଶୁଣିବାମାତ୍ରେ ହିଁ ସେମାନଙ୍କର ବୁଦ୍ଧି ହଜିଗଲା ଏବଂ ସେମାନେ ପାଗଳିନୀ ଭଳି ହୋଇ ଉଠିଲେ । ସେମାନେ ଓଢ଼ଣୀକୁ ଅଣ୍ଟାବନ୍ଧା

ଲୁଗା ଜାଗାରେ ବାନ୍ଧି ଦେଲେ ଏବଂ ଅଣ୍ଟାବନ୍ଧା ଲୁଗାକୁ ଓଢ଼ଣୀ ସ୍ଥାନରେ ଟାଣି ଦେଲେ। ସେମାନେ ସ୍ତନ-ବନ୍ଧନକୁ କଣ୍ଠରେ ଝୁଲାଇଦେଲେ ଏବଂ ସ୍ତନ ଉପରେ ରହୁଥିବା ପାଟଟିକୁ ପେଟରେ ବାନ୍ଧିଦେଲେ। ଏହିଭଳି ଅସ୍ତ-ବ୍ୟସ୍ତ ହୋଇ ସେମାନେ ଉନ୍ମାଦିନୀ ଭଳି ଭଗବାନଙ୍କ ପାଖକୁ ଧାଇଁଗଲେ। କେହି କେହି ଅଲଙ୍କାର ପିନ୍ଧୁଥିଲେ। ସେମାନେ କେଉଁ ସ୍ଥାନର ଅଲଙ୍କାରକୁ ଆଣି କେଉଁ ସ୍ଥାନରେ ଲଗାଇଲେ। ଅଣ୍ଟା-ସୂତାକୁ ସେମାନେ କଣ୍ଠରେ ଆଣି ପିନ୍ଧିଲେ ଏବଂ ହାରକୁ ଅଣ୍ଟାରେ ଆଣି ଲଗାଇଲେ। ଏହିପରି ଭାବରେ ଗୋଟିଏ ଜାଗାର ଅଲଙ୍କାରକୁ ଆଉ ଗୋଟିଏ ଜାଗାରେ ପିନ୍ଧି ଅସ୍ତବ୍ୟସ୍ତ ଭାବରେ ସେମାନେ ଶୁଦ୍ଧ ପାଗଳିନୀ ଭଳି ଉଠି ଧାଇଁବାକୁ ଲାଗିଲେ।

କେହି କେହି ସିନ୍ଦୂର ଟୋପା ଲଗାଉଥିଲେ ତ ଆଉ କେହି କେହି ଆଖିରେ ଅଞ୍ଜନ ଲଗାଉଥିଲେ। ଆଉ କେହି କେହି ସୁନ୍ଥା ମଝିରେ ସିନ୍ଦୂର ଲଗାଉଥିଲେ। କେହି କେହି କୁଙ୍କୁମର ତିଳକ ଦେଉଥିଲେ। କେହି କେହି ପାନ ଡବାରେ ପାନ ଖଣ୍ଡି ଭରି ରଖୁଥିଲେ। କେହି କେହି ଦର୍ପଣ ଆଗରେ ମୁଖ ଦେଖି ନିଜ ମୁଖକୁ ସରସ-ସୁନ୍ଦର କରାଉଥିଲେ। କେହି କେହି ନଖରେ ରଙ୍ଗ ଦେଉଥିଲେ। କେହି କେହି ହଳଦୀ ଲଗାଉଥିଲେ। କେହି କେହି ବାଳକୁ ଶୁଦ୍ଧ ପରିଷ୍କାର କରୁଥିଲେ। କେହି କେହି ଦାନ୍ତକୁ ମଇଳା ବାହାର କରି ପରିଷ୍କାର କରି ଘଷି-ମାଜି ଝଟକାଉଥିଲେ। କେହି କେହି ମଇଳା କାଚଗୁଡ଼ିକୁ କାଢ଼ି ଦେଇ ଝଟକି ଉଠୁଥିବା କାଚଗୁଡ଼ିକୁ ପିନ୍ଧୁଥିଲେ। ସାର କଥା ହେଲା, ଗୃହସ୍ଥମାନଙ୍କୁ, ନିଜ ଲୋକମାନଙ୍କୁ ସନ୍ତୁଷ୍ଟ କରିବାଲାଗି ନିଜ ନିଜର ଶରୀରକୁ ସଜାଇବା ଲାଗି ଯାହା ଯାହା କାମ ଦରକାର, ତହିଁରୁ ଯେ ଯେଉଁ କାମ କରୁଥିଲା, ସେ ତାହାକୁ ସେହିପରି ଅବସ୍ଥାରେ ଅଧା-ପନ୍ତରିଆ ଛାଡ଼ି ଦେଇ ଭଗବାନଙ୍କ ବଂଶୀ-ଧ୍ୱନିର ପଛେ ପଛେ ଚାଲିବାକୁ ଲାଗିଲା। ସବୁକିଛି ଛାଡ଼ିଦେଇ ସେ ଘରୁ ବାହାରି ପଡ଼ିଲେ।

ସେମାନେ ସମସ୍ତେ ବୁଦ୍ଧି ହରାଇ ଦେଇଥିଲେ; ସବୁକିଛି ଭୁଲି ଯାଇଥିଲେ; ପାଗଳିନୀ ହୋଇ ଉଠିଥିଲେ ଏବଂ ସେମାନଙ୍କ ବିଚାର-ଶକ୍ତି ଲୋପ ପାଇ ଯାଇଥିଲା। ଏଭଳି ଅବସ୍ଥାରେ ସେମାନେ ବଣ ଆଡ଼କୁ ଧାଇଁ ଯାଉଥିଲେ। ତାହା ଦେଖି ସେମାନଙ୍କ ସ୍ୱାମୀମାନେ, ଭାଇମାନେ, ବନ୍ଧୁ-ବାନ୍ଧବମାନେ ଓ ନିଜର ଲୋକମାନେ ସେମାନଙ୍କୁ ବାଧା ଦେଲେ, ବହୁତ ପ୍ରକାର ବାରଣ କଲେ; କିନ୍ତୁ ସେମାନେ କାହାରି କଥା ହେଲେ ଶୁଣିଲେ ନାହିଁ। ସମସ୍ତଙ୍କ କଥାକୁ ନ ଶୁଣି ଏବଂ କିଛି ଉତ୍ତର ନ ଦେଇ ସେମାନେ ଚାଲିଯିବାକୁ ଲାଗିଲେ। ସେମାନଙ୍କୁ ଖୁବ୍ ଯତ୍ନ କରି ମଧ୍ୟ କେହି ଅଟକାଇ ରଖିପାରିଲେ ନାହିଁ। ମରଣ-ମୁହଁକୁ ଯାଉଥିବା ଲୋକକୁ କିଏ ବା ବାଧା ଦେଇପାରିବ ? ଯେ ପ୍ରାଣକୁ ପଣ କରି ଏବଂ ସଂସାର ମୋହକୁ ଛାଡ଼ି ଯିବାପାଇଁ ତତ୍ପର ହୋଇ ଉଠିଛି, ତାକୁ ଜୋର-ଜବରଦସ୍ତି କରି ବାନ୍ଧି କିଏ ବା କେତେ ସମୟ ପର୍ଯ୍ୟନ୍ତ ରଖିପାରିବ ? ଯେଉଁମାନେ

ପ୍ରାଣରେ ଆଶା ଗୁଡ଼ି ବସିଛନ୍ତି, ସେମାନଙ୍କର ତାହା ପ୍ରତି ବା ଡର-ଭୟ ରହିବ ? ସେମାନଙ୍କ ହୃଦୟକୁ ତ ଚିତ୍-ଚୋରର ଚୋରକରି ନେଇ ଯାଇଥିଲେ । କୃଷ୍ଣ ସମସ୍ତଙ୍କୁ ଆକର୍ଷଣ କରନ୍ତି, ସମସ୍ତଙ୍କୁ ଜୋର୍ କରି ନିଜ ଆଡ଼କୁ ଟାଣି ଆଣିଥାନ୍ତି । ସେ ଯାହାକୁ ବରଣ କରିବାକୁ ଚାହାନ୍ତି, ଯାହାକୁ ନିଜ ପାଖକୁ ଡାକି ଆଣିବାକୁ ଚାହାନ୍ତି, ଏଭଳି କେଉଁ ପ୍ରାଣୀ ବା ଅଛି ଯେକି ବିବଶ ହୋଇ ତାଙ୍କ ଆଡ଼କୁ ଟାଣି ହୋଇ ଯାଇ ନ ପାରିବ ? ସମସ୍ତଙ୍କୁ ବିବଶ ହୋଇ ସେଠାକୁ ଯିବାକୁ ହିଁ ପଡ଼ିବ । ଗୋପୀମାନେ ନିଜକୁ ନିଜେ ଭୁଲିଯାଇ ତାଙ୍କ ଆଡ଼କୁ ପାଦ ବଢ଼ାଇ ଚାଲିଥିଲେ । ସେମାନେ ଅଟକୁ ନ ଥିଲେ କମ୍ବା ଫେରୁ ନଥିଲେ । ସେମାନେ କେବଳ ହିଁ ଚାଲି ଲାଗିଥିଲେ । ସେମାନେ ଚାଲି ଚାଲି ଶେଷରେ ନିଜ ଲକ୍ଷ୍ୟ ସ୍ଥାନରେ ପହଞ୍ଚିଲେ, ଶ୍ରୀକୃଷ୍ଣଙ୍କ ପାଦ-ତଳେ ହାଜର ହୋଇଗଲେ ।"

ସୂତ କହି ଚାଲିଥାନ୍ତି—"ହେ ମୁନିମାନେ ! ସେମାନେ ସମସ୍ତେ ଏକା ସାଥିରେ ହିଁ ଯାଉଥିଲେ ; କିନ୍ତୁ ସମସ୍ତେ ଭାବୁଥିଲେ ଯେ ସେମାନେ ଏକା ଏକା ଯାଉଛନ୍ତି; ସେମାନଙ୍କ ଭାବକୁ ଅନ୍ୟମାନେ କେହି ଜାଣି ନାହାନ୍ତି । ଏକା ସାଥିରେ ଯାଉଥିଲେ ମଧ୍ୟ ସେମାନଙ୍କର ଭାବ ଥିଲା ଗୋପନୀୟ । ପ୍ରେମର ଏହା କି ଯେ ଅଦ୍ଭୁତ ଲୀଳା ! ଅନେକ ଗୋପୀ ତ ଚାଲି ଯାଇଥିଲେ ; କିନ୍ତୁ ଆଉ କେତେକ ଗୋପୀ ଯାଇପାରି ନଥିଲେ । ସେମାନଙ୍କର ଦଶା କିଭଳି ହୋଇଥିଲା, ତାହାର ବର୍ଣ୍ଣନା ମୁଁ ପରେ କରିବି ।"

## ଛପ୍ପୟ

କଛୁ ପଟ ପହିନତ ରହୀଂ କଛୁକ ଅଭୂଷନ ଧାରତ ।
କଛୁ ଦର୍ପନମହିଁ ଦେଖି ମାଁଗ ସିନ୍ଦୁର ସମ୍ହାରତ ॥
ଜୋ ଜୋ କାରଜ କରତ ରହୀଂ ତ୍ୟାଗୋ ସୋ ତନନେ ।
ଚଲୀଂ ବେନୁ ସୁନ କାଜ ଅଧୂରେ ଛୋଡ଼େ ଉନନେ ॥
ବରଜୀଂ ପତ ପିତୁ ବନ୍ଧୁନେ, ରୋକୀଂ ବହୁପର ନହିଁ ରୁକୀଂ ।
କହୁ ବହୁତ ପରତେ ନହୀଂ, ଲୋକଲାଜ ସମ୍ମୁଖ ଝୁକୀଂ ॥

# ତୀବ୍ର ତାପର ପରିଣାମ

ଅନ୍ତର୍ଗୃହଗତାଃ କାଶ୍ଚିଦ୍ ଗୋପ୍ୟୋଽଲବ୍ଧବିନିର୍ଗମାଃ ।
କୃଷ୍ଣଂ ତଦ୍ଭାବନାଯୁକ୍ତା ଦଧ୍ୟୁର୍ମୀଲିତଲୋଚନାଃ ॥
(ଶ୍ରୀଭା: ୧୦ ସ୍କ, ୨୯ ଅ, ୯ ଶ୍ଳୋକ)

## ଛପ୍ପୟ

କଞ୍ଚୁକ ରହୀଂ ଘର ମାଁହିଂ ଗମନକୀ କରୀଂ ତୟ୍ୟାରୀଂ ।
କିନ୍ତୁ ଚଲି ନହୀଂ ସକୀଂ ପିତାପତି ବନ୍ଧୁ ନିବାରୀଂ ॥
କରତେଁ ହଠ ଜବ ଲଗୀଂ ଦଏଁ ବାହରତେଁ ତାଲେ ।
ଭୀତର ସୋଚେଂ ବିବଶ—ନାଥ ! ବଶ ନାହିଂ ହମାରେ ॥
କୃଷ୍ଣ ଭାବନାମହଁ ସକଲ ତବ ତନ୍ମୟ ତେ ହ୍ୱୈ ଗଈଂ ।
ନୟନ ମୂଁଦ ମନହରନକେ ମଗ୍ନ ଧ୍ୟାନମହଁ ସବ ଭଈଂ ॥

ଶରୀର ହେଉଛି ପରବଶ । ତାହା ପ୍ରାରବ୍ଧର ବଶ । ତାହା ଅଭିଭାବକମାନଙ୍କର ଅଧୀନ ; କିନ୍ତୁ ମନ ତ ହେଉଛି ନିଜର । ତାହା ଯେଉଁଠି ଲାଗିଗଲା, ସେଠାରୁ ବାହାରିବା ତାହା ପକ୍ଷରେ କଠିନ ହୋଇଥାଏ । ଉପରକୁ ବେଶଭୂଷା କାହାପାଇଁ ହୋଇଥାଏ; କିନ୍ତୁ ମନ ଆଉ କାହାକୁ ଧ୍ୟାନ କରୁଥାଏ । ଏହା ଅବଶ୍ୟ ଅନୁଚିତ କଥା ; କିନ୍ତୁ କ'ଣ କରାଯିବ ? କେହି ବଳବାନ୍ ପୁରୁଷ ଯଦି ବଳପୂର୍ବକ ମନକୁ ଗ୍ରେସିଇ ନିଅନ୍ତି, ତା'ହେଲେ ତାଙ୍କ ବା କପର ବଶ କଣ ହେବ ? ଜୋର ଯାହାର ମୂଲକ ତାହାର ।

ଶ୍ରୀବୃନ୍ଦାବନର ନଦୀଘାଟରେ ଜଣେ ଶୈବ ଶ୍ରୀମଦ୍ଭାଗବତ ପଢ଼ୁଥିଲେ । ସେ ତ୍ରିପୁଣ୍ଡ୍ର ଲଗାଇ ଥିଲେ, ରୁଦ୍ରାକ୍ଷ-ମାଳା ପିନ୍ଧିଥିଲେ, ଏବଂ ନମଃ ଶିବାୟ ବୋଲି ଛପା ଯାଇଥିବା ଉତ୍ତରୀୟଟିଏ ଦେହରେ ପକାଇଥିଲେ । ସେହି ସମୟରେ ଜଣେ ବୈଷ୍ଣବ ଭକ୍ତ ଗାଧୋଇବା ପାଇଁ ଆସିଲେ । ଶ୍ରୀକୃଷ୍ଣଙ୍କଠାରେ ଧ୍ୟାନମଗ୍ନ ଥିବା ସେହି ଶୈବ ଭକ୍ତ ଜଣକ ବଡ଼ ପାଟି କରି ପଢ଼ୁଥିଲେ । ଶ୍ରୀକୃଷ୍ଣଙ୍କ ଲୀଳାସମ୍ବନ୍ଧ ବିଷୟ ପଢ଼ିବା ସମୟରେ ତାଙ୍କର ରୋମାଞ୍ଚ ଜାତ ହେଉଥିଲା, ଆଖିରୁ ଝର ଝର ହୋଇ ଲୁହର ଧାର ବହି ଯାଉଥିଲା । ଏହା ଦେଖି ସେହି ବୈଷ୍ଣବ ବୈଷ୍ଣବ କ୍ରୋଧ କରି କହିଲେ, "ଆରେ, ଧାଇଁ ଆସ, ଧାଇଁ ଆସ । ଶୈବ ହୋଇଗଲା ଯେ ବୈଷ୍ଣବ ହୋଇଗଲା ।" ଗାଧୋଉଥିବା ଦଶ-କୋଡ଼ିଏ ଜଣ

ସଶଙ୍କ ଭକ୍ତ ଆସି ସେଠି ଏକାଠି ହୋଇଗଲେ । ସେମାନେ ସମସ୍ତେ ପଚାରିବାକୁ ଲାଗିଲେ, "ଭାଇ ! କ'ଣ ଚୋରି ହୋଇଗଲା ? ତୁମର କାଏ କ'ଣ ଚୋରାଇ ନେଲା ।"

ସେଉଠୁ ସେହି ବୈଷ୍ଣବ ଜଣକ କହିଲେ—"ଶ୍ରୀମଦ୍ ଭାଗବତଂ ପୁରାଣତିଳକଂ ତଦ୍ ବୈଷ୍ଣବାନାଂ ଧନମ୍' ଶ୍ରୀମଦ୍ ଭାଗବତ ତ ବୈଷ୍ଣବମାନଙ୍କର ଧନ । ଯାହାକୁ ଏହି ଶୈବ ଜଣକ ଚୋରାଇ ନେଇଯାଉଛି । ସେ ବଡ଼ ପ୍ରେମର ସହିତ ଏହାର ରସାସ୍ୱାଦନ କରୁଛି । ଯାହାକୁ ଦେଖିଲେ ତ ଜଣେ ଶୈବ ବୋଲି ବୋଧ ହେଉଛି ।"

ଏହା ଶୁଣି ସେହି ଶୈବ ଭକ୍ତ ଜଣକ ଗଦ ଗଦ ହୋଇ ଉଠିଲେ ଏବଂ କହିଲେ—"ବନ୍ଧୁବର ! ପ୍ରକୃତରେ ମୁଁ ଜଣେ ଶୈବ । ଏଥିରେ ସନ୍ଦେହର ଅବକାଶ ନାହିଁ । ମୁଁ ରୁଦ୍ରାକ୍ଷ ଧାରଣ କରିଛି, ଏବଂ ତ୍ରିପୁଣ୍ଡ୍ର ଲଗାଇଛି । ମୁଁ ଶିବ ମନ୍ତ୍ରର ଦୀକ୍ଷା ନେଇଛି । ମୁଁ ପଞ୍ଚାକ୍ଷରୀ ମନ୍ତ୍ରର ଜପ ବି କରୁଛି । ଏତେ ସବୁ ହେବା ସତ୍ତ୍ୱେ ବି ଗୋପର ଶ୍ୟାମଳସୁନ୍ଦର ବାଳକଟିଏ ମୋର ଚିତ୍ତକୁ ଚୋରାଇ ନେଇଯାଉଛି । ଏଠାରେ ଲୁଗା ଚୋରି ହୋଇଯାଉଛି, ଲହୁଣୀ ଚୋରି ହୋଇଯାଉଛି, ପାପ ଚୋରି ହୋଇଯାଉଛି, ତଥା ମନ ବି ଚୋରି ହୋଇଯାଉଛି । ଜଣେ ବଡ଼ ଚୋର ଯେତେବେଳେ ମୋର ମନକୁ ଚୋରିକରି ନେଇ ଯାଉଛି, ସେତେବେଳେ ମୁଁ କାହିଁକି ବା ବୈଷ୍ଣବମାନଙ୍କ ଧନକୁ ଚୋରାଇ ନେଇ ନପାରିବି ? ବେଶରେ ମୁଁ ଅବଶ୍ୟ ଶୈବ ; କିନ୍ତୁ ମନ ଉପରେ ତ ମୋର ଅଧିକାର ରହିପାରୁନାହିଁ । ତାହାକୁ ମଦନମୋହନ ଚୋରାଇ ନେଇଗଲେ ।" ଭଗବାନ୍ ଚାଟକଥା ହେଉ ଏଠା, ଯଦି ମନ କେଉଁଠି ହଜିଯାଏ ଏବଂ ଶରୀର ଆଉ କେଉଁଠି ଅଲଗା ଜାଗାରେ ବନ୍ଦୀ ହୋଇ ରହେ ଏବଂ ବିରହର ଅଗ୍ନି ପ୍ରବଳ ହୋଇ ଉଠେ, ତେବେ ଏହି ଶରୀରର ବନ୍ଧନକୁ ଛାଡ଼ିବାକୁ ହିଁ ପଡ଼ିଥାଏ । ସ୍ଥୂଳ ଶରୀରକୁ ଛାଡ଼ିଦେଇ ସୂକ୍ଷ୍ମ ଶରୀରରେ ନିଜର ପ୍ରିୟତମଙ୍କ ପାଖକୁ ଯିବାଲାଗି ମଣିଷକୁ ବିବଶ ହେବାକୁ ପଡ଼ିଥାଏ ।

ସୂତ କହୁଥାନ୍ତି—"ଗୋପୀମାନେ ସମସ୍ତେ ଘରଦ୍ୱାର, କୁଟୁମ୍ବ ପରିବାରର ମାୟା-ମମତାକୁ ଛାଡ଼ିଦେଇ ଶ୍ରୀକୃଷ୍ଣଙ୍କ ପାଖକୁ ଧାଇଁଗଲେ । ଘରଲୋକେ ସେମାନଙ୍କୁ ବାଧା ଦେଲେ ମଧ୍ୟ ସେମାନେ ଅଟକିଲେ ନାହିଁ ; କିନ୍ତୁ ଏପରି ବି କେତେକ ଗୋପୀ ଥିଲେ, ଯେଉଁମାନେ ଘର ଭିତରେ ରହିଥିଲେ । ସେମାନେ ଘର ଭିତରେ ଦେହରେ ଅବଶ୍ୟ ଘରକାମ କରୁଥିଲେ ; କିନ୍ତୁ ସେମାନଙ୍କ ମନ ମଦନମୋହନଙ୍କ ମାଧୁରୀରେ ମଗ୍ନ ହୋଇ ରହୁଥିଲା । ମନରେ ସେମାନେ ନିରନ୍ତର ମଦନମୋହନଙ୍କୁ ହିଁ ଚିନ୍ତା କରୁଥିଲେ । ସହସା ସେମାନଙ୍କ କର୍ଣ୍ଣ-କୁହରରେ ମୁରଲୀର ମଧୁର ସ୍ୱନ ଶୁଭାଗଲା । ସେମାନେ ସମସ୍ତ କାମକୁ ଛାଡ଼ିଦେଇ ଯିବାପାଇଁ ଉଦ୍ୟତ ହୋଇଉଠିଲେ ।"

"ଯେଉଁମାନେ ବାପଘରେ ଥିଲେ, ସେମାନଙ୍କ ବାପା-ମାଆ, ଭାଇ-ବନ୍ଧୁ ପଚାରିଲେ, 'କୁଆଡ଼କୁ ଯାଉଛ ?'' ଯେଉଁମାନେ ଶ୍ୱଶୁର-ଘରେ ଥିଲେ ସେମାନଙ୍କ ଶାଶୂ, ନଣନ୍ଦ, ପତି ପଚାରିଲେ "କେଉଁଠାକୁ ଯିବାପାଇଁ ପ୍ରସ୍ତୁତ ହେଉଛ ?'' ସେସବୁ ପ୍ରଶ୍ନର ଉତ୍ତର ଥିଲା ଗୋଟିଏ—ଆମେ ଏହି ମୁରଲୀ-ସ୍ୱନ ଆସୁଥିବା ସ୍ଥାନଟିକୁ ଖୋଜି ବାହାର କରିବାପାଇଁ ବାହାରିଛୁ । ସେମାନେ ପଚାରିଲେ, 'ଅଚ୍ଛା, ଧର ତୁମେ ମୁରଲୀର ସ୍ୱର ଯେଉଁଠାରୁ ଆସୁଛି ତାହାକୁ ଖୋଜି ପାଇଗଲ । ତା'ହେଲେ ତୁମକୁ ସେଥିରୁ କ'ଣ ମିଳିଯିବ ? ମୃଗତୃଷ୍ଣାକୁ ଅନୁଭବ କରିବା ଲାଗି, ତୁମେ ବୈଶାଖ-ଜ୍ୟେଷ୍ଠ ମାସର ଦ୍ୱିପହର ବେଳାରେ ମରୁଭୂମିର ବାଲିରେ ବୁଲି ବୁଲି ଫେରିଆସ ଏବଂ ମୃଗତୃଷ୍ଣାକୁ ଦେଖିନିଅ, ତେବେ ସେଥିରେ କିବା ଲାଭ ହେବ ?''

ଏବେ ସେମାନେ ଏହାର କି ଉତ୍ତର ଦିଅନ୍ତି ? ଯାହାର ମନ ଯାହାଠାରେ ମୋହି ଯାଇଥାଏ, ତାକୁ ସେ ସୁଖ ଲାଗିଥାଏ । ବିଷାକ୍ତ ପୋକକୁ ବିଷ ଖାଇବାରେ ହିଁ ସୁଖ ଲାଗିଥାଏ । ଚକୋରର ନିଆଁ ଖାଇବାରେ ହିଁ ସୁଖ ଥାଏ । ସୁଖ ତ ହେଉଛି ମନର ବସ୍ତୁ । ମନରେ ମଣିଷ ଯାହାକୁ ମାନିନେଲା, ତାହାହିଁ ସୁଖ । ଆମ ମନ ତ ଶ୍ୟାମସୁନ୍ଦରଙ୍କଠାରେ ମୋହିଯାଇଛି । ଆମ ଆଖି ତ ସର୍ବଦା ତାଙ୍କର ଦର୍ଶନ ଲାଗି ଲାଳାୟିତ । ସେମାନେ ତ ବିମୁଖ ଲୋକ । ସେମାନେ ଏ କଥାକୁ କ'ଣ ବା ଜାଣିବେ ? ଆମେ ତ ତାଙ୍କ ପାଖକୁ ଯିବୁ, ଅବଶ୍ୟ ଯିବୁ । କେହି ଆମକୁ ବନ୍ଦ କରିପାରିବେ ନାହିଁ । ସେମାନେ ଅଭିଭାବକମାନଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାକୁ ଯାଇ ଏତିକି ଦୃଢ଼ତାର ସହିତ କହିଲେ, 'ଯାହା ହେଉନା କାହିଁକି, ସମସ୍ତେ ଯାଉଛନ୍ତି ; ତେଣୁ ଆମେ ଅବଶ୍ୟ ଯିବୁ । ଆମକୁ କେହି ଅଟକାଇ ରଖିପାରିବେ ନାହିଁ ।''

ଯାହାର ଯାହା ଉପରେ ଅଧିକାର ଥାଏ, ସେ ନିଜର ବିରୋଧୀ ଉତ୍ତର ଶୁଣିବାକୁ ଚାହିଁ ନଥାଏ । ସେ ସବୁବେଳେ ଏହି ଆଶା ରଖିଥାଏ ଯେ ତା'ର ଆଶ୍ରିତ ଲୋକ ତା'ର ସଙ୍କେତ ଅନୁସାରେ ଚାଲୁ, ତା'ର ଇଚ୍ଛା-ବିରୁଦ୍ଧ ଆଚରଣ ନକରୁ, ଏବଂ ତା'ର ଆଦେଶର ଉଲ୍ଲଙ୍ଘନ ନକରୁ । ଆଜି ନିଜ ବୋହୂ-ଝିଅମାନଙ୍କର ଏଭଳି ଅଧିକାର ସାବ୍ୟସ୍ତ କରି ଦେଉଥିବା ଉତ୍ତର ଶୁଣି ସେମାନେ ରାଗିଗଲେ । ସେମାନଙ୍କ ମନରେ ଈର୍ଷ୍ୟା-ଭାବ ଚେଇଁ ଉଠିଲା, ଆମେ ହେଉଛୁ ସେମାନଙ୍କଠାରୁ ବଡ଼ । ଆମେ ଏମାନଙ୍କୁ ରକ୍ଷା କରୁଛୁ, ଏବଂ ଭରଣ-ପୋଷଣ କରୁଛୁ । ଆମ ଆଗରେ ପୁଣି ଏମାନେ ଏଭଳି ବିରୁଦ୍ଧ ଆଚରଣ ଦେଖାଉଛନ୍ତି । ଏଭଳି ଧୃଷ୍ଟତାର ସହିତ ଉତ୍ତର ଦେଉଛନ୍ତି । ସେମାନଙ୍କର ଭାରି ରାଗ ଆସିଗଲା । ରାଗରେ ଭରି ଉଠି ସେମାନେ କହିଲେ, "ତୁମ୍ଭେମାନେ କେମିତି ଯିବ ଦେଖିବା ! ସମସ୍ତେ ଯାଉଛନ୍ତି ତ ଯାଆନ୍ତୁ । ସେମାନେ ସମସ୍ତେ କଳଙ୍କ ହୋଇଯାଇଛନ୍ତି ; କିନ୍ତୁ ଆମେ ତୁମ୍ଭମାନଙ୍କୁ କଳଙ୍କ ହେବାକୁ ଦେବୁ ନାହିଁ ।

ଜୋରଜବରଦସ୍ତି କରି ତୁମ୍ଭମାନଙ୍କୁ ଯିବାରେ ବାଧା ଦେବୁ । ଦେଖିବା ତୁମ୍ଭେମାନେ କେମିତ ଯାଉଛ ?" ଏହା କହି ସେମାନେ ଘରର କବାଟଗୁଡ଼ିକୁ ବନ୍ଦ କରିଦେଲେ ଏବଂ ସେଗୁଡ଼ିକରେ ତାଲା ପକାଇ ଦେବେ । ସେମାନେ ଘର ଭିତରେ ବନ୍ଦୀ ହୋଇ ରହିଗଲେ । ସେମାନଙ୍କ ପାଞ୍ଚଭୌତିକ ଶରୀର ଘରର ଚାରିକାନ୍ଥ ମଧ୍ୟରେ ସୀମିତ ହୋଇଗଲା ।"

ଏଥିରେ ସେମାନଙ୍କର ମର୍ମାନ୍ତିକ ଦୁଃଖ ହେଲା । ହାୟ ! ଆଜ ହିଁ ତ ଥିଲା ପ୍ରିୟତମଙ୍କ ସହିତ ମିଳିତ ହେବାର ସୁଦିନ । ଆଜ ହିଁ ଆମେ ମିଳନ-ସୁଖକୁ ଆସ୍ୱାଦନ କରିଥାନ୍ତୁ । ଅଜ ପୁଣି ଏଭଳି ବିଘ୍ନ ଆସି ଜୁଟିଲା ! ସେମାନେ ପୁଣି ଭାବିଲେ, 'ଶରୀରର ମିଳନ ତ ତୁଚ୍ଛ । ମନରେ ମିଳିତ ହେବା ହିଁ ସୁଖମୟ । ଘରର ଲୋକେ ଆମ ଶରୀରକୁ ଯିନା ଘରେ ବନ୍ଦ କରି ରଖିଛନ୍ତି, ମନ ଉପରେ ତ କେବଳ ମନମୋହନଙ୍କର ହିଁ ଅଧିକାର ରହିଛି । ଆମେ କ'ଣ ମନେ ମନେ ଯାଇକରି ତାଙ୍କ ସହିତ ମିଳିତ ହୋଇପାରିବା ନାହିଁ ?' ଭଗବାନ ନନ୍ଦନନ୍ଦନ ଥିଲେ ଭକ୍ତଭୟହାରୀ । ଏହା ଚିନ୍ତା କରି ସେମାନେ ନିଜର ଉତ୍କଟ ଭାବନାକୁ ତାଙ୍କ ପାଦ-ପଦ୍ମରେ ଲଗାଇଲେ । ଭାବନାର ତୀବ୍ରତାରେ ସେମାନେ ତନ୍ମୟ ହୋଇଗଲେ । ସେମାନେ ବାହ୍ୟ ପ୍ରପଞ୍ଚକୁ ସବୁଥା ଭୁଲିଗଲେ । ସଂସାର ପ୍ରତି ସେମାନେ ଆଖି ବନ୍ଦ କରିଦେଲେ । ଏବେ ସେମାନଙ୍କ ଆଗରେ କେବଳ ଜଣେ ଲୋକ ଶ୍ରୀକୃଷ୍ଣ ହିଁ ଥିଲେ । ସେମାନେ ତାଙ୍କୁ ଧ୍ୟାନ କରିବାରେ ବୁଡ଼ି ରହିଲେ । ସେମାନଙ୍କ ଚିତ୍ତ ଏକାଗ୍ର ହୋଇଗଲା । ସେମାନେ ଭାବ-ସମାଧିରେ ଲଗ୍ନ ରହିଲେ ।

ଶୌନକ ପ୍ରଶ୍ନ କଲେ—"କ'ଣ ଆଜ୍ଞା, ଭାବସମାଧି ତ କେବଳ ସେତିକିବେଳେ ଆସେ, ଯେତେବେଳେ ଶୁଭ ଓ ଅଶୁଭ, ଏହି ଦୁଇପ୍ରକାର କର୍ମର ବିନାଶ ଘଟିଥାଏ । ସେମାନଙ୍କ ଶୁଭ ଓ ଅଶୁଭ କର୍ମ ତ କିଛି ଶେଷ ହୋଇଥିବ ଏବଂ ଆଉ କିଛି ଶେଷ ହୋଇ ନଥିବ । ତେବେ ଶରୀରର ପ୍ରାପ୍ତି ହିଁ ନଥିବ ବା କପରି ? ଶରୀର ତ ଶୁଭ ଓ ଅଶୁଭ କର୍ମଗୁଡ଼ିକର ସମ୍ମିଶ୍ରଣର ଫଳ ।"

ସୂତ ଉତ୍ତର ଦେଲେ—"ହୃଦୟରେ ଯେତେବେଳେ ତୀବ୍ର ବିରହ-ବେଦନା ଜାତ ହୁଏ, ସେତେବେଳେ ସବୁ ଅଶୁଭ କର୍ମ ସେହି ବିରହ-ନିଆଁରେ ଜଳି ପାଉଁଶ ହୋଇଯାଏ । ବିରହ-ନିଆଁ ମନର ସମସ୍ତ ମଇଳାକୁ ଜାଳି ଦେଇଥାଏ । ସେମାନଙ୍କ ମନରେ ମନମୋହନଙ୍କ ସହିତ ମିଳିତ ହେବାର ଅଭିଳାଷ ଥିଲା । ସେହି ଅଭିଳାଷରେ ଆଘାତ ପାଇ ପ୍ରିୟତମଙ୍କ ଦୁଃସହ ବିରହ-ବେଦନାଦ୍ୱାରା ସେମାନଙ୍କ ମନରେ ଚୋଟିଏ ନିଆଁ ହୁରୁ ହୁରୁ ହୋଇ ଜଳି ଉଠିଲା । ସେଥିରେ ସେମାନଙ୍କର ସମସ୍ତ ସଞ୍ଚିତ ପ୍ରାରବ୍ଧ କର୍ମ ନଷ୍ଟ

ହୋଇଗଲା । ଏବେ ରହିଲା ଶୁଭ ପୁଣ୍ୟକର୍ମ । ସେହି ଧ୍ୟାନାବସ୍ଥାରେ ପ୍ରିୟତମଙ୍କ ପ୍ରେମଭରା ଆଲିଙ୍ଗନ ମିଳିବାଦ୍ୱାରା ଯେଉଁ ପରମ ଆନନ୍ଦ ହେଲା ତାହାଦ୍ୱାରା ସମସ୍ତ ଶୁଭକର୍ମ ବି ସମାପ୍ତ ହୋଇଗଲା । ଅଶୁଭ କର୍ମଗୁଡ଼ିକର କ୍ଷୟ ଦୁଃଖ ଭୋଗିବାଦ୍ୱାରା ହୋଇଥାଏ । ଯାହାକୁ ଯେତେ ଦୁଃଖ ମିଳିବ, ତାହାର ସେତେ ଅଶୁଭ କର୍ମଗୁଡ଼ିକ ନଷ୍ଟ ହୋଇଯିବ । ଶୁଭ କର୍ମଗୁଡ଼ିକର କ୍ଷୟ ସୁଖୋପଭୋଗଦ୍ୱାରା ହୋଇଥାଏ । ଯେ ଯେତେ ହିଁ ଅଧିକ ସୁଖ ଭୋଗ କରିବ, ତା'ର ସେତେବେଳି ଶୁଭ କର୍ମ ବା ପୁଣ୍ୟ କର୍ମ କ୍ଷୟ ହୋଇଯିବ । ଗୋପୀମାନଙ୍କ ପାଇଁ ଶ୍ରୀକୃଷ୍ଣଙ୍କ ବିରହଠାରୁ ବଳିକରି ଅନ୍ୟ କିଛି ଦୁଃଖ ନଥିଲା । ତାଙ୍କ ପ୍ରେମାଲିଙ୍ଗନଠାରୁ ବଳିକରି କୌଣସି ସୁଖ ନଥିଲା । ସେମାନଙ୍କୁ ସୁଖ ଓ ଦୁଃଖ ଏକା ସାଥିରେ ମିଳିଗଲା । ଏବେ ସେମାନଙ୍କର କିଛି ପାପ ବାକି ରହିଲା ନାହିଁ କିମ୍ବା କିଛି ପୁଣ୍ୟ ବି ବାକି ରହିଲା ନାହିଁ । ଯେପର୍ଯ୍ୟନ୍ତ ପାପ-ପୁଣ୍ୟର ଭୋଗ ସରିନାହିଁ, ସେ ପର୍ଯ୍ୟନ୍ତ ଏହି ଶରୀର ସ୍ଥିର ରହିଥାଏ । ଭୋଗଗୁଡ଼ିକର ସମାପ୍ତିରେ ଶରୀର ବି ସମାପ୍ତ ହୋଇଯାଇଥାଏ ।''

''ଯେତେବେଳେ ଗୋପୀମାନଙ୍କୁ ସେମାନଙ୍କ ଘର ଲୋକମାନେ ଅଟକାଇ ରଖିଲେ, ସେତେବେଳେ ସେମାନଙ୍କର ନନ୍ଦନନ୍ଦନଙ୍କଠାରେ ଭଗବଦ୍ ବୁଦ୍ଧି ନଥିଲା । ଯେତେବେଳେ ସେମାନଙ୍କୁ ବାଧା ଦେବାର ସାମର୍ଥ୍ୟ କାହାଠାରେ ନଥିଲା, ସେତେବେଳେ ଯାଇ ସେମାନଙ୍କ ଭଗବତ୍ ବୁଦ୍ଧି ହେଲା ଏବଂ ସେମାନେ ହୋଇଗଲେ ସାଧନାସିଦ୍ଧା ଗୋପୀ । ସାଧନା କରି କରି ଏହି ଜନ୍ମରେ ସେମାନଙ୍କୁ ଶ୍ରୀକୃଷ୍ଣ-ଦର୍ଶନର ସୌଭାଗ୍ୟ ମିଳିଥିଲା । ପୁଣି ବି ସେମାନଙ୍କ ଶରୀରରେ ପ୍ରାକୃତ ଅଂଶ କିଛିଟା ଅବଶିଷ୍ଟ ରହିଯାଇଥିଲା । ପ୍ରାକୃତ ଶରୀରରେ ତ ଶ୍ରୀକୃଷ୍ଣ ମିଳନ୍ତି ନାହିଁ । ସେତ ଦିବ୍ୟ ବପୁ । ସେ ସାଧକକୁ ଦିବ୍ୟ କରାଇ ଦେଇଥାନ୍ତି । ତେବେ ଯାଇ ସେ ମିଳିଥାନ୍ତି । ହଜାର ହଜାର ଜନ୍ମର ପୁଣ୍ୟ-ପ୍ରଭାବ ଦ୍ୱାରା ପୁଣ୍ୟକର୍ମଗୁଡ଼ିକର ଅନୁଷ୍ଠାନ ଫଳରେ ଦେବତାମାନଙ୍କ ପାଇଁ ଦୁର୍ଲଭ ଥିବା ଶ୍ରୀକୃଷ୍ଣଙ୍କ ଦର୍ଶନର ସୌଭାଗ୍ୟ ମିଳିଥିଲା ; କିନ୍ତୁ ପାପ-ପୁଣ୍ୟର ପ୍ରଭାବ ହେତୁ ସେମାନଙ୍କ ନିକଟରେ ଶ୍ରୀକୃଷ୍ଣଙ୍କର ଯଥାର୍ଥ ସ୍ୱରୂପ ସମ୍ପର୍କରେ ଜ୍ଞାନ ନଥିଲା । କଣେ ଲୋକର ମିଶ୍ରି ସଂପର୍କରେ କିଛି ଜ୍ଞାନ ନଥିଲେ ମଧ୍ୟ ଏହାର ସଂଯୋଗ ଫଳରେ ଯଦି ସେ ଏହାର ସଂସ୍ପର୍ଶରେ ଆସିଯାଏ, ତା'ହେଲେ ତାହା ତାକୁ ମିଠା ଲାଗିଥାଏ । ସେହିଭଳି ଭାବରେ ଶ୍ରୀକୃଷ୍ଣ ଯେ ହେଉଛନ୍ତି ପରାତ୍ପର ପ୍ରଭୁ; ପରଂବ୍ରହ୍ମ ପରମାତ୍ମା, ଏହି ଜ୍ଞାନ ସେମାନଙ୍କର ରହି ନଥିଲା । ସେମାନେ ତାଙ୍କର ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ପ୍ରତି ଥିଲେ ଅଭିଭୂତ । ସେମାନଙ୍କର ଲୌକିକ ପତିମାନେ ଅବଶ୍ୟ ଥିଲେ । ସେମାନଙ୍କ ଶରୀରକୁ ସେମାନେ ସେହି ପତିମାନଙ୍କ ଅଧୀନ କରି ଦେଇଥିଲେ ; କିନ୍ତୁ ମନକୁ ସେମାନେ ମନମୋହନଙ୍କ ହାତରେ ବିନା ମୂଲ୍ୟରେ ବିକି ଦେଇଥିଲେ । ତାଙ୍କୁ ହିଁ ନିଜର ପ୍ରକୃତ ସ୍ୱାମୀ ବୋଲି ମାନି ନେଇଥିଲେ ।

ଲୋକଦୃଷ୍ଟିରେ ଏହାକୁ ଜାର-ଭାବ କୁହାଯାଇଥାଏ । ନିଜ ସ୍ୱାମୀ ଥାଉଁ ଥାଉଁ ଅନ୍ୟ ପୁରୁଷକୁ ସ୍ୱାମୀ କରିବାକୁ କୁହାଯାଏ ଜାର-ଭାବ । ଲୋକ ଦୃଷ୍ଟିରେ ସେମାନଙ୍କର ଶ୍ରୀକୃଷ୍ଣଙ୍କଠାରେ ଜାରଭାବ ହିଁ ଥିଲା ; କିନ୍ତୁ ପରମାତ୍ମା ଶ୍ରୀକୃଷ୍ଣଙ୍କ ସଙ୍ଗ ହେବାଦ୍ୱାରା ସେମାନଙ୍କ ସମସ୍ତ ଶୁଭ ଅଶୁଭ କର୍ମର ବନ୍ଧନ ତୁଟିଗଲା । ବନ୍ଧନଗୁଡ଼ିକ ତୁଟିଯିବା ଫଳରେ ହିଁ ସେମାନେ ଏହି ପଞ୍ଚଭୂତରେ ନିର୍ମିତ ତ୍ରିଗୁଣମୟ ଶରୀରକୁ ଛାଡ଼ିଦେଲେ । ସେମାନେ ଦିବ୍ୟ ଦେହରେ ପରମପ୍ରିୟ ପ୍ରଭୁ ଶ୍ରୀନନ୍ଦନନ୍ଦନଙ୍କ ସହିତ ଯାଇ ମିଳିତ ହୋଇଗଲେ ।”

ସୂତ କହି ଚାଲିଛନ୍ତି—“ହେ ମୁନିମାନେ ! ଏହା ଶୁଣି ବିଷ୍ଣୁଭକ୍ତ ମହାରାଜ ପରୀକ୍ଷିତଙ୍କ ମନରେ ବଡ଼ ସନ୍ଦେହ ଆସିଲା । ସେ ମୋର ଗୁରୁଦେବ ଭଗବାନ ଶୁକଙ୍କୁ ହାତ ଯୋଡ଼ି ପଚାରିଲେ, ‘ହେ ପ୍ରଭୋ ! ଏହି ବ୍ରଜନାରୀମାନେ ତ ଶ୍ୟାମସୁନ୍ଦର ମଦନମୋହନ ନନ୍ଦନନ୍ଦନଙ୍କ ପରମ ଶ୍ରେଷ୍ଠ କାନ୍ତ ହିଁ ମାନୁଥିଲେ । ସେମାନଙ୍କ ଚିତ୍ତ ତ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ କାରଣରୁ ତାଙ୍କ ପ୍ରତି ଥିଲା ଆକୃଷ୍ଟ । ସେମାନଙ୍କର ତାଙ୍କଠାରେ ବ୍ରହ୍ମଭାବ ତ ନଥିଲା । ଏହି ସଂସାରର ବନ୍ଧନ ଖୁବ୍ ଦୃଢ଼ । ବ୍ରହ୍ମଭାବ ବିନା ଏହା ତୁଟେ ନାହିଁ । ସେମାନଙ୍କ ମନରେ ତ ସଂଯୋଗ-ସୁଖର କାମନା ଥିଲା । ସେମାନେ ଶ୍ରୀକୃଷ୍ଣଙ୍କୁ ପତି ଭାବରେ ଆଲିଙ୍ଗନ କରିବାପାଇଁ ଚାହୁଁଥିଲେ । ଏହାର ଅର୍ଥ ହେଲା, ସେମାନଙ୍କ ମନରେ କାମଭାବ ଥିଲା । ସେମାନେ ଥିଲେ ଗୁଣମୟୀ ବୁଦ୍ଧିଦ୍ୱାରା ଯୁକ୍ତ । ଏଭଳି ହୋଇ-କରି ବି ସେମାନେ ଏହି ଗୁଣପ୍ରବାହମୟ ସଂସାରରୁ କେମିତି ବା ମୁକ୍ତ ହୋଇଗଲେ ? ସେମାନେ କେଉଁଭଳି ସଞ୍ଚିତ କର୍ମ-ବନ୍ଧନରୁ ମୁକ୍ତ ହୋଇଗଲେ ? ସେମାନଙ୍କଠାରେ କାମଭାବ ଥାଇ ମଧ୍ୟ ସେମାନଙ୍କୁ ସୁଦୁର୍ଲଭ ପରମପଦ କେମିତି ବା ମିଳିଲା ?”

ସୂତ କହୁଥାନ୍ତି—“ହେ ମୁନିମାନେ ! ମୋର ଗୁରୁଦେବ ବଡ଼ ଉଲ୍ଲାସର ସହିତ ତନ୍ମୟ ହୋଇ ରାସ-ଲୀଳାର ବର୍ଣ୍ଣନା କରୁଥିଲେ । ରାଜାଙ୍କର ଏହି ଶୁଷ୍କ ପ୍ରଶ୍ନରେ ତାଙ୍କ କଥାର ପ୍ରବାହ ଅଟକିଗଲା । କୌଣସି ବକ୍ତା ଧାରାପ୍ରବାହଦ୍ୱାରା ତନ୍ମୟ ହୋଇ କୌଣସି ବିଷୟ ବୁଝାଉଥିବାବେଳେ ମଝିରେ କେହି କଣେ ଯଦି ବିତଣ୍ଡା ଯୁକ୍ତି କରି ତାଙ୍କୁ ଅଟକାଇଦିଏ, ତା’ହେଲେ ତାଙ୍କର ଭାବ-ଶୃଙ୍ଖଳା ତୁଟି ଯାଇଥାଏ । ସେ ଅବଶ୍ୟ ଏହାର ଉତ୍ତର ଦିଅନ୍ତି । କିନ୍ତୁ ତାଙ୍କ କହିବା ଭଙ୍ଗୀରେ ପୂର୍ବ ପରି ସେଭଳି ତନ୍ମୟତା ରହି ନଥାଏ । ଏହିପରି ଭାବରେ ଧାରାପ୍ରବାହ ଭଙ୍ଗୀରେ ବ୍ୟାଖ୍ୟାନ କରୁଥିବା ଭଗବାନ ଶୁକଙ୍କର ଧାରା ଅଟକିଗଲା । ସେ ଯେଉଁପରି ଭାବରେ ରାଜାଙ୍କ ଶଙ୍କାର ସମାଧାନ କଲେ ତାହାର ବର୍ଣ୍ଣନା ମୁଁ ପରେ କରିବି ।”

### ଛପ୍‌ପୟ

କୃଷ୍ଣବିରହ ଅତି ଦୁଃସହ ବେଦନା ଭଇ ତୀବ୍ର ଜବ ।
ସକଳ ଅଶୁଭ ମିଟିଗଲ୍ୟେ ଭାବମହିଁ ମଗ୍ନ ଭଇଂ ସବ ।।
ଭାବାଲିଙ୍ଗନ କରତ ମିଟେ ଶୁଭ ବନ୍ଧନ ଟୁଟେ ।
ତ୍ରିଗୁଣ ଦେହ ତଜି ଦଇଂ ଜଗତ୍‌କେ ବନ୍ଧନ ଛୁଟେ ।।
ଦିବ୍ୟ ଦେହତେଁ ତୁରତଇ କୃଷ୍ଣ ସଗ ସଙ୍ଗମ କରଲ୍ୟୋ ।
ଭୟହାରୀ ଭଗବାନନେ ଭବବନ୍ଧନ ତିନକୋ ହରଲ୍ୟୋ ।।



## ଶ୍ରୀକୃଷ୍ଣଙ୍କଠାରେ କାମଭାବ ମଧ୍ୟ କଲ୍ୟାଣପ୍ରଦ

ଉକ୍ତଂ ପୁରସ୍ତାଦେତତ୍ତେ ଚୈଦ୍ୟଃ ସିଦ୍ଧିଂ ଯଥାଗତଃ ।
ଦ୍ୱିପନ୍ନପି ହୃଷୀକେଶଂ କିମୁତାଧୋକ୍ଷଜପ୍ରିୟାଃ ।।

(ଶ୍ରୀ.ଭା. ୧୦ସ୍କ, ୨୯ଅ, ୧୩ ଶ୍ଳୋ)

### ଛପ୍‌ପୟ

କହେଂ ପରୀକ୍ଷିତ ପ୍ରଶ୍ନେ ! କାନ୍ତ ତେ ମାନତ ହରିକୁଁ ।
ବ୍ରହ୍ମଭାବ ନହିଁ ଭଲ୍ୟୋ ମିଲୀ ଚୈଦ୍ୟ ଶୁଭଗତ ଜନକୁଁ ।।
ଉପଟି କହେଂ ଶୁକ—ଭୂପ । ଭୂଲ କା ବାତ ଗଲ୍ୟୋ ତୁମ ।
ଭଇ ମୁକ୍ତି ଶିଶୁପାଲ ବତାଇ ବାତ ପ୍ରଥମ ହମ ।।
ବୈରଭାବ କର ତର ଗଲ୍ୟୋ, କରଲ୍ୟୋ କୃଷ୍ଣମହିଁ ପ୍ରେମ ନହିଁ ।
ସଦା ବସତ ହୃଦୟ ଶ୍ୟାମଘନ ତେ ଗୋପୀ ଚୈଦ୍ୟ ନହିଁ ତରହିଁ ।।

ପାତ୍ର ଓ ଅନୁପାନର କାରଣରୁ ଫଳ ହିଁ ଭିନ୍ନ ହୋଇ ଯାଇଥାଏ । ସ୍ୱାତିର ଜଳବିନ୍ଦୁ ହାତୀର ମୁଣ୍ଡରେ ପଡ଼ିଲେ ତାହା ଗଜମୁକ୍ତା ରୂପ ଧରିନେଇଥାଏ ଏବଂ ନଈରେ ପଡ଼ିଲେ ପିଇବା ପାଇଁ ଉପଯୁକ୍ତ ପାଣି ହୋଇଯାଇଥାଏ । ଯଦି ତାହା ସମୁଦ୍ରରେ ପଡ଼େ,

ତେବେ କ୍ଷାର ପାଣି ହୋଇଯାଇଥାଏ । ଏହା ହେଲା ପାକ ଭେଦରେ ଫଳ । ଏହିପରି ଭାବରେ ଅନୁପାନ ଓ ଯଥାର୍ଥ ପ୍ରୟୋଗରେ ମଧ୍ୟ ପରିଣାମ ଭିନ୍ନ ହୋଇଥାଏ । ଯଦିଓ ବିଷର ଧର୍ମ ହେଉଛି ମାରିବା, ତଥାପି ଯାହାର ଶରୀରକୁ ଜଙ୍ଗମ ବିଷ ଘାରିଛି, ତା'କୁ ଯୁକ୍ତିଯୁକ୍ତ ପରିମାଣରେ ସ୍ଥାବର ବିଷ ଦିଆ ଯାଇଥାଏ । ତାହା ଜଙ୍ଗମ ବିଷର ପ୍ରଭାବକୁ ନଷ୍ଟ କରି ଦେଇଥାଏ ଏବଂ ଜୀବନ-ଦାନ କରିଥାଏ । ବିଷର କାମ ହେଉଛି ମାରିଦେବା; ଅଥଚ ତାହା ପାକ ବିଶେଷରେ ପ୍ରୟୋଗ ହେବାଫଳରେ ଅମୃତର କାମ କରିଥାଏ । ତୁମେ ଓଷଧକୁ ଜାଣିକରି ଖାଅ ଅଥବା ଅଜାଣତରେ ଖାଅ, ତାହା ନିଶ୍ଚିତ ଭାବରେ ଗୁଣ କରିବ । ଯେଉଁ ରୋଗୀ ପାଇଁ ବିଷ-ଓଷଧ ଦରକାର, ତା'କୁ ଯଦି କୌଣସି ସଂଯୋଗ ଫଳରେ ତାହା ମିଳିଗଲା, ଏବଂ ସେ ଅଜାଣତରେ ତାହାକୁ ଖାଇଦେଲା, ତାହା କ'ଣ କାମ କରିବ ନାହିଁ ? ହଁ ନିଶ୍ଚୟ କରିବ । ଏହି ସମ୍ପର୍କରେ ଗୋଟିଏ ଯଥାର୍ଥ ଘଟଣା ଅଛି ।

ଜଣେ ବଡ଼ ନାମଜାଦା ବୈଦ୍ୟ ଥିଲେ । ତାଙ୍କ ପାଖକୁ ଜଣେ ଅସାଧ୍ୟ ରୋଗୀ ଗଲା । ସେ ଥିଲା ଗରିବ । ବୈଦ୍ୟ ତା' ରୋଗର ନିଦାନ କରି କହିଲେ—"ଭାଇ ! ତୁମ ରୋଗ ଅସାଧ୍ୟ ।"

ସେ ଦୀନ-ଭାବ ଦେଖାଇ କହିଲା—"ବୈଦ୍ୟ ମହାଶୟ ! ଆପଣ ତ ସବୁ ରୋଗର ଚିକିତ୍ସା କରୁଛନ୍ତି । ଆପଣ ବଡ଼ ବଡ଼ ରୋଗର ଚିକିତ୍ସା କରୁଛନ୍ତି । ମୋ' ରୋଗପାଇଁ ଆପଣଙ୍କ ପାଖରେ କ'ଣ କିଛି ଓଷଧ ନାହିଁ ।"

ବୈଦ୍ୟ ଉତ୍ତର ଦେଲେ—"ଭାଇ ! ଓଷଧ ନାହିଁ କାହିଁକି ? କାଳକୁ ବାଦ ଦେଲେ ଅବଶିଷ୍ଟ ସବୁ ରୋଗପାଇଁ ଓଷଧ ଅଛି ; କିନ୍ତୁ ତୁମ ଓଷଧ ତିଆରି କରିବାରେ ଡେରି ହେବ । ସାପକୁ ମାରି ତାହାର ଫଣା ଉପରେ ଆଖୁ ଲଗାଇବାକୁ ପଡ଼ିବ । ତାହା ଖାଇବାଦ୍ୱାରା ତୁମେ ଭଲ ହୋଇଯିବ । ଏଥିପାଇଁ ଛଅ ମାସ ସମୟ ଲାଗିବ ଏବଂ ତୁମେ କୌଣସିମତେ ଛଅ ମାସ ବଞ୍ଚିରହି ପାରିବ ନାହିଁ ; ତେଣୁ ମୋ' ପାଇଁ ବିବଶତା ଦେଖା ଦେଇଛି । ତୁମେ ଭଗବାନଙ୍କୁ ସ୍ମରଣ କର । ହରି-ସ୍ମରଣ ହିଁ ସବୁ ରୋଗର ପ୍ରକୃଷ୍ଟ ଔଷଧ ।"

ଏତେ ବଡ଼ ଜଣେ ବୈଦ୍ୟ ଏଭଳି କହିଦେଲେ ; ତେଣୁ ତା'ର ବିଶ୍ୱାସ ହୋଇଗଲା ଯେ ସେ ଆଉ ବଞ୍ଚିବ ନାହିଁ । ସେ ଜୀବନ ନେଇ ନିରାଶ ହୋଇ ଉଠିଲା ଏବଂ ନିଜ ଗାଁ ଆଡ଼କୁ ଚାଲିଲା । ଗାଁ କୂଳର ଅଞ୍ଚଳଟିଏ ଥିଲା । ସେଠି ବହୁତ ଆଖୁ ହେଉଥିଲା । ବାଟରେ ତା'କୁ ଭୋକ ଲାଗିଲା । ସେଠି ଆଖୁ କିଆରିଟିଏ ଥିଲା । ସେ ସେହି କିଆରିରୁ ଗୋଟିଏ ବଡ଼ ମୋଟାସୋଟା ଆଖୁଗଛ ଉପାଡ଼ିଲା ଏବଂ ସେଠାରେ ବସି ତାହାର ରସକୁ ଚୋଷିବାକୁ ଲାଗିଲା । ତାହାକୁ ଚୋଷି ସାରିବାପରେ ସେ ଦୁଇଥର ଝାଡ଼ା ଗଲା । ଶୌଚ

ମାର୍ଗ ଦେଇ ତାହାର ସବୁ ରୋଗ ବାହାରିଗଲା । ତା'ର ଦେହ ସୁସ୍ଥ ଓ ନୀରୋଗ ହୋଇଗଲା । ସେ ଫେରି ଆସି ପୁଣି ବୈଦ୍ୟଙ୍କ ପାଖକୁ ଗଲା ଏବଂ କହିଲା—"ବୈଦ୍ୟ ମହାଶୟ ! ଏବେ ଆପଣ ମୋ'ର ନାଡ଼ୀ ଦେଖନ୍ତୁ ତ ।" ବୈଦ୍ୟ ପୁଣିଥରେ ତା'ର ଶରୀରର ପରୀକ୍ଷା କରିବା ଉତ୍ତାରୁ କହିଲେ—"ତୁମେ ଭଲ ହୋଇ ଯାଇଛ । ତୁମେ କ'ଣ ଖାଇଥିଲ ?"

ସେ କହିଲା—"ମହାରାଜ ! ମୁଁ କିଛି ହିଁ ଖାଇ ନାହିଁ, ଗୋଟିଏ କ୍ଷେତରୁ ଆମ୍ବ ଗଛଟିଏ ଉପାଡ଼ି ଖାଇଛି ।"

ବୈଦ୍ୟ କହିଲେ—"ଚାଲ, ମତେ ତାହା ଦେଖାଅ ।"

ସେ ବୈଦ୍ୟଙ୍କୁ ସାଥିରେ ନେଇକରି ଗଲା ଏବଂ ଜାଗାଟି ଦେଖାଇଲା । ବୈଦ୍ୟ ସେହି ଜାଗାଟିକୁ ଖୋଳାଇଲେ । ସେଠାରେ ଗୋଟିଏ ମଲା କଳାସାପ ବାହାରିଲା ଏବଂ ତାହାର ଫଣା ଉପରେ ହିଁ ଏହି ଆମ୍ବ ଗଛଟି ଉପୁଜି ଥିଲା । ବୈଦ୍ୟ କହିଲେ—"ତୁମର କୌଣସି ପୂର୍ବଜନ୍ମର ପୁଣ୍ୟ ଥିଲା । ଭଗବାନ ନିଜେ ହିଁ ତୁମପାଇଁ ଔଷଧ ପଠାଇ ଦେଲେ ।"

ଏବେ ଆପଣମାନେ ବିଚାରନ୍ତୁ, ସେହି ରୋଗୀ ଜଣକ ତ ଜାଣି ଜାଣି ସେହି ଆମ୍ବ ଖାଇ ନଥିଲା । ତା'କୁ ଭୋକ ହେଲାରୁ ସେ ତାହା ଖାଇଥିଲା । ସାଧାରଣ ଆମ୍ବଗଛ ହୋଇଥିଲେ ତାହାଦ୍ୱାରା ତା'ର ଆହୁରି ଅଧିକ କ୍ଷତି ହୋଇଥାନ୍ତା । ତାହା କିନ୍ତୁ ସାପର ଫଣା ଉପରୁ ଉପୁଜିଥିଲା ; ତେଣୁ ତାହାଦ୍ୱାରା ତା'ର ରୋଗ ଦୂର ହୋଇଗଲା । ଆଉ କୌଣସି ଲୋକର ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ଗୋପୀମାନେ ଯଦି ତାଙ୍କୁ ଭଲ ପାଉଥାନ୍ତେ, ତା'ହେଲେ ତାହାଦ୍ୱାରା ସେମାନଙ୍କୁ ପାପ ଲାଗିଥାନ୍ତା । ଯଦି ସେମାନେ ଦୈବଯୋଗରେ ଅଜାଣତରେ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ତହିଁରେ ମଜ୍ଜିଗଲେ, ତା'ହେଲେ କ'ଣ ସେମାନଙ୍କର ସଂସାର-ବନ୍ଧନ ରହିପାରିବ ?

ସୂତ କହି ଚାଲିଥାନ୍ତି—"ହେ ମୁନିମାନେ ! ମୋର ଗୁରୁ ଭଗବାନ ଶୁକଦେବ ଯେତେବେଳେ ନିରବଚ୍ଛିନ୍ନ ଧାରାରେ ରାସପଞ୍ଚାଧ୍ୟାୟୀର କଥା କହି ଚାଲୁଥିଲେ, ତାହା ମଝିରେ କରି ରାଜା ଶୁଷ୍କ ପ୍ରଶ୍ନଟି କରିଥିଲେ, 'ଗୋପୀମାନଙ୍କ ସଂସାର ହେଉଛି ଗୁଣପ୍ରବାହ ରୂପୀ । ସେମାନେ ଭଗବାନଙ୍କଠାରେ ବ୍ରହ୍ମଭାବ ନ ରଖି କପରି ବା ଏହି ସଂସାରରୁ ନିବୃତ୍ତି ପାଇଲେ ?' ରାଜା ଏହି ପ୍ରଶ୍ନ କରିବାରେ ଶ୍ରୀ ଶୁକଦେବ ବିରକ୍ତ ହୋଇ କହିଲେ, 'ହେ ରାଜା ! ମୁଁ ଏହି ବିଷୟରେ ତୁମକୁ ଆଗରୁ କହି ସାରିଛି । ପୁଣି ତୁମେ ଏହି ବିଷୟରେ ବାରମ୍ବାର ଶଙ୍କା କାହିଁକି କରୁଛ ?"

ରାଜା ଧୀର ସ୍ୱରରେ ହାତ ଯୋଡ଼ି କହିଲେ—"ହେ ପ୍ରଭୋ ! ମୋ'ର ଅଳ୍ପ ବୁଦ୍ଧି ମୁଁ ଭୁଲିଗଲି । କେଉଁ ପ୍ରସଙ୍ଗରେ ଆପଣ ଗୋପୀମାନଙ୍କର ଏହି ଭାବ ବିଷୟରେ ମତେ କହିଥିଲେ, ତାହା ମୋ'ର ମନେ ରହିଲା ନାହିଁ ।"

ଶ୍ରୀ ଶୁକଦେବ କହିଲେ—"ଗୋପୀମାନଙ୍କର କାହାଣୀ ତ ମୁଁ ସେ କଥା କହି ନଥିଲି ; କିନ୍ତୁ ପ୍ରହ୍ଲାଦଙ୍କ ଚରିତ ଆରମ୍ଭ କରିବା ସମୟରେ ଦେବର୍ଷି ନାରଦ ଓ ଧର୍ମ-ରାଜଙ୍କ ସମ୍ବାଦର ଆରମ୍ଭରେ ଶିଶୁପାଳର ମୁକ୍ତି ବିଷୟ ମୁଁ କହିଥିଲି । ଶିଶୁପାଳ ଥିଲା ଚେଦି ଦେଶର ରାଜା । ସେ ଥିଲା ଭଗବାନ ଶ୍ରୀକୃଷ୍ଣଙ୍କ ପିଉସୀ-ପୁଅ ଭାଇ । ତା'ର ଭଗବାନଙ୍କଠାରେ ତ କମା ବ୍ରହ୍ମଭାବ ନ ଥିଲା । ସେ ବରଂ ତାଙ୍କୁ ନିଜର ପ୍ରତିଦ୍ୱନ୍ଦ୍ୱୀ ଶତ୍ରୁ ବୋଲି ଜ୍ଞାନ କରୁଥିଲା ଏବଂ ସର୍ବଦା ତାଙ୍କୁ ଗାଳିଗୁଲଜ କରୁଥିଲା । ଜନ୍ମରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ସେ ଭଗବାନଙ୍କୁ ଖରାପ କଥା ହିଁ କହିଚାଲିଥିଲା ଏବଂ ତାଙ୍କ ବିଷୟରେ ଦ୍ୱେଷ-ଭାବ ରଖି ଚିନ୍ତା କରୁଥିଲା । କୌଣସି ଜଣେ ସାଧାରଣ ଲୋକ ପ୍ରତି ଦ୍ୱେଷ-ଭାବ ରଖିଥିଲେ ତା'କୁ ନରକରେ ପଡ଼ିବାକୁ ହୋଇଥାଏ ; କିନ୍ତୁ ସଂଯୋଗର କଥା ହେଲା ଏହି ଯେ, ସେ ଯାହାଙ୍କ ପ୍ରତି ଦ୍ୱେଷଭାବ ରଖିଥିଲା ସେ ଥିଲେ ପରଂବ୍ରହ୍ମ ପରମାତ୍ମା । କେହି ଅଜାଣତରେ ଅମୃତ ପିଇଦେଲେ ବି ଅମର ହୋଇଯିବ । ଠିକ୍ ସେହିପରି ଭଗବାନଙ୍କୁ ଦ୍ୱେଷଭାବ ରଖି ଚିନ୍ତା କରିବା ଫଳରେ ବି ତାକୁ ପରମପଦ ମିଳିଗଲା ।"

ମହାରାଜ ପରୀକ୍ଷିତ କହିଲେ—"ମହାରାଜ ! ଏହି ଗୋପୀମାନେ ତ ଭଗବାନଙ୍କ ପ୍ରତି ଦ୍ୱେଷ-ଭାବ ରଖି ନଥିଲେ ।"

ଶୁକଦେବ ହସି ହସି ଉତ୍ତର ଦେଲେ—"ଆରେ ଭାଇ ! ଦ୍ୱେଷଦ୍ୱାରା ଯେତେବେଳେ ଶିଶୁପାଳ ତରିଗଲା, ସେତେବେଳେ ଭଗବାନଙ୍କୁ ପ୍ରେମ କରିବାଦ୍ୱାରା ଗୋପୀମାନେ କାହିଁକି ବା ତରି ନ ଯିବେ ? ଗୋପୀମାନେ ଯେ କେବଳ ଭଗବାନଙ୍କୁ ପ୍ରେମ କରୁଥିଲେ, ସେ କଥା ନୁହେଁ । ସେହି ଭଗବାନ ନନ୍ଦନନ୍ଦନଙ୍କର ବି ସେମାନଙ୍କ ପ୍ରତି ଅତ୍ୟନ୍ତ ପ୍ରେମ ଥିଲା । ଗୋପୀଜନବଲ୍ଲଭ ବୃନ୍ଦାବନବିହାରୀ ବି ସେମାନଙ୍କୁ ପ୍ରେମ କରୁଥିଲେ । ଏବେ ଆପଣମାନେ କୁହନ୍ତୁ ତ ଦେଖି, ଯେଉଁମାନେ ଭଗବାନଙ୍କୁ ପ୍ରାଣଠାରୁ ଅଧିକ ଭଲପାଆନ୍ତି ଏବଂ ଭଗବାନ ମଧ୍ୟ ଯେଉଁମାନଙ୍କ ସହିତ ମିଳନ ଲାଗି ବ୍ୟାକୁଳ ହୋଇ ଉଠିଥାନ୍ତି, ସେମାନଙ୍କ ସଂସାର-ନିବୃତ୍ତିରେ କିଛି ସନ୍ଦେହ ରହି ପାରିବ କି ?"

ରାଜା ପଚାରିଲେ—"ହେ ପ୍ରଭୋ ! ମୁକ୍ତି ନିର୍ଗୁଣ ବ୍ରହ୍ମଙ୍କ ଜ୍ଞାନରେ ହୋଇଥାଏ । ଏହି ଗୋପୀମାନେ ତ ସଗୁଣ ସାକାର ଶ୍ରୀକୃଷ୍ଣଙ୍କୁ ପ୍ରେମ କରୁଥିଲେ ।"

ଏହା ଉପରେ ଉତ୍ତର ଦେବାକୁ ଯାଇ ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଯେଉଁ ଲୋକ ମୂର୍ଖ, ସେ ସଗୁଣ, ନିର୍ଗୁଣ ବିଷୟକୁ ନେଇ ବୃଥାରେ ବିତଣ୍ଡା କଥାବାର୍ତ୍ତା

କରିଥାଏ । ବାସ୍ତବରେ ଯେଉଁ ଭଗବାନ ହେଉଛନ୍ତି ଅବ୍ୟକ୍ତ, ଅପ୍ରମେୟ, ଓ ନିର୍ଗୁଣ, ସେ ମଧ୍ୟ ହେଉଛନ୍ତି ଗୁଣସମୂହର ଅଧିଷ୍ଠାନ । ଜୀବମାନଙ୍କ କଲ୍ୟାଣ ନିମିତ୍ତ ହିଁ ସେ ସଗୁଣ ରୂପରେ ଅବତାର ନେଇଥାନ୍ତି । ସଗୁଣ ଓ ନିର୍ଗୁଣ ମଧ୍ୟରେ ଚେଷ୍ଟା କିଛି ହିଁ ଭେଦ ନାହିଁ, ଅନ୍ତର ନାହିଁ । ସେହି ସର୍ବେଶ୍ୱରଙ୍କ ସହିତ କୌଣସି ପ୍ରକାର ହେଲେ ସମ୍ବନ୍ଧ ଯୋଡ଼ି ନେବାକୁ ପଡ଼ିବ । କୌଣସି ପ୍ରକାର ସମ୍ବନ୍ଧ ରଖିଥିବା ଲୋକମାନଙ୍କ ସଂସାର ଛିନ୍ନଭିନ୍ନ ହୋଇ ଯାଇଥାଏ ।"

ରାଜା ପଚାରିଲେ—"ହେ ପ୍ରଭୋ ! ଯେପର୍ଯ୍ୟନ୍ତ ମନରେ କାମ-ବାସନା ରହିଛି, କ୍ରୋଧ ରହିଛି, ଏବଂ ଲୋଭ ରହିଛି, ସେ ପର୍ଯ୍ୟନ୍ତ କିପରି ବା ଭଗବାନଙ୍କୁ ଲୋକ ପାଇପାରିବ ?"

ଶ୍ରୀ ଶୁକଦେବ ଅତି ଦୃଢ଼ ସ୍ୱରରେ କହିଲେ—"କିଛି କଥା ନାହିଁ । କାମ-ଭାବ ଅଛି ତ ତାହାକୁ ରହିବାକୁ ଦିଅ । କାମଭାବରେ ଏଇଆ ହୁଏ ନା, ସ୍ତ୍ରୀ ଚାହେଁ ସୁନ୍ଦର ପୁରୁଷକୁ ଏବଂ ପୁରୁଷ ଚାହେ ସୁନ୍ଦରୀ ସ୍ତ୍ରୀକୁ ? ସେହି କାମ ଭାବକୁ ନେଇ ମନୀଷ ଭଗବାନଙ୍କ ଠାରେ ଲଗାଇଦେଉ । ଭଗବାନଙ୍କ ବଳିକରି ଆଉ ସୁନ୍ଦର ପୁରୁଷ କିଏ ବା ହେବେ, ଯାହାଙ୍କୁ ଦେଖି ପଶୁ-ପକ୍ଷୀମାନେ ବି ମୋହିତ ହୋଇ ଯାଇଥାନ୍ତି ? ତାଙ୍କଠାରେ ପତିଭାବ ରଖି ମନିଷକୁ ତାଙ୍କ ବିଷୟ ନିରନ୍ତର ଚିନ୍ତା କରିବାକୁ ପଡ଼ିବ । ତାଙ୍କୁ ବଳିକରି କେହି ସୁନ୍ଦରୀ ସ୍ତ୍ରୀ ବି ନାହାନ୍ତି । ତାଙ୍କର ମୋହିନୀ ରୂପକୁ ଦେଖି କାମର ଶତ୍ରୁ ଜଟାଧାରୀ ଶିବ ମଧ୍ୟ ମୋହିତ ହୋଇ ଯାଇଥିଲେ । ସେଥିପାଇଁ କାମଭାବ ରଖିବାର କଥା ତ ତାହା ଭଗବାନଙ୍କ ପ୍ରତି ରଖାଯାଉ, ତାଙ୍କୁ ନିରନ୍ତର କାମ-ଭାବ ନେଇ ଚିନ୍ତା କରାଯାଉ । ଗୋପୀମାନେ ଏହି ଭାବଦ୍ୱାରା ତରି ଯାଇଥିଲେ ।"

ଯଦି ନିଜଠାରେ କ୍ରୋଧ-ଭାବ ଅଛି, ତେବେ ମନିଷମାନଙ୍କର ଅଳପ ବଳ; ତୁମେ ସେମାନଙ୍କ ପ୍ରତି କାହିଁକି ବା କ୍ରୋଧ-ଭାବ ରଖିବ ? ଭଗବାନ୍ ହେଉଛନ୍ତି ସର୍ବସମର୍ଥ ଓ ସର୍ବେଶ୍ୱର । ତୁମେ ନିଜ କ୍ରୋଧକୁ ତାଙ୍କ ପ୍ରତି ପ୍ରୟୋଗ କର । ହିରଣ୍ୟକଶିପୁ ଭଗବାନଙ୍କ ପ୍ରତି କ୍ରୋଧ କରିବାଦ୍ୱାରା ହିଁ ତରିଗଲା । ଏହିପରି ଭାବରେ ତୁମେ ଭୟ କରିବ ତ ଭଗବାନଙ୍କୁ ଭୟ କର । କଂସ ସର୍ବଦା ଭଗବାନଙ୍କୁ ହିଁ ଡର କରି ରହିଥିଲା । ଭୟର କାରଣରୁ ତା'କୁ ରାତିରେ ନିଦ ବି ହେଉ ନଥିଲା । ସେ ତାଙ୍କ କଥା ମନେ ମନେ ଭାବୁଥିଲା । ଭଗବାନଙ୍କୁ ଯେ ଯେଉଁ ରୂପରେ ଭଜନ କରିଥାଏ, ସେ ସେହି ରୂପ ଧରି ତା'ର ମନର ଇଚ୍ଛାଟିକୁ ପୂରଣ କରିଥାନ୍ତି । କଂସ କାଳ ରୂପରେ ତାଙ୍କୁ ଚିନ୍ତା କରୁଥିଲା । ଭଗବାନ କାଳ ହୋଇ ତା'କୁ ମାରିଦେଲେ । ଗୋପୀମାନେ ତାଙ୍କୁ ନିରନ୍ତର ପତିଭାବରେ ଭଜନ କରୁଥିଲେ । ଯେଉଁ ରୂପରେ ସେମାନେ ତାଙ୍କୁ ଭଜନ କରୁଥିଲେ, ସେ ସେହି ରୂପ ଧରି ସେମାନଙ୍କ ସହିତ ପ୍ରେମ କରିବାଦ୍ୱାରା ସେମାନଙ୍କର ସେହି ଇଚ୍ଛାଟିକୁ ପୂରଣ କଲେ ।

ପ୍ରହ୍ଲାଦ, ନାରଦ ଭକ୍ତ-ଭାବ ରଖି ପ୍ରେମର ସହିତ ତାଙ୍କ ବିଷୟରେ ଚିନ୍ତନ କରିଥିଲେ । ସେମାନଙ୍କୁ ଭଗବାନ ପ୍ରେମଦ୍ୱାରା କୃତାର୍ଥ କରାଇଲେ । କେହି କେହି ମୁନିଋଷିମାନେ ବ୍ରହ୍ମଭାବ ରଖି 'ମୁଁ ହିଁ ହେଉଛି ବ୍ରହ୍ମ' ଏହି ରୂପରେ ତାଙ୍କୁ ଚିନ୍ତନ କରିଥାନ୍ତି । ଭଗବାନ ସେମାନଙ୍କୁ ସେହି ଭାବରେ ହିଁ ମିଳିଥାନ୍ତି; ଐକ୍ୟ ରୂପରେ ହିଁ ନିଜକୁ ଦେଖାଇଥାନ୍ତି । ପାଣ୍ଡବ ଆଦି ତାଙ୍କୁ ବନ୍ଧୁ ଭାବକରି ଭଜନ କରୁଥିଲେ । ଭଗବାନ୍ ସେମାନଙ୍କୁ ସେହି ଭାବରେ କୃତାର୍ଥ କରାଇଲେ । ଭଗବାନଙ୍କଠାରେ ଯେ ଯେଉଁ ଭାବ ରଖିଥାଏ, ତାକୁ ସେହି ଭାବରେ ତନ୍ମୟତା ମିଳି ଯାଇଥାଏ । ଭଗବାନ୍ ହେଉଛନ୍ତି ସର୍ବସମର୍ଥ । ଏହା ହିଁ ହେଉଛି ସାର କଥା ।'

ମହାରାଜ ପରୀକ୍ଷିତ କହିଲେ—"ହେ ପ୍ରଭୋ ! ଯେପର୍ଯ୍ୟନ୍ତ ମନରେ କାମ କ୍ରୋଧାଦି ଶତ୍ରୁ ଅଛନ୍ତି, ସେପର୍ଯ୍ୟନ୍ତ ସଂସାର-ବନ୍ଧନ କିପରି ବା ତୁଟି ପାରିବ ?"

ଶ୍ରୀ ଶୁକଦେବ କହିଲେ—"ଆରେ, ପୁଣି ସେଇ କଥା । ଆରେ ରାଜ ! ଯଦି ଏହି କାମ, କ୍ରୋଧ ଭଗବାନଙ୍କଠାରେ ଲାଗିଯାଏ, ତେବେ ଶତ୍ରୁ ଆଉ କେଉଁଠି ରହିବ ? ଜଣେ ଯୁବକ ଅଛି । ତା' ପକ୍ଷରେ ଯୁବତୀ ଝିଅମାନଙ୍କ ଆଡ଼େ ଚାହିଁବା ପାପ । ସେହି ଝିଅମାନଙ୍କ ମଧ୍ୟରେ ତା'ର ଭାବୀ ସ୍ତ୍ରୀ ଅଛି । ତା' ଆଡ଼କୁ ମଧ୍ୟ ଚାହିଁବାଟା ସେ ପାପ ବୋଲି ବୁଝିଥାଏ ; କିନ୍ତୁ ସେହି ଝିଅ ସହିତ ତା'ର ଯଦି ବାହାଘର ହୋଇଗଲା, ଯେବେ ତାକୁ ତ୍ୟାଗ କରିବା ପ୍ରଶ୍ନ ଉଠିବ କୁଆଡ଼ୁ ? ଯେତେବେଳେ ଏହି କାମ, କ୍ରୋଧ ଆଦି ଭଗବାନଙ୍କଠାରେ ଲାଗିଥାଏ, ସେତେବେଳେ ଭଗବାନ ନିଜେ ସବୁ ସମ୍ଭାଳି ନେଇଥାନ୍ତି । ଭଗବାନଙ୍କ ବିଷୟରେ ତ ଶଙ୍କା କରିବା ଆଦୌ ଉଚିତ ନୁହେଁ । ସେ କରିବାପାଇଁ ଅଥବା ନ କରିବାପାଇଁ କିମ୍ବା ଅନ୍ୟ ପ୍ରକାର କରିବାପାଇଁ ସର୍ବସମର୍ଥ । ସେ ହେଉଛନ୍ତି ଯୋଗେଶ୍ୱରଙ୍କର ଈଶ୍ୱର । ସେ ହେଉଛନ୍ତି ଅଜନ୍ମା । ସେ ସମସ୍ତଙ୍କୁ ନିଜ ଆଡ଼କୁ ଟାଣିଆଣି ପାରିଥାନ୍ତି । ସେ ଯଦି ଚାହିଁବେ, ତେବେ ଆଜି ସାରା ଜଗତକୁ—କୀଟ, ପତଙ୍ଗ, ଜଙ୍ଗଲ, ପଥର ଆଦି ସମସ୍ତଙ୍କୁ ମୁକ୍ତ କରିଦେଇ ପାରିବେ । ପୁଣି ତାଙ୍କ ପାଇଁ ଜାର-ବୁଦ୍ଧିରେ ଚିନ୍ତା କରୁଥିବା ଗୋପୀମାନଙ୍କ ସଂସାର-ବନ୍ଧନକୁ ବିନାଶ କରିଦେବା କିବା ବଡ଼ କଥାଟାଏ ?"

ମହାରାଜ ପରୀକ୍ଷିତ ହାତ ଯୋଡ଼ି କହିଲେ—"ହେ ପ୍ରଭୋ । ମୋର ଯାହା ସନ୍ଦେହ ଥିଲା, ତାହାର ଏବେ ସମାଧାନ ହୋଇଗଲା । ଦୟା କରି ଏବେ ପରବର୍ତ୍ତୀ ପ୍ରସଙ୍ଗ କୁହନ୍ତୁ ।"

ସୂତ ଋଷି କହିଲେ—"ହେ ମୁନିମାନେ ! ରାଜା ପରୀକ୍ଷିତଙ୍କ ଏହି ପ୍ରଶ୍ନ ଫଳରେ ମୋ' ଗୁରୁଦେବଙ୍କ କହିବାର ପ୍ରଣାଳୀ ଏବେ କିଛି ବଦଳିଗଲା । ସେ ବିଷୟଟିକୁ ସ୍ପଷ୍ଟ ଭାବରେ ନ କହି କିଛିଟା ରହସ୍ୟମୟ ଢଙ୍ଗରେ ବର୍ଣ୍ଣନା କରିବାକୁ ଲାଗିଲେ । ଯେଉଁ ଗୋପୀମାନେ

ନିଜ ଘରର କାମଦାମ ଛାଡ଼ି ଦେଇ ମୁରଲୀର ଧ୍ୱନି ଶୁଣି ଶ୍ୟାମସୁନ୍ଦରଙ୍କ ପାଖକୁ ଯାଉଥିଲେ ସେମାନେ ତାଙ୍କ ପାଖରେ ଆସି ପହଞ୍ଚିଗଲେ। ସେମାନଙ୍କୁ ଦେଖି ଇଶ୍ବର ଶ୍ରୀକୃଷ୍ଣ ଯେଉଁଭଳି କଡ଼ା କଡ଼ା କଥାମାନ କହିଲେ, ତାହାର ବର୍ଣ୍ଣନ ମୁଁ ଆଗକୁ କରିବ।"

## ଛପ୍ପୟ

କାମ, କ୍ରୋଧ, ଭୟ, ନେହ, ନେହ, ସୌହାର୍ଦ୍ଦ ସବତେଂ।
କୈସେ ହୂ ହରି ଭଜୋ ଶୁଦ୍ଧ ବା ଅସଦ୍‌ସବତେଂ ॥
କେ ତନ୍ମୟ ହ୍ୱୈ ଂ ଜାୟ ତରହିଁ ଭବସାଗରତେ ନର ।
ଜୋ ଚହେ ସୋ କରହିଁ ସିଦ୍ଧିଦାତା ଦ୍ଵୈ ନଟବର ॥
ସଜନ୍ ! ହରିକୀ ଦୟାତେଂ ସଂଶୟ ସବ ମିଟି ଜାଇଗୀ ।
କକରୀ ଚକ୍କୁପୈ ଗିରୈ, କକରୀ ଇ କଟି ଜାଇଗୀ ॥



# ପ୍ରେମାଧିକ୍ୟର ପ୍ରସ୍ତାବ

ତା ଦୃଷ୍ଟ୍ବାନ୍ତିକମାୟାତା ଭଗବାନ୍ ବ୍ରଜଯୋଷିତଃ ।
ଅବଦଦ୍‌ବଦାତାଂ ଶ୍ରେଷ୍ଠୋ ବାଚଃ ପେଶୈର୍ବିମୋହୟନ୍ ॥
(ଶ୍ରୀ ଭା. ୧୦ ସ୍କ, ୨୯ ଅ ୧୮ ଶ୍ଳୋକ)

## ଛପ୍ପୟ

ନୃପ ବୋଲେ—ଗୁରୁଦେବ ! ରହୀ ଅବ ଶଙ୍କା ନାହୀଂ ।
ହରିକଥାଭ ସୋ କହେଂ ଗଇଂ ଗୋପୀ ପ୍ରଭୁପାହୀଂ ॥
ଶୁକ ବୋଲେ—ବ୍ରଜବାଲ ଗଇ ବ୍ରଜବଲ୍ଲଭ ଢିଙ୍ଗଜବ ।
ହ୍ୱୈ ଉପରତେଂ ନିଠୁର କପଟତେଂ ବୋଲେ ହରି ତବ ॥
ଆଓ, ବୈଠୋ, କୁଶଳ ସବ କରସ୍ୱୋକଷ୍ଟ କହୁ କାମତେଂ ।
ସଙ୍ଗ ଅଁଧେରୀ ବନ ବିକଟ, ଚୈଂ ଆଇଂ ନିଜଧାମତେଂ ॥

ଯାହାଙ୍କଠାରେ ଆମେ ଯେପରି ବ୍ୟବହାରର ଆଶା କରି ନଥାଉଁ, ସେ ଯଦି ଆମ ପ୍ରତି ସେପରି ବ୍ୟବହାର କରନ୍ତି, ତେବେ ଆମକୁ ମର୍ମାନ୍ତିକ କଷ୍ଟ ହୋଇଥାଏ । କେହି ଯଦି ଶ୍ରେଷ୍ଠ ପିଲାଟିଏ ଥାଏ, ତେବେ ଆମେ ତାକୁ 'ତୁ', 'ତୁମେ' କହି ଡାକଥାଉଁ । ଯଦି ଆମେ ତାକୁ 'ଆପଣ' ବୋଲି କହି କେବେ ଡାକଦେଉ, ତେବେ ସେ ବୁଝିନେବ ଯେ ଏହି ବ୍ୟବହାରରେ କିଛି କାଳିମା ରହିଯାଇଛି । ତା'ର ବୋଧହୁଏ କିଛି ଭୁଲ ହୋଇଯାଇଛି । 'ଆପଣ' ଶବ୍ଦଟି ଶୁଣି ସେ ଉଦ୍‌ଭ୍ରାନ୍ତ ହୋଇଉଠିବ । ବିପରୀତ ପକ୍ଷରେ ଯାହାଙ୍କୁ ଆମେ ସବୁବେଳେ 'ଆପଣ ବୋଲି ଡାକଥାଉଁ, ତାଙ୍କୁ ଯଦି କେବେ ଆମେ 'ତୁମେ' ବୋଲି କହିଦେଉ, ତେବେ ନିଜକୁ ଅପମାନିତ ବୋଲି ବୋଧ କରିବାକୁ ଲାଗିବେ ।

ଯାହାର ସବୁବେଳେ ଆମଠାରୁ ପ୍ରେମ ପାଇବାର ଅଧିକାର ଅଛି, ତାକୁ ଆମେ ଶୁଖିଲା କଥାଗୁଡ଼ିଏ କହିଲେ ତା' ପ୍ରତି ଅନ୍ୟାୟ ହୋଇଥାଏ ; କିନ୍ତୁ ପ୍ରେମରେ ପ୍ରାୟ ଅନ୍ୟାୟ କିଛି ଖରାପ ଚିନ୍ତା ହେତୁ ହୋଇ ନଥାଏ । ଏହା ହୋଇଥାଏ ବରଂ ପ୍ରେମକୁ ଅଧିକ ବଢ଼ାଇବା ଉଦ୍ଦେଶ୍ୟରେ । ମିଠେଇ ଖାଇବାଦ୍ୱାରା ମୁହଁ ମିଠାରେ ଭରପୂର ହୋଇଯାଇ-ଥାଏ । ମିଠା ପ୍ରତି କିଛି ଅନିଚ୍ଛା ଯଦି ଆସେ, ତେବେ ଆମେ କଡ଼ା କଡ଼ା ଦୁଇଟା ଲଙ୍କାମରିଚ ଖାଇ ଦେଉଥାଉଁ । ତାହାଦ୍ୱାରା କଟୁତା ହେତୁ ମୁହଁ ପୋଡ଼ିଯିବାକୁ ଲାଗିଥାଏ, ଆଖିରେ ପାଣି ଭରି ଉଠିଥାଏ ଏବଂ ଦେହ ଥରି ଉଠଥାଏ ; କିନ୍ତୁ ପୁଣି ଆମର ମିଠେଇ ଖାଇବାପାଇଁ ଇଚ୍ଛା ହୋଇଥାଏ । ଏଥିପାଇଁ ଅଧିକ ମିଠେଇ ଖାଇବାଲାଗି ମଝିରେ ଲଙ୍କାମରିଚ ଖାଇବାକୁ ପଡ଼ିଥାଏ । ପ୍ରେମର କଠୋର ରୂପାରେ ଅନନ୍ତ ପ୍ରେମ ଛପିକରି ରହିଥାଏ ।

ସୂତ କହୁଥାନ୍ତି—"ହେ ମୁନିମାନେ ! ଗୋପୀମାନେ ନିଜର ସର୍ବସ୍ୱ ଛାଡ଼ିଦେଇ ଶ୍ରୀକୃଷ୍ଣଙ୍କ ପାଖକୁ ଆସିଲେ । ସେମାନଙ୍କର ଆଶା ଥିଲା ଯେ ଶ୍ରୀକୃଷ୍ଣ ସେମାନଙ୍କୁ ଦେଖିବା ମାତ୍ରେ ହିଁ ହୃଦୟରେ ଆଲିଙ୍ଗନ କରିନେବେ ଏବଂ ଆତ୍ମୀୟତାର ବ୍ୟବହାର ଦେଖାଇବେ; କିନ୍ତୁ ସେମାନଙ୍କ ଆଶାର ଲତାଟି ଉପରେ ବରଫ ପଡ଼ିଲାପରି ଲାଗିଲା । ସେମାନଙ୍କ ଇଚ୍ଛା ଉପରେ କୁଆ-ପଥର ବର୍ଷା ହେବାକୁ ଲାଗିଲା । ଶ୍ରୀକୃଷ୍ଣ ସେମାନଙ୍କୁ ଦେଖି ଆତ୍ମୀୟତାର ବ୍ୟବହାର ପ୍ରଦର୍ଶନ କଲେ ନାହିଁ । ଜଣେ ଅପରିଚିତ ଲୋକ ଯେଉଁଭଳି ଶିଷ୍ଟାଚାରର ବ୍ୟବହାର ଦେଖାଇଥାଏ, ସେ ସେହିଭଳି ବ୍ୟବହାର ଦେଖାଇଲେ । ସେମାନେ ତ କୁଣ୍ଠିତ ହୋଇଥିଲେ । ସେମାନଙ୍କୁ ଦେଖି ଜଣେ ଅପରିଚିତ ଲୋକ ଭଳି ଶ୍ରୀକୃଷ୍ଣ କହିଲେ, 'ଆସନ୍ତୁ, ଆସନ୍ତୁ । ଆପଣମାନଙ୍କୁ ସ୍ୱାଗତ । ମହାଶୟାମାନେ ! କୁହନ୍ତୁ କେଉଁଥିପାଇଁ ଏମିତି କଷ୍ଟ କଲେ ? ଆପଣମାନଙ୍କର ମୋ'ଠାରେ କିଛି କାମ ଯଦି ଥାଏ, ତେବେ ତାହା କହନ୍ତୁ । ଆପଣମାନଙ୍କର ଯାହା ଆଦେଶ ହେବ, ତାହା କରିବାପାଇଁ ମୁଁ ସର୍ବଦା ତତ୍ପର ଅଛି ।"

ଏହି କଥା ଶୁଣି ଗୋପୀମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । ସେମାନେ ଭାବିବାକୁ ଲାଗିଲେ, 'ଶ୍ରୀକୃଷ୍ଣ ଆମ ସାଥିରେ ଯେ ଏଭଳି ଶିଷ୍ଟାଚାରପୂର୍ଣ୍ଣ ବ୍ୟବହାର ଦେଖାଇବେ, ଏ କଥା ଆମେ ସ୍ୱପ୍ନରେ ମଧ୍ୟ ଭାବି ନଥିଲୁ । ଆମେ ବରଂ ଭାବିଥିଲୁ ଶ୍ରୀକୃଷ୍ଣ ହସ ହସ ମୁହଁରେ ରହିଥିବେ । ତାଙ୍କ ସ୍ୱଭାବ ତ ହେଉଛି ବିନୋଦପୂର୍ଣ୍ଣ । ସେ କିଛି ପ୍ରେମର ଆଳାପ କରିବେ' ; କିନ୍ତୁ କୃଷ୍ଣ ତ ସେମାନଙ୍କୁ କଷ୍ଟ ଦେବାପାଇଁ ଚାହୁଁଥିଲେ । ସେ ପୁଣି କହିଲେ, "ଆଗୋ ସୁନ୍ଦରୀମାନେ ! ଏଇ ଘୋର ରାତିରେ କୌଣସି ପୁରୁଷଙ୍କୁ ସାଥିରେ ନ ନେଇ ତୁମ୍ଭେମାନେ ଏକା ଏକା ଚାଲି ଆସିଛ । ତାହା ଦେଖି ମତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ବ୍ରଜରେ ସବୁ ଭଲ ତ ? କୌଣସି ଭୂତ, ପ୍ରେତ, ରାକ୍ଷସ ତ ସେଠାକୁ ଆସିନାହିଁ ? ଅଥବା ନିଆଁ, ପାଣି କିମ୍ବା ଚୋରର ଭୟ ସେଠାରେ ତ ପଡ଼ିନାହିଁ ? ଯଦି ଏଭଳି କିଛି ଘଟିଛି ଏବଂ ସେଥିପାଇଁ ମୋର ସହାୟତା ଦରକାର, ତା'ହେଲେ ସେ କଥା ମତେ କୁହ । ଯଦି ଏଭଳି କିଛି କଥା ନାହିଁ ଏବଂ ତୁମ୍ଭେମାନେ ଖାଲି ସେମିତି ଚାଲିଆସିଛ, ତେବେ ତୁମମାନଙ୍କର ଏଠାରେ ଆଉ ବେଶି ସମୟ ରହିବା ଉଚିତ ହେବନାହିଁ । କାରଣ ଏହି ବଣରେ ବାଘ, ସିଂହ ତଥା ଅନ୍ୟାନ୍ୟ ହିଂସ୍ରଜନ୍ତୁମାନେ ଏପଟ-ସେପଟ ହୋଇ ଘୂରି ବୁଲୁଛନ୍ତି । ଶୀଘ୍ର ହିଁ ତୁମ୍ଭେମାନେ ନିଜ ନିଜ ଘରକୁ ଫେରିଯାଅ ।"

ସେମାନେ 'ଫେରିଯାଅ' ବୋଲି ଶବ୍ଦ ଶୁଣିବାମାତ୍ରେ ହିଁ ଜଡ଼ ପାଲଟି ଗଲେ । ଶ୍ୟାମସୁନ୍ଦର ପରିହାସ କରୁ ନାହାନ୍ତି । ସେ ନିଷ୍ଠୁର ଅ ମକୁ ପ୍ରତାରିତ କରୁଛନ୍ତି । ସେ'ଙ୍କର ଆଜି କ'ଣ ହୋଇଗଲା ? ବାଛି ବାଛି କେତେ ସୁନ୍ଦର ଅଲଙ୍କାରମାନ ପିନ୍ଧି ଏବଂ ଅଙ୍ଗରାଗ-ମାନ ଲଗି ଆମ୍ଭେମାନେ ଆଶାର ସୁନ୍ଦର ମହଲଟିଏ ଗଢ଼ି ତୋଳିଥିଲୁ । ସେ ତାହାକୁ ଗୋଟିଏ ମାତ୍ର କଠୋର କଥା କହିବାଦ୍ୱାରା ଭାଙ୍ଗି ତଳେ ପକାଇ ଦେଲେ । ହାୟ ! ଯେଉଁ ସ୍ତ୍ରୀମାନେ ସରଳ ପ୍ରକୃତିର, ସେମାନଙ୍କ ପ୍ରାଣକୁ ବି ବାଧା ଲାଗିଥାଏ । ସେମାନେ କିଛି ହେଲେ କହିଲେ ନାହିଁ । ଶ୍ୟାମସୁନ୍ଦରଙ୍କ ଆଖି ଦୁଇଟି ଥିଲା ପ୍ରଫୁଲ୍ଲ କମଳ ଭଳି । ସେମାନେ ଖାଲି ସେହି ଦୁଇଟିକୁ ଚାହିଁ ରହିଥିଲେ । ସେହି ଦୁଇଟିରେ ଅନନ୍ତ ଅନୁରାଗ ଭରପୂର ରହିଥିଲା । ଅଥଚ ମୁହଁରୁ ସେ ଗରଳ ଢାଳୁଥିଲେ । ସେ ଗୋପୀମାନଙ୍କୁ ନୀରବ ଦେଖି ପୁଣି କହିଲେ—"ଦେଖ, ସ୍ତ୍ରୀମାନଙ୍କ ପକ୍ଷରେ ଏକାନ୍ତରେ ପରପୁରୁଷ ପାଖରେ ବେଶି ସମୟ ରହିବାଟା ଠିକଣା କଥା ନୁହେଁ । ତୁମ୍ଭେମାନେ କିଛି ନ କହି ଘରୁ ଚାଲି ଆସିଛ । ସେଠାରେ ତୁମମାନଙ୍କର ମାଆ, ବାପ, ପୁଅ, ଶାଶୁ, ଶଶୁର, ସଖା ସମ୍ବନ୍ଧୀ, ଭାଇ-ବନ୍ଧୁ, ତଥା ପତି ଅତି ତୁମମାନଙ୍କୁ ଖୋଜୁଥିବେ । ରାତିରେ ତୁମମାନଙ୍କୁ ନପାଇ ସେମାନେ ବଡ଼ ଚିନ୍ତିତ ହୋଇ ଉଠୁଥିବେ । ସେମାନଙ୍କୁ ତୁମ୍ଭେମାନେ ଚିନ୍ତାରେ ପକାଅ ନାହିଁ । ବୃଥାରେ ଏଠି ରହିବାରେ କିଛି ହିଁ କାମ ନାହିଁ । ବନ୍ଦା

କାରଣରେ ରାତିବେଳାରେ ବଣରେ ରହିବାକୁ ଶାସ୍ତ୍ରକାରମାନେ ମନା କରିଛନ୍ତି ; ତେଣୁ ତୁମ୍ଭେମାନେ ନିଜ ନିଜ ଘରକୁ ଫେରିଯାଅ ।”

ଗୋପୀମାନେ ଏବେ ବୁଝିଗଲେ ଯେ ସେ ଆମକୁ ଫେରିଯିବା ପାଇଁ କହୁଁଛନ୍ତି । ଏପର୍ଯ୍ୟନ୍ତ ସେ ଯେଉଁ ପ୍ରେମଭାବ ଦେଖାଉଥିଲେ, ତାହା ପ୍ରକୃତ ପ୍ରେମ ନଥିଲା; ତାହା ବରଂ ଥିଲା ପ୍ରେମର ଛଳନା । ସେ ଆମକୁ ଘୃଣା କରନ୍ତି । ହାୟ ! ସ୍ତ୍ରୀ-ଜାତିର କିଭଳି ଦୁର୍ଦ୍ଦଶା ! ସେମାନେ କିଛି ପାଟି ଫିଟାଇଲେ ନାହିଁ । ସେମାନେ ଭାବିବାକୁ ଲାଗିଲେ, “ଯାଙ୍କର ଏଭଳି ସୁନ୍ଦର ଓ ସୁ-ଲକ୍ଷଣ ମୂର୍ତ୍ତିଟିରୁ ଏହି ବିଷଭରା କଥା କପରି ବା ବାହାରି ପାରୁଛି । ଚନ୍ଦ୍ରଙ୍କଠାରୁ ତ କେବଳ ଅମୃତ ମିଳିବା କଥା । ଏହି ମୁଖ-ଚନ୍ଦ୍ରଟିରେ ବିଷ ବା କପରି ଝରି ଯାଉଛି ?”

ଶ୍ୟାମସୁନ୍ଦର କହିଲେ—‘ଅଚ୍ଛା, ମୁଁ ଏବେ ବୁଝିଗଲି । ଆଜିର ରାତିଟି ଭାରି ସୁନ୍ଦର । ବଣ-ଅଞ୍ଚଳରେ ଠିଆ ହୋଇ ଏହାକୁ ଦେଖିବାପାଇଁ ସମସ୍ତଙ୍କର ମନ ବଳାଏ । ସମ୍ଭବତଃ ସେହି ଲାଳସା ନେଇ ତୁମ୍ଭେମାନେ ଧାଇଁ ଆସିଛ । ସେହି ଲାଳସା ତ ତୁମ୍ଭମାନଙ୍କର ପୂରା ହୋଇଗଲା । ବୃନ୍ଦାବନର ଶୋଭା ଶାରଦୀୟ ସୁଷମା ଦ୍ୱାରା ବିକଶିତ ହୋଇ ଉଠିଛି । ଚନ୍ଦ୍ର-କିରଣ ନବ ପଲ୍ଲବସମୂହକୁ ରଞ୍ଜିତ କରି ଦେଇଛି । ଯମୁନା ଜଳର ଉଜ୍ଜ୍ୱଳ ତରଙ୍ଗର ସ୍ପର୍ଶ ତାହାକୁ ଶୀତଳ କରି ତୋଳିଛି । ମନ୍ଦ ସୁଗନ୍ଧିତ ପବନର ଗତିଦ୍ୱାରା ତାହା ପ୍ରକମ୍ପିତ । ତୁମ୍ଭେମାନେ ତ ଏହି ଶୋଭାକୁ ଦେଖିନେଇ ସାରିଲଣି । ତୁମ୍ଭମାନଙ୍କର ଶାରଦୀୟ ରଜନୀକୁ ଦେଖିବାର ସଫଳ ତ ପୂରା ହୋଇଗଲାଣି । ଏବେ ଆଉ ଡେରି କରିବା ଉଚିତ ନୁହେଁ । ଏବେ ତୁମ୍ଭେମାନେ ସମସ୍ତେ ମିଳିମିଶି ତୁରନ୍ତ ବ୍ରଜକୁ ଫେରିଯାଅ । ଘରଣୀମାନଙ୍କର ଏଇଠା ତ କାମର ସମୟ । ମତେ ଲାଗୁଛି, ତୁମ୍ଭେମାନେ ଗାଈ ବି ଦୁହିଁ ନାହଁ । ଯେଉଁ ବାଛୁରିଟିମାନ ଘାସ ଖାଇ ଜାଣି ନାହାନ୍ତି ଏବଂ ଖାଲି ଦୁଧ ଖାଇ ଶିଖିଛନ୍ତି, ସେମାନଙ୍କୁ ଏବେ ଭୋକ କରିବଣି । ସେମାନେ ହମା ରଡ଼ି ଛାଡ଼ୁଥିବେ । ଖାଲି ଦୁଧ ଖାଇ ବଞ୍ଚିଥିବା ପିଲାମାନେ ଭୋକରେ ଏବେ କାନ୍ଦୁଥିବେ । ତୁମ୍ଭେମାନେ ଯାଇ ସେମାନଙ୍କୁ ଦୁଧ ପିଆଇ ଶେଯରେ ଶୁଆଇ ଦିଅ । ତୁମ୍ଭମାନଙ୍କର ସ୍ୱାମୀମାନେ ଦିନସାରା କାମ କରି ଥକି ଯାଇଥିବେ । ତୁମ୍ଭେମାନେ ଯାଇ ସେମାନଙ୍କର ସେବା କର । ଏତିସବୁ ଘରଣୀମାନଙ୍କର କାମକୁ ଛାଡ଼ି ଦେଇ ତୁମ୍ଭେମାନେ କାହିଁକି ଏଠାକୁ ଚାଲି ଆସିଲ ?”

ଗୋପୀମାନଙ୍କର ସାହସ ତୁଟିଗଲା । ସେମାନେ କି ନିଷ୍ଠୁର ପୁରୁଷଙ୍କୁ ପ୍ରେମ କରି ବସିଲେ ! ଏତେ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ମଧ୍ୟରେ ପୁଣି ଏଭଳି ନିଷ୍ଠୁରତା ରହିପାରେ ? ଆମେ ଯଦି ଏ ବିଷୟରେ ପୂର୍ବରୁ ଜାଣିଥାନ୍ତୁ, ତା’ହେଲେ କେବେହେଲେ ଯାଙ୍କ ସହିତ ପ୍ରୀତି-ଭାବ ରଖି ନଥାନ୍ତୁ । କିନ୍ତୁ ଆମ ଗୋଡ଼ ତ ଖସି ଯାଇଛି । ଏବେ ଆମେ କ’ଣ କରିବୁ ? ସାପ ଛୁଚୁନ୍ଦ୍ରାକୁ ଗିଳି ପାରୁଛି ନା ବାନ୍ତି କରି ପାରୁଛି । ଆମର ଗତି ଠିକ୍ ସେହି

ସାପ-ଚୂର୍ଚ୍ଚୁନ୍ଦ୍ରା ଗଢ ଭଲ ହୋଇଗଲା । ସେ ବଢ଼ି ବଢ଼ି ଯାଉଛନ୍ତି ଏବଂ ଆମକୁ ଲୋଭଟାଇ ଦେବା ପାଇଁ ଲାଗି ରହୁଛନ୍ତି । ପ୍ରାଣ ଗ୍ଭଲିଗଲେ ମଧ୍ୟ ଆମେ ଏହିଠାରୁ ଟଳି ଯାଇପାରିବୁ ନାହିଁ । ଆମେ ଯାହାଙ୍କୁ ଥରେ ପ୍ରାଣ ସମର୍ପି ଦେଇଛୁ, ସବୁଦିନ ଲାଗି ତାଙ୍କର ହିଁ ହୋଇ ରହିଥିବୁ ।

ଶ୍ୟାମସୁନ୍ଦର ଅଟକି ନ ଯାଇ ପୁଣି କହି ଗ୍ଭଲିବାକୁ ଲାଗିଲେ । ସେ କହିଲେ—"ଏହା ହୋଇପାରେ ଯେ ତୁମ୍ଭମାନଙ୍କ ଗଭୀର ପ୍ରେମରେ ମୋ' ପ୍ରତି ଆସକ୍ତ ଏବଂ ସେଥିପାଇଁ ଏଠାକୁ ତୁମ୍ଭେମାନେ ଆସିଛ । ସେଥିରେ କିଛି କଥା ନାହିଁ । ମତେ ସ୍ନେହ କରିବାରେ କିଛି ଦୋଷ ନାହିଁ । କାରଣ ମୁଁ ତ ହେଉଛି ପରମ ସ୍ନେହାସ୍ପଦ । ସବୁ ପ୍ରାଣୀ ମତେ ସ୍ନେହ କରିଥାନ୍ତି ଏବଂ ସ୍ନେହ କରିବାକୁ ଗ୍ଭହିଁବା ହିଁ ଉଚିତ ; କିନ୍ତୁ ଦୂରରେ ଥାଇ ପ୍ରେମ କରିବା ଭଲ । ଅଧିକ ପାଖକୁ ଆସିବାଦ୍ୱାରା ପ୍ରେମରେ ଖଣ୍ଡ଼ିଆ ପଶି ଯାଇଥାଏ । ପୁଣି ଅଧର୍ମ ହେବାର ସମ୍ଭାବନା ମଧ୍ୟ ଦେଖା ଦେଇଥାଏ । ତୁମ୍ଭେମାନେ ସମସ୍ତେ ହେଉଛ ସତୀ ସ୍ତ୍ରୀ । ପତିଙ୍କ ସେବା ହିଁ ତୁମ୍ଭମାନଙ୍କର ଧର୍ମ । ସ୍ତ୍ରୀମାନଙ୍କ ପାଇଁ ପତି ହିଁ ହେଉଛନ୍ତି ପରମେଶ୍ୱର । ନିଷ୍କପଟ ଭାବରେ ପତି-ସେବା କରିବା ହେଉଛି ସେମାନଙ୍କ ପାଇଁ ପରମ ଆରାଧନା । ଶୁଦ୍ଧ ଭାବ ରଖି ପତିଙ୍କ ସେବା ତଥା ପତିଙ୍କ ସହିତ ସମ୍ପର୍କ ଥିବା ଦିଅର, ଦେଢ଼ଶୁର, ଶାଶୂ, ଶଶୁର ତଥା ଅନ୍ୟାନ୍ୟ ବନ୍ଧୁମାନଙ୍କର ସେବା କରିବା ଏବଂ ନିଜ ସନ୍ତାନମାନଙ୍କୁ ସ୍ନେହ ଦେଇ ଲାଳନ-ପାଳନ କରିବା ହେଉଛି ସ୍ତ୍ରୀମାନଙ୍କର ପରମ ଧର୍ମ । ପରପୁରୁଷକୁ ପ୍ରେମ କରିବା ସେମାନଙ୍କ ପାଇଁ ପାପ । ପତିଙ୍କୁ ତ୍ୟାଗ କରିବା ଆର୍ଯ୍ୟ-ନାରୀମାନଙ୍କ ପାଇଁ ବଡ଼ କଳଙ୍କର କଥା । କୌଣସି ଅବସ୍ଥାରେ ବି ପତିଙ୍କୁ ତ୍ୟାଗ କରିବା ଉଚିତ ନୁହେଁ । ସେ ହୁଏତ ଖୁବ୍ ରାଗୀ ଲୋକ ହୋଇଥାଇପାରନ୍ତି କିମ୍ବା ଦୁଷ୍ଟ ସ୍ୱଭାବର ହୋଇଥାଇ ପାରନ୍ତି ବା ଭାଗ୍ୟହୀନ ହୋଇଥାଇ ପାରନ୍ତି । ସ୍ତ୍ରୀମାନଙ୍କ ପକ୍ଷରେ ନିଜେ କଷ୍ଟ ସହି ସେ କଥାକୁ ସମ୍ଭାଳି ନିବାକୁ ପଡ଼ିବ । ଏଥିରେ ହିଁ ସେମାନଙ୍କର ବଡ଼େଇ, ସେମାନଙ୍କର ମହତ୍ତ୍ୱ । ପତିଙ୍କୁ ତ୍ୟାଗ କରିବା କଥା କେବେହେଲେ କଳ୍ପନା ହିଁ କରିବା ଉଚିତ ନୁହେଁ । ହଁ, ସେ ଯଦି ପତିତ ହୋଇଗଲେ, ଅଥବା ବିଧର୍ମୀ ହୋଇଗଲେ, ସେହି ଅବସ୍ଥାରେ କେବଳ ତାଙ୍କୁ ତ୍ୟାଗ କରିବାପାଇଁ ସ୍ତ୍ରୀକୁ ବିବଶ ହେବାକୁ ପଡ଼ିଥାଏ ।

ଗୋପୀମାନେ ଭାବିଲେ—"ଶ୍ୟାମସୁନ୍ଦର ହେଉଛନ୍ତି କାଲିକାର ପିଲା । ସେ ପୁଣି ଆମକୁ ଧର୍ମୋପଦେଶ ଦେବାପାଇଁ ଠିଆ ହୋଇଛନ୍ତି ? ଆମେ ଏଠାକୁ ଧର୍ମୋପଦେଶ ଶୁଣିବା ପାଇଁ କ'ଣ ଆସିଛୁ ? ଧର୍ମୋପଦେଶ ଶୁଣିବାପାଇଁ ତ ବଡ଼ ବଡ଼ ଦାଢ଼ିଥିବା ଅନେକ ବେଦଜ୍ଞ ବ୍ରାହ୍ମଣ ଅଛନ୍ତି । ଏଭଳି ତ୍ରୈଲୋକ୍ୟମୋହନ ସୌନ୍ଦର୍ଯ୍ୟରେ ଧର୍ମୋପଦେଶ ଶୁଣା କାନକୁ ବିଷ ଭଳି ବୋଧ ହେଉଛି ।"

ଶ୍ୟାମସୁନ୍ଦର ଅଭି କହିବା ବନ୍ଦ କଲେ ନାହିଁ । ସେ କହିଚାଲିବାକୁ ଲାଗିଲେ । ସେ କହିଲେ—"ଯେଉଁ ସ୍ତ୍ରୀମାନେ ହୋଇଛନ୍ତି ସତୀ-ସାଧ୍ୱୀ, କୁଳବଧୂ ଓ ପତିବ୍ରତା, ସେମାନଙ୍କ ପକ୍ଷରେ ଜାର-ସେବା ସର୍ବଥା ନିନ୍ଦନୀୟ । ଜାର ପୁରୁଷମାନଙ୍କ ପାଖରୁ ଆଜି ପର୍ଯ୍ୟନ୍ତ କିଏ ହେଲେ କ'ଣ ସୁଖ ପାଇପାରିଛି ? ଏହି ଜାର ପୁରୁଷମାନେ ଖୁବ୍ ସ୍ୱାର୍ଥପର । ଏମାନେ ନିଜ ସୁଖଟିକୁ ହିଁ ଦେଖିଥାଆନ୍ତି ? ଯେଉଁଠି ଏମାନଙ୍କର ସ୍ୱାର୍ଥ-ସିଦ୍ଧି ହୋଇଗଲା, ସେଠି ଆଉ ଏମାନେ କଥାବାର୍ତ୍ତା କରନ୍ତି ନାହିଁ । ପୁଣି ସ୍ତ୍ରୀ ଆଉ ଜଣେ ଜାର ପୁରୁଷକୁ ଖୋଜି ଥାଏ । ଏହିପରି ଭାବରେ ତା'କୁ କେବେହେଲେ ଶାନ୍ତି ମିଳେ ନାହିଁ । ବିଷୟ-ବାସନା କେବେହେଲେ ବି ଭୋଗଦ୍ୱାରା ଶାନ୍ତ ହୁଏ ନାହିଁ । ଜଳନ୍ତା ନିଆଁରେ ଘିଅ ଢାଳିଲେ ତାହା ଆହୁରି ଜୋର୍‌ରେ ଜଳିଉଠେ । ଠିକ୍ ସେହିପରି ଭାବରେ ଜାରମାନଙ୍କ ପାଖରୁ କେବେହେଲେ ଶାନ୍ତି ମିଳି ନଥାଏ, ତୃପ୍ତି ମିଳି ନଥାଏ ବରଂ ଅଶାନ୍ତି ଆହୁରି ଅଧିକ ବଢ଼ିଥାଏ । ଉପପତିର ସେବା କରିବାଦ୍ୱାରା ସ୍ତ୍ରୀକୁ ଇହଲୋକରେ କିମ୍ବା ପରଲୋକରେ କେଉଁଠି ହେଲେ ଶାନ୍ତି ମିଳି ନଥାଏ । ଇହଲୋକରେ ତାକୁ ଅପଯଶ ମିଳିଥାଏ ଏବଂ ପରଲୋକରେ ତାକୁ ନରକର ଯନ୍ତ୍ରଣା ଭୋଗିବାକୁ ପଡ଼ିଥାଏ । ଏହି କର୍ମ ଅତ୍ୟନ୍ତ ତୁଚ୍ଛ, ନୀଚ, ନିନ୍ଦନୀୟ, ଭୟଦାୟକ ଏବଂ କଷ୍ଟଦାୟକ ।"

ଗୋପୀମାନେ କହିଲେ—"ଯାହାଙ୍କୁ ଆମେ ଭଗବାନ୍ ବୋଲି ମାନୁଛୁ, ତାଙ୍କୁ ପ୍ରେମ କରିବାରେ କ'ଣ କିଛି ପାପ ଅଛି ? ତାଙ୍କୁ ଜାର ବୋଲି କହିବା କ'ଣ ଅନ୍ୟାୟ ନୁହେଁ ? ଭଗବାନଙ୍କୁ ପ୍ରେମ କରିବାରେ କ'ଣ କିଛି ଦୋଷ ଅଛି ? ଯେତେବେଳେ ଆମେ ତାଙ୍କୁ ସର୍ବସ୍ୱ ସମର୍ପି ଦେଇଛୁ, ସେତେବେଳେ ଆମ ମନରେ କାମଭାବ ଆସିଗଲେ ତାହାକୁ ଶାନ୍ତ କରିବାପାଇଁ ଆମେ ଆଉ କାହା ପାଖକୁ ଯିବୁ ? ସେହି ହିଁ ଆମ ଭାବକୁ ଶୁଦ୍ଧ-ପବିତ୍ର କରାଇ ଦେବେ । ଆମେ ତାଙ୍କୁ ତ କେବଳ ପ୍ରେମହିଁ କରୁଛୁ ।"

ଭଗବାନ ତଥାପି ନୀରବ ରହିଲେ ନାହିଁ । ସେ କହିଲେ—"ଅଚ୍ଛା, ମାନି ନିଆଯାଉ ଯେ ତୁମ୍ଭମାନଙ୍କର ମୋ' ପ୍ରତି ଅନନ୍ୟ ପ୍ରେମ ରହିଛି । ପ୍ରେମ ତ ଦେହର ମିଳନକୁ ଅପେକ୍ଷା କରି ନଥାଏ । ନିତିଦିନ ନୀତି-ନିୟମ ମାନି ମୋର ଗୁଣ-ଶ୍ରବଣ କର, ନିତିଦିନ ଦୁଇବେଳା ଆସି ଶ୍ରଦ୍ଧା ଓ ଭକ୍ତିର ସହିତ ମନ୍ଦେ ଦର୍ଶନ କର, ମୋର ମୂର୍ତ୍ତିକୁ ଧ୍ୟାନ କର ତଥା ନିତିଦିନ ମୋର ସୁମଧୁର ନାମକୁ କୀର୍ତ୍ତନ କର । ଏହିସବୁ କଥାରେ ମୁଁ ଏତେଦୂର ପ୍ରୀତ ହୁଏ ଯେ, ସେଭଳି ପ୍ରୀତି ମୋ' ପାଖରେ ଥିଲେ ହୋଇ ନଥାଏ । ପାଖରେ ବେଶି ସମୟ ରହିଲେ ତ ଅଶ୍ରଦ୍ଧା ଆସି ଯାଇଥାଏ । ଅତି ପରିଚୟରେ ଗୌରବ ନଷ୍ଟ ହେବାକୁ ଲାଗିଥାଏ ; ତେଣୁ ତୁମ୍ଭେମାନେ ନିଜ ନିଜ ଘରକୁ ଯାଅ ଏବଂ ସେଠାରେ ବସିରହି ମୋର ଧ୍ୟାନ, ମନନ ଓ କୀର୍ତ୍ତନ କର ।"

ସୂତ କହୁଥାନ୍ତି—"ହେ ମୁନିମାନେ ! ଭଗବାନଙ୍କର ଏଭଳି କଠୋର କଥା ଶୁଣି ଗୋପୀମାନଙ୍କ ମନରେ ଭାରି ଦୁଃଖ ହେଲା । ସେମାନେ ଥର ଥର ହୋଇ ଥରିବାକୁ ଲାଗିଲେ । ସେମାନଙ୍କ ହୃଦୟ କମ୍ପିତ ହୋଇ ଉଠିଲା । ସେମାନେ କଦଳୀ ପତ୍ର ଭଳି ଥରିବାକୁ ଲାଗିଲେ ।"

ଏହା ଶୁଣିବା ପରେ ଶୌନକ ପଚାରିଲେ—"ସୂତ ମହାଶୟ ! ଗୋପୀମାନେ ଥିଲେ ପରମ ଭକ୍ତିମତୀ । ଭଗବାନ ସେମାନଙ୍କୁ ଏଭଳି କଠିନ କଥା କାହିଁକି କହିଲେ ?"

ସୂତ କହିଲେ—"ଭଗବାନ ଏହି କଥାଗୁଡ଼ିକୁ କ'ଣ ତାଙ୍କ ଅନ୍ତର ତଳୁ କହୁଥିଲେ ? ସେଗୁଡ଼ିକ ଥିଲା କୃତ୍ରିମ ମନଗଢ଼ା କଥା । ତାଙ୍କ ଅନ୍ତରରେ ତ ପ୍ରେମ ଥିଲା ଭରପୂର । ଉପରକୁ କେବଳ ପ୍ରେମର ପରୀକ୍ଷା ନିମିତ୍ତ ସେ ଏଭଳି କଥା କହୁଥିଲେ ଏବଂ ଭାବୁଥିଲେ, ଦେଖେଁ, ଏମାନଙ୍କର ମୋ'ଠାରେ କେତେ ପ୍ରେମ ଅଛି ।"

ଶୌନକ କହିଲେ—"ସୂତ ମହାଶୟ ! ଗୋପୀମାନେ ତ ଶ୍ରୀକୃଷ୍ଣଙ୍କୁ ସେମାନଙ୍କର ସର୍ବସ୍ୱ ସମର୍ପି ଦେଇ ସାରିଥିଲେ । ଶ୍ରୀକୃଷ୍ଣ ତ ଥିଲେ ସର୍ବଜ୍ଞ । ସେ ତା'ହେଲେ ସେମାନଙ୍କ ପ୍ରେମରେ କାହିଁକି ସନ୍ଦେହ ପୋଷଣ କଲେ ? କୌଣସି ଜଣେ ଅନନ୍ୟପ୍ରେମୀ ଉପରେ ସନ୍ଦେହ ପୋଷଣ କରିବା ତ ପାପ । ଶ୍ରୀକୃଷ୍ଣ ତ ପ୍ରତ୍ୟେକ ପ୍ରାଣୀଙ୍କୁ ଜାଣନ୍ତି । ତାଙ୍କ ପକ୍ଷରେ ପରୀକ୍ଷା ନେବାର କ'ଣ ବା ଆବଶ୍ୟକତା ଥିଲା ?"

ସୂତ ହସି ହସି କହିଲେ—"ଶୌନକ ମହାରାଜ ! ଏହାକୁ ପରୀକ୍ଷା କୁହାଯାଏ ନାହିଁ । ଏହା ତ ପ୍ରେମର ସ୍ୱାଦ । ପ୍ରେମାସ୍ପଦ ନିଜ ପ୍ରେମୀଙ୍କ ମୁହଁରୁ ଗୋଟିଏ କଥା ଶୁଣିବା ପାଇଁ ସର୍ବଦା ସମୁତ୍ସୁକ ଥାଆନ୍ତି । ତାହା ହେଲା, 'ମୁଁ ଆପଣଙ୍କୁ ଯେଉଁଭଳି ଭାବରେ ଭଲପାଏ, ସେଭଳି ଭାବରେ ଆଉ କାହାକୁ ଭଲପାଏ ନାହିଁ । ଏହି କଥାଟିକୁ ଶୁଣିବା ପାଇଁ ସେ ନାନା ପ୍ରକାର ଶଙ୍କା କରିଥାଏ । ତା' ମୁହଁରୁ ଏହି କଥାଟି ଶୁଣି ତା'ର ହୃଦୟ ଆନନ୍ଦରେ ଫୁଲି ଉଠିଥାଏ । ତାହାଦ୍ୱାରା ପ୍ରେମ ଆହୁରି ଅଧିକ ବଢ଼ିଥାଏ । ଦୁଇ ପକ୍ଷରେ ଏହା ବଢ଼ିଥାଏ । ଏହି କଥାଗୁଡ଼ିକ ପ୍ରେମକୁ ଦିନୁ ବଢ଼ାଇଥାଏ, ତାହାକୁ କମାଇ ନଥାଏ । ପ୍ରେମର ବୀଜ ହୃଦୟରେ ବୁଣା ଯାଇଥାଏ । ଆଖି-ପାଣିରେ ଧୋଇ ଆଣିବାରେ ତାହା ଅଙ୍କୁରିତ ହୋଇଥାଏ । ପ୍ରେମର ମିଠା ମିଠା କଥାଗୁଡ଼ିକଦ୍ୱାରା ସେହି ଅଙ୍କୁର ବଢ଼ିଥାଏ, ପଲ୍ଲବିତ ଓ ପୁଷ୍ପିତ ହୋଇଥାଏ । ପ୍ରେମର ଗତି ବଡ଼ କୁଟିଳ । ହେ ମୁନିମାନେ ! ପ୍ରେମୀ ବ୍ୟତୀତ ଅନ୍ୟ କେହି ଏହି କଥାକୁ ବୁଝିପାରେ ନାହିଁ । ଏହା ହେଉଛି ରହସ୍ୟର କଥା ।"

ଶୌନକ ହସି ହସି କହିଲେ—"ସୂତ ମହାଶୟ ! ଏବେ ଆପଣଙ୍କ ପ୍ରେମୀଙ୍କର ଯେଉଁ ଅଙ୍କାବଙ୍କା କଥା, ତାହାର ଅର୍ଥ ଆମେ ବା କିପରି ବୁଝିପାରିବୁ ? ଆମେ ତ ଜ୍ଞାନ ଲୋକ ।"

ସୂତ କହିଲେ—"ମହାରାଜ ! ଆପଣ ସବୁ ଜାଣନ୍ତି । ଆପଣ ହିଁ ପ୍ରକୃତ ପ୍ରେମ କରି ଜାଣନ୍ତି । ଏହି ସଂସାରର ଲୋକମାନେ ବିଷୟ ବାସନାର ଘେରବାଡ଼ରେ ଲଟପଟ ହେଉଛନ୍ତି । ସେମାନେ ପ୍ରେମ କରିବା କ'ଣ ବା ଜାଣିବେ ? ପ୍ରେମ ତ ବିଷୟଶୂନ୍ୟ ଚିତ୍ତରେ ହିଁ ଜନ୍ମ ନେଇଥାଏ ।"

ଶୌନକ କହିଲେ—"ସୂତ ମହାଶୟ ! ଏହିସବୁ କଥା ଛାଡ଼ନ୍ତୁ; ଆଗିଲା କଥା କ'ଣ ଶୁଣାନ୍ତୁ । ସେହି ବିରହୀ ଗୋପୀମାନଙ୍କର ଦଶା କ'ଣ ହେଲା ? ସେମାନେ କ'ଣ କହିଲେ ?"

ସୂତ କହିଲେ—"ଅଚ୍ଛା, ମହାରାଜ ! ତା'ହେଲେ ଶୁଣନ୍ତୁ । ଏବେ ଗୋପୀମାନଙ୍କର ଦଶା କଥା ମୁଁ ଶୁଣାଉଛି ।"

### ଛପ୍ପୟ

ଅନଳ ଅନିଳ ଜଳ ଜନିତ କଷ୍ଟ କଛୁ ବ୍ରଜମହିଁ ଅୟୋ ?
ଚୌଂ କଣି ବେଲ ସରତ ପୁଲିନମହିଁ ଚଉ ଚଗୟୋ ?
ଶୀତଳ ମନ୍ଦ ସୁଗନ୍ଧ ପବନ ପଲ୍ଲବ ବନ ବିକସିତ ।
ଅଥବା ସୁଷମା ଶାରଦୀୟ ଅବଲୋକନକେ ହିତ ।।
ଆଇଂ ଅଥବା ନେହବଶ, ପ୍ରେମ କରହିଁ ମୋମେଂ ସବହିଁ ।
ପତିବ୍ରତ ପାଳନ କରହୁ, ଜାଓ ନିଜ ନିଜ ଘର ଅବହିଁ ।।



## ବ୍ରଜାଙ୍ଗନାମାନଙ୍କ ବିବଶତା

ମୈବଂ ବିଭୋଽର୍ହତି ଭବାନ୍ ଗଦିତୁଂ ନୃଶଂସମ୍,
ସନ୍ତ୍ୟଜ୍ୟ ସର୍ବବିଷୟାଂସ୍ତବ ପାଦମୂଲମ୍ ।
ଭକ୍ତା ଭଜସ୍ୱ ଦୁରବଗ୍ରହ ମା ତ୍ୟଜାସ୍ମାନ୍ ।
ଦେବୋ ଯଥାଦିପୁରୁଷୋ ଭଜତେ ମୁମୁକ୍ଷୂନ୍ ।।

(ଶ୍ରୀ ଭା ୧୦ମ ୨୯ଅ, ୩୧ ଶ୍ଳୋକ)

## ଛପ୍‌ପୟ

ସୁନତ ଶ୍ୟାମକେ କଠିନ ବଚନ ବ୍ରଜବନିତା ବୋଇଂ ।
ଭୟୋ ହୃଦୟ ଦୁଖ ଦୁସହ ସକଲ ତନ ମନ ସୁଧି ଖୋଇଂ ।।
ନୟନନ ଜଳସତ ନୀର କାଲିମା କାଜରକୀ ସଁଗ ।
ତରକ ହୃଦୟପେ ଗିରତ ମିଲତ କୁଚକୁଙ୍କୁମକେ ରଁଗ ।।
ଗଙ୍ଗା ଯମୁନାକେ ସାରସ, ଉମଡ଼ତ ହ୍ୟୁ ମୁଖ ମଲିନ ଅତି ।
ବନେଂ ଭଲେଂ ହୀଂ କଠିନ ହରି, ହମରୀ ତୋ ଓଏ ଏକ ଗତି ।।

ସାରା ଜୀବନ ଧରି ଏଠାରେ ପ୍ରେମକୁ ରକ୍ଷା କରିବା ହେଉଛି ବଡ଼ କଠିନ କାର୍ଯ୍ୟ । ତାହା ସବୁବେଳେ ଏକନିଷ୍ଠ ହୋଇ ରହି ନଥାଏ । ଏଥିରେ ସାତ୍ତ୍ୱିକ, ରାଜସିକ ଓ ତାମସିକ ଢେଉମାଳା ଉଠୁଥାଏ, ପଡ଼ୁଥାଏ । ପତି-ପତ୍ନୀଙ୍କର ଯେଉଁ ସାରା ଜୀବନ-ନିର୍ବାହ ହୋଇଥାଏ, ଏଥିରେ ଧର୍ମର ତଥା ପରଲୋକର ଭୟ ରହିଥାଏ । ସାରା ସଂସାର ହେଉଛି ପରିବର୍ତ୍ତନଶୀଳ । ସଂସାରରେ କୌଣସି ଗୋଟିଏ ହେଲେ ବସ୍ତୁ ସ୍ଥାୟୀ ହୋଇ ରହେ ନାହିଁ । କାହାର ବୃଦ୍ଧି ଘଟିଥାଏ; ପୁଣି କାହାର କ୍ଷୟ ଘଟିଥାଏ ; କିନ୍ତୁ ପ୍ରତିଟି ମୁହୂର୍ତ୍ତରେ ପ୍ରେମ ବଢ଼ି ବଢ଼ି ଚାଲିଥାଏ । ଏଥିରେ କ୍ଷୟ ହେବାର ନାମ-ଗନ୍ଧ ନଥାଏ । ଯାହାର କ୍ଷୟ ହୁଏ, ତାହା ପ୍ରେମ ନୁହେଁ । ତାହା ହେଉଛି ମୋହ ଏବଂ ବିଷୟ ପ୍ରତି ଆକର୍ଷଣ । ପ୍ରେମର ପ୍ରତିଟି ମୁହୂର୍ତ୍ତରେ ପରୀକ୍ଷା ହେଉଥାଏ । କଣ୍ଟା ଅଟକି ଯିବା ପରେ ଯେଉଁ ପାଣି ବହିଯାଇଥାଏ, ତାହାର ଗତିଥାଏ ଖୁବ୍ ଚଞ୍ଚଳ । ପ୍ରେମ କ୍ଷେତ୍ରରେ ଜଣେ ପ୍ରେମାସ୍ପଦ ହୋଇଥାନ୍ତି ଏବଂ ପ୍ରେମ କରିବା ଲୋକ ପ୍ରେମୀ ହୋଇଥାଏ । ପ୍ରେମାସ୍ପଦ ଯାହାମାନେ ତାହା ବକିଯାଇ ପାରନ୍ତି, ଯାହାମାନେ ତାହା କହିଯାଇ ପାରନ୍ତି । ପ୍ରେମୀ ସେଥିପ୍ରତି ଧ୍ୟାନ ଦେଇ ନଥାଏ । ସେ ନିଜ ମନରେ କେବେହେଲେ ଭାବେ ନାହିଁ ସେ (ପ୍ରେମାସ୍ପଦ) ଏଭଳି କଥା କାହିଁକି କହିଲେ । ତା' ମନରେ ତ ସବୁବେଳେ କେବଳ ଗୋଟିଏ ମାତ୍ର ଚିନ୍ତା ଥାଏ, ତା'ର ପ୍ରିୟତମ କେପରି ତା'ପ୍ରତି ଅପ୍ରସନ୍ନ ନ ହୁଅନ୍ତୁ । ଯଦିଓ ସେ ଅପ୍ରସନ୍ନ ହୋଇ ଉଠନ୍ତି, ତେବେ ତାଙ୍କୁ ଛାଡ଼ିକରି ଅନ୍ୟ କାହାକୁ ପ୍ରେମ କରିବାଟା ହୋଇପାରିବ ନାହିଁ । ଗୋଡ଼ ହାତ ଧରି, କନ୍ଦାକଟା କରି କୌଣସିମତେ ତାଙ୍କୁ ମନାଇ ନେବାକୁ ପଡ଼ିବ, ତାଙ୍କୁ ତା'ପ୍ରତି ପ୍ରସନ୍ନ କରାଇବାକୁ ପଡ଼ିବ ଏବଂ ଶହ ଶହ ଶପଥ ଖାଇ ତାଙ୍କ ସନ୍ଦେହକୁ ଦୂର କରାଇବାକୁ ହେବ ।

ସେ ହେଉଛନ୍ତି ତା'ର ଗତି ଓ ମତି ସବୁକିଛି । ଏହି ବିଶ୍ୱାସ ତାଙ୍କ ମନରେ ଅଣାଇବାକୁ ହେବ । ତାଙ୍କୁ ଛାଡ଼ିଦେଲେ ତା'ର ଆଉ କିଛି ଆଶ୍ରା ନାହିଁ । ସେ ତାହାଣ

କରନ୍ତୁ ଅଥବା ପ୍ରତାରିତ କରନ୍ତୁ । ତାଙ୍କର ଏହି ପାଦଦୁଇଟିକୁ ଛାଡ଼ି ତା'ର ଆଉ ଅନ୍ୟ କୌଣସି ଗତି ନାହିଁ । ଏହି ଅନୁନୟ ବିନୟପୂର୍ଣ୍ଣ କଥା ପ୍ରେମରେ ଆହୁରି ଅଧିକ ମଧୁରତା ଆଣି ଦେଇଥାଏ । ହୃଦୟ ଆହୁରି ଅଧିକ ଦ୍ରବୀଭୂତ ହୋଇ ଉଠିଥାଏ । ଯେତେବେଳେ ମନ କମା ମାନେ ନାହିଁ ଏବଂ ଦୁଇପକ୍ଷରୁ ହୃଦୟ ଉଚ୍ଛୁଳି ଉଠେ, ସେତେବେଳେ ପ୍ରେମର ଉଦ୍ଭବ ହୋଇଥାଏ । ସଂସାରରେ ଏ କଥା ବି ଦେଖାଯାଏ ଯେ ଯେତେବେଳେ ପ୍ରେମ ସୀମାକୁ ଲଙ୍ଘି ଯାଏ, ସେତେବେଳେ ମନୁଷ୍ୟ ନାଚିବାକୁ ଆରମ୍ଭ କରିଦିଏ । ଯେଉଁମାନଙ୍କର ନାଚିବାଟା ହେଉଛି ବ୍ୟବସାୟ, ଯେଉଁମାନେ ନାଚ କରି ନିଜର ଜୀବିକା-ନିର୍ବାହ କରିଥାନ୍ତି, ସେମାନଙ୍କ କଥା ହେଉଛି ସ୍ୱତନ୍ତ୍ର । ଘିଅ ଓ ଚିନିରେ ତିଆରି ହୋଇଥିବା ମିଠେଇ ସୁନ୍ଦର ହୋଇଥାଉ, ଅସୁନ୍ଦର ହୋଇଥାଉ, ବଙ୍କା-ଟଙ୍କା ହୋଇଥାଉ, ସିଧା-ସଳଖ ହୋଇଥାଉ, ଗୋଲ-ଗୋଲ ହୋଇଥାଉ, କମ୍ବା ଲମ୍ବା ହୋଇଥାଉ, ତାହା ଖାଇବାକୁ ମିଠା ଲାଗେ । ଏହିପରି ଭାବରେ ପ୍ରେମର କଥାଗୁଡ଼ିକ କଠୋର ହୋଇଥାଉ, ସରସ ହୋଇଥାଉ, ସିଧା-ସଳଖ ହୋଇଥାଉ, କମ୍ବା ଆଉ ଯେ କୌଣସି ପ୍ରକାର ହୋଇଥାଉ, ତାହା ପ୍ରେମକୁ ହିଁ ବଢ଼ାଇ ଥାଏ ।

ସୂତ କହୁଥାନ୍ତି—"ହେ ମୁନିମାନେ ! ତାଙ୍କ ପାଖକୁ ଆସିଥିବା ଗୋପୀମାନଙ୍କୁ ଶ୍ରୀକୃଷ୍ଣ ଯେତେବେଳେ ପ୍ରଥମେ ଏଭଳି ନୀରସ ଓ କଠୋର କଥା କହିଲେ, ସେତେବେଳେ ଗୋପୀମାନଙ୍କର ସମସ୍ତ ଉତ୍ସାହ ମଉଳିଗଲା । ସେମାନଙ୍କ ମୁଖମଣ୍ଡଳ ମଳିନ ଦିଶିଲା । ସେମାନଙ୍କ ଆଶାର ଲତାଟିମାନ ଝାଉଁଳିଗଲା ଏବଂ ପ୍ରେମାଲିଙ୍ଗନର ଆଶା ନିରାଶାରେ ପରିଣତ ହୋଇଗଲା । ସେମାନେ ଅଗାଧ ଓ ଦୁସ୍ତର ଚିନ୍ତା-ସମୁଦ୍ରରେ ବୁଡ଼ିଗଲେ ।"

"ହେ ମୁନିମାନେ ! ସେତେବେଳେ ପ୍ରେମ ପିପାସାରେ ଅଧୀର ହୋଇଥିବା ସେହି ନାରୀମାନଙ୍କର ଦଶା ଥିଲା ଖୁବ୍ ଦୟନୀୟ । ଅନ୍ୟ କେହି ସହୃଦୟ ଲୋକ ଏହା ଦେଖିଲେ ତା'ର ହୃଦୟ ବିଦାରି ହୋଇଯିବ । ସେମାନେ ଶୋକର କାରଣରୁ ଉଷ୍ଣ ନିଃଶ୍ୱାସ ନେଉଥିଲେ । ସେମାନଙ୍କ ଅଧର ଓ ଓଷ୍ଠ ଥିଲା ପାଚିଲା କଇଁଚକାକୁଡ଼ି ଭଳି କୋମଳ । ନାସିକାର ଉଷ୍ଣ ଉଚ୍ଛ୍ୱାସ ହେତୁ ତାହା ଶୁଖି ଝାଉଁଳି ପଡ଼ିଗଲା । ପାଣି ନଥିଲେ ଫୁଟନ୍ତା ପଦ୍ମଫୁଲ ମଉଳି ଯାଇ ତଳକୁ ମୁହଁ କରି ନଇଁ ପଡ଼ିଥାଏ । ଠିକ୍ ସେମିତି ଦୁର୍ଦ୍ଦଶା ହେତୁ ସେମାନେ ମୁହଁଟିମାନ ତଳକୁ କରି ନିଜନିଜର ଭୂଇଁ ଅଡ଼େ ନିରୀକ୍ଷଣ କରୁଥିଲେ । ଭୂଇଁ ଆଡ଼େ ସେମାନେ କାହିଁକି ନିରୀକ୍ଷଣ କରୁଥିଲେ ? ତାହାର କାରଣ ହେଲା, ପୃଥିବୀ ହେଉଛି ସ୍ତ୍ରୀଲୋକ । ସ୍ତ୍ରୀ ହିଁ ସ୍ତ୍ରୀର ବେଦନାକୁ ଅନୁଭବ କରିପାରେ । ପୁରୁଷ ତ ହେଉଛି ସ୍ୱାର୍ଥପର । ସେ ପ୍ରେମ ବି କରିଥାଏ ସ୍ୱାର୍ଥ ଦୃଷ୍ଟିରୁ ସେ ପୁଣି ଏଭଳି କଠୋର କଥାମାନ କହିଥାଏ ଯେ କୋମଳାଙ୍ଗୀ ଅବଳାମାନେ ତାହା ସହିବାପାଇଁ ସମର୍ଥ ହୋଇ ପାରନ୍ତି ନାହିଁ । ସେମାନେ ନ ସହିଲେ ଯିବେ ବା ଅଉ କୁଆଡ଼େ ? ଯୁଆଡ଼େ ଗଲେ ବି ସେମାନେ ପୁରୁଷମାନଙ୍କ

ପାଲରେ ପଡ଼ିବେ । ସବୁ ପୁରୁଷ ସତେ ଯେମିତି ଗୋଟିଏ ଡଗ୍‌କୁରେ ସମାନ ଭାବରେ ଓଜନ ହୋଇଛନ୍ତି । କେହି ଜଣେ ଗ୍ରେଟ ତ ଆଉ କେହି ଜଣେ ବଡ଼ । ପ୍ରକୃତ ତ ସମସ୍ତଙ୍କର ହିଁ କଠୋର । ଗୋପୀମାନେ ସତେ ଯେମିତି ପୃଥିବୀକୁ କହୁଛନ୍ତି, ଅଗୋ ଦେବି ! ଏହି କଳା ଲୋକ ଜଣକ ରାମ ହିଁ ସୀତାଙ୍କ ସାଥିରେ ବି ଏହିଭଳି କଠୋରତା କରିଥିଲେ । ରାଜକନ୍ୟା ଓ ରାଜରାଣୀ ହୋଇ ମଧ୍ୟ ସେ ଏହି କଳାରଙ୍ଗର ପୁରୁଷଜଣକ ସାଥିରେ ବଣରେ ବୁଲିଥିଲେ । ରାବଣ ତାଙ୍କୁ ନେଇଯାଇଥିଲା । ତାକୁ ମାରିକରି ସେ ଯେତେବେଳେ ତାଙ୍କୁ (ସୀତାଙ୍କୁ) ଛଡ଼ାଇ ଆଣିଲେ, ସେତେବେଳେ ତାଙ୍କ ମୁହଁ ଆନନ୍ଦରେ ଫୁଲି ଉଠିଲା । ସେ ଭାବିବାକୁ ଲାଗିଲେ—ରାଘବ ସତେ ମତେ କେତେ ଭଲ ପାଆନ୍ତି; କିନ୍ତୁ ସେ ଥିଲେ କୀର୍ତ୍ତିଲୋଲୁପ ପୁରୁଷ । ଭଲ ପାଇବା କ'ଣ ସେମାଙ୍କୁ ଜଣା ନଥିଲା । ସେ ତ କେବଳ ହତ୍ୟାକାରୀ ଭଳି ମୁନିଆ ମୁନିଆ ବାଣମାନ ମାରି କ୍ଷତ-ବିକ୍ଷତ କରିବାଟା ଜାଣିଥିଲେ । ସେ ବୀର ଥିଲେ ନୀଳମଣି ଭଳି । ସେ ଆଖି ଦୁଇଟିକୁ ଲାଲ୍ ଲାଲ କରି କହିଲେ, ଅଗୋ ସୀତେ ! ତୁମେ ଶୁଣିଥାଅ ଯେ ମୁଁ ତୁମକୁ ପ୍ରେମ ପାଇଁକି ଛଡ଼ାଇ କରି ଆଣିନାହିଁ । (ନିଜର କୀର୍ତ୍ତି ରକ୍ଷିବା ପାଇଁ) ନିଜର କଳଙ୍କ ଦୂର କରିବାପାଇଁ ମୁଁ ତୁମକୁ ଛଡ଼ାଇ ଆଣିଛି । ତୁମେ କିଛି ମାସ ଧରି ରାବଣର ଘରେ ରହିଲ । ଏବେ ଆଉ ତୁମେ ମୋର ଯୋଗ୍ୟ ହୋଇ ରହିନାହଁ । ଏବେ ତୁମେ ଯେଉଁଠାକୁ ଚାହୁଁଛ, ସେଠାକୁ ଚାଲିଯାଅ । ତୁମେ ଭରତଙ୍କ ସାଥିରେ ରହିପାରି ଅଥବା ଲକ୍ଷ୍ମଣଙ୍କୁ ପତି ରୂପରେ ବରଣ କରିପାରି । ଅଥବା ତୁମେ ଏହି ବାନରରାଜ ସୁଗ୍ରୀବଙ୍କ ସାଥିରେ ଚାଲିଯାଇପାରି କିମ୍ବା ବିଭୀଷଣଙ୍କୁ ଆଶ୍ରା କରିପାରି । ସୀତା ଏହା ଶୁଣି ଚାଟକା ହୋଇଗଲେ । ସେ ଭାବିଲେ—ମୁଁ ସ୍ୱପ୍ନରେ ସୁଦ୍ଧା ମୋ ମନରେ କେବେହେଲେ ପରପୁରୁଷ କଥା ଚିନ୍ତା କରିନାହିଁ । ଅଥଚ ସେ ଲୋକମାନଙ୍କଦ୍ୱାରା ଭରପୂର ଥିବା ସଭାରେ ସମସ୍ତଙ୍କ ଆଗରେ ମତେ ଅପମାନ ଦେଉଛନ୍ତି । ଆଚ୍ଛା, ଏବେ ଆଉ ମୁଁ ଏହି ଦେହକୁ ରକ୍ଷିବି ନାହିଁ । ଏହା ଭାବି ସେ ଚିତା ତିଆରି କରି ଜଳିବାକୁ ଲାଗିଲେ । ରାଘବ ତାଙ୍କୁ ବାଧା ଦେଲେନାହିଁ । ସେ ଚିତା ଉପରେ ଯାଇ ବସିଗଲେ ; କିନ୍ତୁ ସେଥିରୁ ସେ ସୁନା ଭଳି ନିଷ୍କଳଙ୍କ ହୋଇ ବାହାରିଲେ । ସେତେବେଳେ ଯାଇ ରାମ ତାଙ୍କୁ ଗ୍ରହଣ କଲେ । ପୁଣି ସୀତା ଯେତେବେଳେ ଗର୍ଭବତୀ ଥିଲେ ସେତେବେଳେ କେହି ଜଣେ କହିଦେଲା ଯେ ରାମ ହେଉଛନ୍ତି କାମୁକ ପୁରୁଷ । ସୀତା ରାବଣର ଘରେ ରହିଥିଲେ । ତାହା ସତ୍ତ୍ୱେ ସେ (ରାମ) ପୁଣି ନିଜ ଘରେ ରଖିନେଲେ । ଏଥିରେ ସେ ପୁଣି ବୁଝିଗଲେ ଯେ ସୀତାଙ୍କ ଯୋଗୁଁହିଁ ତାଙ୍କ କୀର୍ତ୍ତି ନଷ୍ଟ ହେଉଛି । ତେଣୁ ସେ ପୁଣି ତାଙ୍କୁ ହିଂସ୍ରଜନ୍ତୁ ପରିପୂର୍ଣ୍ଣ ଥିବା ବଣରେ ଛଡ଼ାଇଦେଲେ । ରାଜରାଣୀ ହୋଇକରି ମଧ୍ୟ ଗୋଟିଏ ଦାନା ଅନ୍ନ ଲାଗି ତାଙ୍କୁ ବୁଲିବାକୁ ପଡ଼ିଥିଲା । ଅଯୋଧ୍ୟାରୁ ବାଲ୍ମୀକିଙ୍କ ଆଶ୍ରମ କିଛି ଦୂର ନଥିଲା । ବାରବର୍ଷ ଧରି ଦିନକର ଲାଗି ମଧ୍ୟ ରାମ ତାଙ୍କ

କଥା କହୁ ରୁହିଁ ନଥିଲେ । ସେ ପୁଣି ତାଙ୍କୁ ତଡ଼ାଇଲେ । ଏତେ ଅପମାନ ସହିକରି ମଧ୍ୟ କୌଣସି ପ୍ରାଣୀ ଆସିପାରେ ନା ବଞ୍ଚିରହିପାରେ ? କିନ୍ତୁ ଏହି ସ୍ତ୍ରୀ ଜାତିର ହୃଦୟରେ ବୃଦ୍ଧ ବ୍ରହ୍ମାଦେବତା ଏତେ ସହନଶୀଳତା ଭରି ଦେଇଛନ୍ତି ଯେ ତାହାଙ୍କୁ ସବୁକିଛି ସହିବାକୁ ପଡ଼ୁଥାଏ । ବାଲ୍ମୀକି ବିଳାପ ଉପରେ ବିଳାପ କଲେ । ଋଷିମାନେ ମଧ୍ୟ ସହମତ ହୋଇ ରାମଙ୍କ ଉପରେ ଦୃଷ୍ଟି ପକାଇଲେ । ସେତେବେଳେ ସୀତା ମୁହଁ ତଳକୁ କରି ସାକ୍ଷାତ୍ ମୂର୍ତ୍ତିମତୀ ଲଜ୍ଜା ଭଳି ସଙ୍କୁଚିତ ହୋଇ ଆସିଲେ । ଏତେଦିନ ପରେ ମଧ୍ୟ କଠୋର ରାମ ତାଙ୍କୁ ପ୍ରେମଭରା କଥା ଦୁଇପଦ କହିଲେ ନାହିଁ । ସେ ଆସିବା ମାତ୍ରେ ହିଁ ତାଙ୍କୁ କହିଲେ—ତମେ ନିଜର ପରୀକ୍ଷା ଦିଅ ।

ଆଗରୁ ସେ ଅଗ୍ନିଙ୍କ କୋଳରେ ବସି ପରୀକ୍ଷା ଦେଇଥିଲେ । ଏବେ ସେ ଭାବିଲେ—"ଏହି ଅଗ୍ନି ବି ତ ପୁରୁଷ ଲୋକ । ସ୍ୱାମୀଙ୍କଦ୍ୱାରା ଦିଆଯାଇଥିବା ପରୀକ୍ଷା ବିଫଳ ହୋଇଗଲା । ଏବେ ମୁଁ କୌଣସି ଜଣେ ସ୍ତ୍ରୀଲୋକର କୋଳରେ ବସି ପରୀକ୍ଷା ଦେବି । ହେ ଦେବୀ ପୃଥିବୀ ! ସେଥିପାଇଁ ସେ ତୁମ ଆଡ଼କୁ ଚାହିଁଲେ । ତୁମେ ଫାଟିଯାଇ ତୁମ କୋଳ ଦେଖାଇଦେଲ । ସେ ସେହି ବିବରରେ ପଶିଯାଇ ବିଲୀନ ହୋଇଗଲେ । ତେବେ ଯାଇ ରାମଙ୍କ ହୃଦୟରେ ଗଭୀର ଆଘାତ ଲାଗିଲା । ତୁମେ ତ ସେହି ମାଆ । ଏବେ ଆମକୁ ତୁମେ ବିବର ଦେଇଦିଅ । ଆମେ ତାହା ଭିତରେ ପଶିଯିବୁ ।" ସେଥିପାଇଁ ସେମାନେ ବାରମ୍ବାର ପୃଥିବୀ ଆଡ଼କୁ ଚାହିଁ ରହିଥିଲେ ; କିନ୍ତୁ ପୃଥିବୀ ସେମାନଙ୍କୁ ବିବର ଦେଲନାହିଁ, ସେ ଫାଟିଗଲା ନାହିଁ କିମ୍ବା ତା ମଧ୍ୟରୁ ସୁନାର ସିଂହାସନଟିଏ ବାହାରିଲା ନାହିଁ ।

"ପୃଥିବୀ ଯେତେବେଳେ ଫାଟୁ ନଥିଲା, ସେତେବେଳେ ସେମାନେ ନିଜ କୋମଳ ଚରଣର ଲାଲ ନଖରେ ତାହାକୁ ବିଦାରିବାକୁ ଲାଗିଥିଲେ । ସେମାନେ ଭାବୁଥିଲେ ପୃଥିବୀ ଦେବୀ ଫାଟି ଯାଆନ୍ତୁ ; କିନ୍ତୁ ନଖରେ ବା କେତେଦୂର ଭୂଇଁ ଖୋଳିଯାଇ ପାରିବ ? ସେମାନେ ତେଣୁ ନିରାଶ ହୋଇ କାନ୍ଦିବାକୁ ଲାଗିଲେ । ସେମାନେ ଏବେ ଅଳ୍ପ ସମୟ ହେବ କଜଳ ଲଗାଇଥିଲେ । ଲୁହ ଧାର ସହିତ ତାହା ବହିଯିବାକୁ ଲାଗିଲା । ସେମାନଙ୍କ ଗାଲଟିମାନ ପ୍ରଫୁଲ୍ଲ, ଗୋଲ-ଗୋଲ ଓ ଅରୁଣ ରଙ୍ଗର ଥିଲା । କଜଳ ମିଶା ଅଶ୍ରୁ-ଜଳ ତାହାକୁ ଛୁଇଁ ସେମାନଙ୍କ ସ୍ତନ-ତଳେ ଆସି ପଡ଼ିବାକୁ ଲାଗିଲା । ଏ ପର୍ଯ୍ୟନ୍ତ ସ୍ତନ-ତଳେ ଯେଉଁ ଚନ୍ଦନମିଶ୍ରିତ କୁଙ୍କୁମର ପ୍ରଲେପ ଦିଆଯାଇଥିଲା, ତାହା ଶୁଖି ନଥିଲା । ଆଖିର କଳାମିଶା ପାଣି ଯେତେବେଳେ ତାହା ଉପରେ ଆସି ପଡ଼ିଲା, ସେତେବେଳେ କୁଚ-କୁଙ୍କୁମ ଉପରେ ପଡ଼ିବାଦ୍ୱାରା ତାହାର ରଙ୍ଗରେ ମିଶି ତାହା ହୋଲି ଭଳି ଖେଳିବାକୁ ଲାଗିଲା । ଲୁଗାଗୁଡ଼ିକରେ କଳା ଓ ହଳଦିଆ ରଙ୍ଗ ଲାଗିଗଲା । ଗୋପୀମାନଙ୍କର ଏଥିପ୍ରତି କିଛି ହିଁ ଧ୍ୟାନ ନଥିଲା । ସେମାନେ କିଛି ପାଟି ଫିଟାଇଲେ

ନାହିଁ, ବସିଲେ ବି ନାହିଁ । ସେମାନେ ମୁହଁ ତଳକୁ କରି ନୀରବରେ ଠିଆ ହୋଇ ରହିଲେ ।"

"ସେମାନେ ଭାବିବାକୁ ଲାଗିଲେ, 'ହାୟ ! ଯାହାଙ୍କ ପାଇଁ ଆମେ ସାଂସାରିକ ସମସ୍ତ ବିଷୟକୁ ଛାଡ଼ି ଦେଇଥିଲୁ, ସେ ପୁଣି ଆଜି ଏଭଳି ନିଷ୍ଠୁର ହୋଇଗଲେ । ସ୍ତ୍ରୀ ଜାତିର ଜୀବନ ବିବଶତାରେ ଭରି । ତାକୁ ପଦେ ପଦେ ବିବଶତା ଅନୁଭବ କରିବାକୁ ପଡ଼ିଥାଏ । ମଣିଷ ନିଜକୁ ଦୁଧରେ ଧୋଇ ହୋଇଥିବା ଭଲ ବୁଝିଥାଏ । ସେ ନିଜେ ଯେବେ ପର ବ୍ୟବହାର କରିବାକୁ ଚାହେଁ; କିନ୍ତୁ ସ୍ତ୍ରୀଠାରୁ ଏକଥା ଆଶା କରିଥାଏ ଯେ ସେ ସର୍ବଦା ସତୀ ସୀତା ହୋଇ ରହିଥାଉ । ପୁରୁଷପାଇଁ ସ୍ତ୍ରୀ ଯେତେ ତ୍ୟାଗ କରିଥାଉ ନା କାହିଁକି, ପୁରୁଷ କିନ୍ତୁ ନିଷ୍ଠୁର ହୋଇ ଗଢ଼ି ଉଠିଥାଏ । ଏହି ପ୍ରେମର ବନ୍ଧନ ଏଭଳି ସୁଦୃଢ଼ ଯେ ସ୍ତ୍ରୀ ନିଜ ପ୍ରିୟତମଙ୍କୁ ଛାଡ଼ି ମନରେ ବି ଆଉ କାହା କଥା ଭାବି ପାରିନଥାଏ । ପୁରୁଷର କଠୋରତା ତାକୁ ଅଧିକ ଅଧିକ ତା' ପ୍ରତି ଟାଣି ଆଣିଥାଏ । ପ୍ରିୟତମ ଯାହା ଇଚ୍ଛା ତାହା କରନ୍ତୁ ପଛକେ, ଆମକୁ କାନ୍ଦି କାନ୍ଦି ତାଙ୍କ ହୃଦୟକୁ କୋମଳ କରିବାକୁ ହେବ । ଅନୁନୟ-ବିନୟ କରି ତାଙ୍କ ହୃଦୟରେ ଦୟା ଉଦୟ କରିବାକୁ ହେବ ।' ଏହିସବୁ କଥା ଭାବି ସେମାନଙ୍କ କୋମଳ ହାତ-ପାପୁଲିର ନରମ ଗଦଗଦିଆ ଆଖିରୁ ବହୁଥିବା ଲୁହ-ଧାରଗୁଡ଼ିକୁ ସେମାନେ ପୋଛି ଆଣିଲେ । ସେମାନଙ୍କ କଣ୍ଠସ୍ୱର ଗଦ ଗଦ ହୋଇ ଉଠିଲା । ତହିଁରେ କୋପ ଓ ପ୍ରଣୟ ମିଶିକରି ରହିଥିଲା । ସେମାନେ ଅପ୍ରିୟ କଥା କହୁଥିବା ଶ୍ୟାମସୁନ୍ଦରଙ୍କୁ କିଛି କହିବାକୁ ଆରମ୍ଭ କଲେ । ସେମାନଙ୍କ ବାଣୀରେ ଲଜ୍ଜା, ପ୍ରେମ ଓ ଅନୁରାଗ ଭରପୂର ରହିଗଲା । ସେମାନେ କହିବାକୁ ଲାଗିଲେ—"ହେ ପ୍ରଭୋ ! ଆପଣ ଆଉ ଯାହା କହିବେ ପଛକେ କୁହନ୍ତୁ । ଆପଣ ହେଉଛନ୍ତି ସର୍ବାନ୍ତର୍ଯାମୀ ପୁରୁଷ । ଆପଣଙ୍କର କିନ୍ତୁ ଏଭଳି କଠିନ କଥା ଆମକୁ କହିବା ଉଚିତ ହେଉନାହିଁ ।"

ଭଗବାନ କହିଲେ—"କାହିଁକି ? ମୁଁ ଏଥିରେ କଠୋର କଥା କ'ଣ ବା କହିଲି ?"

ଗୋପୀମାନେ କହିଲେ—"ଆମେ ଅନ୍ୟ କାହାକୁ ପ୍ରେମ କରୁଛୁ ବୋଲି ଆପଣ ସନ୍ଦେହ କରୁଛନ୍ତି । ଆମର ଲୌକିକ ପତିମାନେ, ପୁଅମାନେ ଓ ବନ୍ଧୁ-ବାନ୍ଧବମାନେ ଅଛନ୍ତି । ଆପଣ ଭାବୁଥିବେ ଯେ ଆମ ଚିତ୍ତ ସେମାନଙ୍କଠାରେ ବୁଡ଼ି ରହିଛି । ଆମେ ହଲପ ନେଇ କହୁଛୁ ଯେ ଆମେ ସମସ୍ତେ ଆପଣଙ୍କ ପାଦ-ପଦ୍ମ ପ୍ରତି ହିଁ ଅନୁରକ୍ତ । ଆମର ଅନ୍ୟ କୌଣସି ଗତି ନାହିଁ । ଯେଉଁଦିନଠାରୁ ଆମକୁ ଆପଣଙ୍କର ଦର୍ଶନ ମିଳିଛି, ସେହିଦିନଠାରୁ ଆମ ଚିତ୍ତ ଆପଣଙ୍କ ପ୍ରତି ହିଁ ଟାଣି ହୋଇଯାଇଛି । ଆମେ ନିଜର ତନୁ, ମନ, ଧନ ତଥା ସର୍ବସ୍ୱ ଆପଣଙ୍କ ଶ୍ରୀଚରଣରେ ସମର୍ପି ଦେଇଛୁ । ଆପଣ ତ ସ୍ୱାଧୀନ । ଆପଣ ତ ବହୁ ଲୋକଙ୍କର ବଲ୍ଲଭ । ଆପଣଙ୍କ ପାଇଁ ପ୍ରେମ କରିବା ଲାଗି ଏତେବଡ଼ ଫସାଦଟା ପଡ଼ିଛି ।

ଆପଣ କାହାର ଜଣକର ନୁହନ୍ତି ; କିନ୍ତୁ ଅନ୍ୟପାଇଁ ତ ଆପଣ ଏକମାତ୍ର ଆଶ୍ରା । ଆମର ଏଇଆ ହେଲା ବିନତି ଯେ ଆପଣ ଆମକୁ ଛାଡ଼ନ୍ତୁ ନାହିଁ । ଆପଣ ସ୍ୱୟଂ ପ୍ରତିଜ୍ଞା କରିଛନ୍ତି—ମୁଁ ଶରଣାଗତକୁ ସବୁବେଳେ ପାଳିଥାଏ; ତାକୁ କେବେହେଲେ ଛାଡ଼ି ଦେଇ ନଥାଏ । ଆମେ ତ ସବୁକିଛୁ ଛାଡ଼ିଦେଇ ଆପଣଙ୍କ ଚରଣ ତଳେ ଶରଣ ନେଇଛୁ । ଅଥଚ ଆପଣ ଆମ ସମସ୍ତଙ୍କୁ ଛାଡ଼ି ଦେଉଛନ୍ତି କିପରି ? ଆପଣ ଆମକୁ କଠୋର କଥାମାନ କହି ଆଘାତ ଦେଉଛନ୍ତି କାହିଁକି ? ଆପଣ ଆମକୁ ନିଜର କରି ନେଉନାହାନ୍ତି କାହିଁକି ? ନିଜ ହୃଦୟରେ ଆମକୁ ଜାକି ଧରୁନାହାନ୍ତି କାହିଁକି ? ପ୍ରେମାଲିଙ୍ଗନ ଦେଇ ଆମ ହୃଦୟର ସନ୍ତାପକୁ ଦୂର କରୁନାହାନ୍ତି କାହିଁକି ? କାହିଁକି ଆମକୁ ନିର୍ଘୃଣ କରି ଦେଉଛନ୍ତି ?"

ଶୁକ କହୁଥାନ୍ତି—"ହେ ମୁନିମାନେ ! ଗୋପୀମାନେ ଏବେ ମଧୁର ଶବ୍ଦଭରା ବିନୟ ବାଣୀ କହି ଭଗବାନ କହିଥିବା କଥାକୁ ଖଣ୍ଡନ କରିବାକୁ ଲାଗିଲେ । ତାଙ୍କର ସବୁ କଥାର ଉତ୍ତର ମିଠା ମିଠା ଭାଷାରେ ସେମାନେ ଦେବାକୁ ଲାଗିଲେ । ସେମାନେ ନିଜର ଅନନ୍ୟତା ବିଷୟଟିକୁ ପ୍ରମାଣିତ କରିବାକୁ ଲାଗିଲେ ଏବଂ ଭଗବାନ ଯେ ସର୍ବଜ୍ଞ ଅଛନ୍ତି, ସବୁ ଦେଖୁଛନ୍ତି ଏବଂ ସମସ୍ତଙ୍କର ଈଶ୍ୱର ତାହା ସିଦ୍ଧ କରିବାକୁ ଲାଗିଲେ । ଏହି ପ୍ରସଙ୍ଗଟିକୁ ମୁଁ ପରେ କହିବି । ଏହା ବଡ଼ ଗହନ ଓ ଗୂଢ଼ ବିଷୟ ; ତେଣୁ ଆପଣମାନେ ଦୟା କରି ସମାହିତ ଚିତ୍ତରେ ଏହାକୁ ଶୁଣନ୍ତୁ ।"

## ଛପ୍ପୟ

ସୁନି କଛୁ ଧୀରଜ ଧାରି ପୋଂଛି ଆଁସୂ ବୋଲିଂ ସବ ।
ପ୍ରେମ ପାଶମହଁ ଫାଁସି ନିଠୁର ଅତି କହହୁ ବଚନ ଅବ ।।
ଜାଓ ଜାଓ ବାର ବାର କିହି ବାତ କହୀ ହୈ ।
ଜାହଁ କାହାଁ ସବ ତ୍ୟାଗି ଶରନ ତବ ଚଇନ ଗହୀ ହୈ ।।
ଶରନାଗତକୋ ତ୍ୟାଗିଓ୍ୱେ, ଦୁସହ ପାପ ବେଦନ କହ୍ୟୋ ।
ତବ ଚରନନମହଁ ଅଇ ହମ, ଧରମ କରମ ସବ କଛୁ ଲହ୍ୟୋ ।।



# ଆତ୍ମାରେ ହିଁ ଥାଏ ପ୍ରିୟତ୍ୱ

ଯତ୍ପତ୍ୟପତ୍ୟସୁହୃଦାମନୁବୃତ୍ତିରଙ୍ଗ
ସ୍ତ୍ରୀଣାଂ ସ୍ୱଧର୍ମ ଇତି ଧର୍ମବିଦା ତ୍ୱୟୋକ୍ତମ୍ ।
ଅସ୍ତ୍ୱେବମେତଦୁପଦେଶପଦେ ତ୍ୱୟୀଶେ
ପ୍ରେଷ୍ଠୋ ଭବାଂସ୍ତନୁଭୃତାଂ କିଲ ବନ୍ଧୁରାତ୍ମା ॥

(ଶ୍ରୀଭା: ୧୦ ସ୍କ, ୨୯ ଅ, ୩୨ ଶ୍ଳୋକ)

ଛପ୍ପୟ

ସୁତ ପତି ସେବା କରନ ଦୟୋ ଉପଦେଶ ହମେଂ ତୁମ ।
ପର ସମୁଝେଂ ସର୍ବସ୍ୱ ପ୍ରାନପତି ତୁମକୋଂ ସବ ହମ ॥
ପ୍ରିୟତା ଜଗମହଁ ହୋହି ସବନମହଁ ତୁମତେ କାରନ ।
କୈସେ ହମ କରସକେଂ ଆପୁକୀ ଶିକ୍ଷା ଧାରନ ॥
କୁଶଲ ଶାସ୍ତ୍ରବିଦ୍ ସକଲଜନ, କରହିଁ ପ୍ରେମ ତୁମ ପ୍ରେଷ୍ଠମହଁ ।
କା ପତି ସୁତ ଜରପ୍ରେମତେଂ ହୋତ୍ୱ ଯଦି ରତି ଶ୍ରେଷ୍ଠମହଁ ॥

(ପ୍ରିୟତା ଆତ୍ମାରେ ହିଁ ଥାଏ । ଆତ୍ମୀୟତାରେ ହିଁ ପ୍ରୀତି ହୋଇଥାଏ । ସୌନ୍ଦର୍ଯ୍ୟ, ଧନ, ବିଦ୍ୟା, ଯଶ ତଥା କୁଳୀନତା ଆଦି ଗୁଣ କଦାପି ପ୍ରୀତିର କାରଣ ହୋଇ ନଥାଏ । ଯେ ଯେତେ ସୁନ୍ଦର ହୋଇଥାଉ ପଛକେ ତା'ଠାରେ ଆମର ଆତ୍ମୀୟତା ହୋଇ ନଥାଏ । ସେ ଆମପାଇଁ ଥାଏ ଜଣେ ସର୍ବସାଧାରଣ ଲୋକ ସମାନ । ବିପରୀତ ପକ୍ଷରେ ଜଣେ ହୋଇଥିଲେ ମଧ୍ୟ ତା' ସହିତ ଆମର ଯଦି ଆତ୍ମୀୟତା ହୋଇଗଲା, ତା'ହେଲେ ସେ ଆମ ପାଖରେ ପ୍ରିୟଠାରୁ ପ୍ରିୟତର ହୋଇଯିବ । ଠିକ୍ ସେହିପରି ଭାବରେ ଯେ ଯେତେ ଧନୀ ହୋଇଥାଉ ପଛକେ, ଅଥବା ଯଶସ୍ୱୀ ହୋଇଥାଉ ପଛକେ, କିମ୍ବା କୁଳୀନ ହୋଇଥାଉ ପଛକେ ଯେପର୍ଯ୍ୟନ୍ତ ତା'ଠାରେ ଆମର ମମତ୍ୱର ସୃଷ୍ଟି ହୋଇନାହିଁ, ଆପଣା-ଭାବ ଆସିନାହିଁ, ସେପର୍ଯ୍ୟନ୍ତ ତା'ର ଧନ, ଯଶ, ବିଦ୍ୟା ଓ କୁଳୀନତାରେ ଆମର କ'ଣ ବା ପ୍ରୟୋଜନ ?)

ସ୍ତ୍ରୀପାଇଁ ସଂସାରରେ ପତିଙ୍କଠାରୁ ବଳି କିଏ ପ୍ରିୟତର ଅଛି କେହି ନାହାନ୍ତି । ସାଧ୍ୱୀ ସ୍ତ୍ରୀମାନେ ସାଧୁ ପତିମାନଙ୍କୁ ଛାଡ଼ି ସଂସାରରେ ଆଉ କାହାକୁ ସେଭଳି ପ୍ରିୟ

ବୋଲି ଜ୍ଞାନ କରି ନଥାନ୍ତି । ଏବେ ଭାବନ୍ତୁ ତ ଦେଖି, ସ୍ତ୍ରୀମାନେ କ'ଣ ପତିଙ୍କ ଦେହକୁ ଭଲ ପାଇଥାନ୍ତି ? ଯଦି ସେମାନେ ଦେହକୁ ଭଲ ପାଇଥାନ୍ତି, ତା'ହେଲେ ମୃତାବସ୍ଥାରେ ତ ସେହି ଦେହ ରହିଥାଏ । ସେହି ଆଖି, କାନ, ମୁହଁ, ନାକ, ହାତ ପାଦ ତଥା ଅନ୍ୟାନ୍ୟ ଅଙ୍ଗ-ପ୍ରତ୍ୟଙ୍ଗ ରହିଥାଏ । କେବଳ ଜୀବାତ୍ମା ସେହି ଦେହକୁ ଛାଡ଼ି ଦେଇଥିବାରୁ ତାହା ଘୃଣ୍ୟ ହୋଇ ଉଠିଥାଏ । ତାହାକୁ ବେଶି ସମୟ ପାଇଁ ଘରେ ନରଖି ଜଳାଇ ଦିଆଯାଇଥାଏ । ଏଥିରୁ ସିଦ୍ଧ ହେଉଛି ଯେ ପ୍ରିୟତ୍ୱ ଦେହରେ ନଥିଲା, ଥିଲା ଆତ୍ମାରେ । ଏହା ଥିଲା ଚୈତନ୍ୟରେ । ସାରା ଦେହର ଚୈତନ୍ୟ ଗୋଟିଏ ସ୍ଥାନରେ ହିଁ ରହିଥାଏ । ଯାହାର ପ୍ରେମ ସେହି କେନ୍ଦ୍ରସ୍ଥ ସ୍ଥାନଟି ପ୍ରତି ହୋଇଯାଏ, ତା'ପାଇଁ ଅନ୍ୟାନ୍ୟ ପୃଥକ୍ ପୃଥକ୍ ସ୍ଥାନକୁ ପ୍ରେମ କରିବାର କ'ଣବା ଆବଶ୍ୟକତା ଅଛି ? ଯାହାର ରାଜାଙ୍କ ପ୍ରତି ପ୍ରେମ ଥିବ, ସେ ରାଜାଙ୍କ ଅନୁଯାୟୀ ପ୍ରେମ କରିବାପାଇଁ ବିବଶ ହୋଇ ଉଠିବ । ଯାହା ଘରେ ବିପୁଳ ମାତ୍ରାରେ ଦୁଧ ନାହିଁ, ସେ ଘର ଘର ବୁଲି ବସାଦହି ଖୋଜି ବୁଲିବ । ଯାହା ଘରେ ପର୍ଯ୍ୟାପ୍ତ ପରିମାଣରେ ଦୁଧ ଅଛି, ସେ ଚାହିଁଲେ ଦହି ତିଆରି କରିପାରେ, ଲହୁଣୀ ତିଆରି କରିପାରେ, ଖୁଆ ତିଆରି କରିପାରେ, ଏବଂ ଛେନା କରି ରସଗୋଲା ତିଆରି କରିପାରେ । ଏହିପରି ଭାବରେ ଏହି ସାଂସାରିକ ମାତା, ପିତା, ଭ୍ରାତା, ପତି, ମିତ୍ର, ବନ୍ଧୁ-ବାନ୍ଧବ, ତଥା କୁଟୁମ୍ବ ପରିବାରର ସମସ୍ତ ମଣିଷଙ୍କୁ ପ୍ରିୟ ବୋଧ ହୋଇଥାନ୍ତି ଯେପର୍ଯ୍ୟନ୍ତ ସର୍ବାନ୍ତର୍ଯ୍ୟାମୀ ଓ ସମସ୍ତଙ୍କର ଆତ୍ମା ସ୍ୱରୂପ ଥିବା ପ୍ରଭୁଙ୍କଠାରେ ତା'ର ପ୍ରେମ ହୋଇ ନଥାଏ । ଅତେ ତାଙ୍କଠାରେ ପ୍ରେମ ହୋଇଗଲେ ଏ ସମସ୍ତେ ବ୍ୟର୍ଥ ହୋଇଯାଇଥାନ୍ତି । ତାଙ୍କଠାରେ ପ୍ରେମ ହେଲେ ମଣିଷ ଚାହିଁଲେ ତାଙ୍କୁ ସ୍ୱାମୀ ରୂପରେ ଗ୍ରହଣ କରିପାରେ, ସଖା ରୂପରେ ଗ୍ରହଣ କରିପାରେ, ପୁତ୍ର ଅଥବା ପତି ରୂପରେ ଗ୍ରହଣ କରିପାରେ କିମ୍ବା କୌଣସି ଗୋଟିଏ ସମ୍ବନ୍ଧ ରୂପରେ ଗ୍ରହଣ କରି ପ୍ରେମ କରିପାରେ । ସୁଖ କେବଳ ସୁଖ ହିଁ ହୋଇଥାଏ । ଆନନ୍ଦ କେବଳ ଆନନ୍ଦ ହିଁ ହୋଇଥାଏ । ତହିଁରେ ଲେଶମାତ୍ର ନିରାନନ୍ଦ ନଥାଏ ।

ସୂତ କହୁଛନ୍ତି—"ଗୋପୀମାନେ ଆସିବାରେ ଶ୍ରୀକୃଷ୍ଣ ସେମାନଙ୍କୁ ଏହିଭଳି ପ୍ରଶ୍ନ ପଚାରିଲେ । ବ୍ରଜରେ ସବୁ କୁଶଳ ତ ? ତୁମ୍ଭେମାନେ ଅନ୍ଧାର ରାତିରେ କାହିଁକି ଏଠାକୁ ଆସିଲ ? ବ୍ରଜ ଉପରେ କିଛି ଆପଦ-ବିପଦ ପଡ଼ିନାହିଁ ତ ? ତୁମ୍ଭେମାନେ କ'ଣ ଶାରଦୀୟ ରାତିର ଶୋଭା ଦେଖିବାପାଇଁ ଆସିଛ ? ଅଥବା ମୋ' ପ୍ରତି ସ୍ନେହ-ଭାବ ରଖି ଆସିଛ ? କିମ୍ବା ମୋ'ଠାରେ ପତିଭାବ ରଖି ମୋ' ସହିତ କ୍ରୀଡ଼ା କରିବାର ଇଚ୍ଛା ନେଇ ଆସିଛ ? ଏହିସବୁ ଅବଶ୍ୟ ଠିକଣା କଥା ବୋଲି କହି ସେମାନଙ୍କୁ ସେ କହିଲେ, ଏହିସବୁ କଥା ଅବଶ୍ୟ ଯଥାର୍ଥ; କିନ୍ତୁ ଏବେ ତୁମ୍ଭେମାନେ ଫେରିଯାଅ । ତୁମ୍ଭେମାନେ ଯଦି ମୋ' ପ୍ରତି ପ୍ରେମିକ

ପୁରୁଷ-ଭାବ ରଖି ଆସିଥାଅ, ତା'ହେଲେ ଏହା ହେଉଛି କୁଳବତୀ ସ୍ତ୍ରୀମାନଙ୍କ ପାଇଁ କଳଙ୍କର କଥା ।"

ବ୍ରଜାଙ୍ଗନାମାନେ ଏହିସବୁ ପ୍ରଶ୍ନର ଉତ୍ତର ଗୋଟିଏ କଥାରେ ହିଁ ଦେଇଦେଲେ । ସେମାନେ ସଂକ୍ଷେପରେ କହିଲେ—"ଆମ୍ଭେମାନେ ଅନ୍ୟାନ୍ୟ ସାରା ବିଷୟଭୋଗକୁ ଛାଡ଼ି କେବଳ ଆପଣଙ୍କ ଚରଣ-କମଳ ପ୍ରତି ଅନୁରକ୍ତ ; ତେଣୁ ଆପଣ ଆମ୍ଭମାନଙ୍କୁ ତ୍ୟାଗ କରନ୍ତୁ ନାହିଁ ।"

ଭଗବାନ କହିଲେ—"ତୁମ୍ଭେମାନେ ମତେ ଈଶ୍ବର ବୋଲି ବୁଝିଛ । ଏହା ଅବଶ୍ୟ ଠିକ୍ କଥା; କିନ୍ତୁ ସ୍ତ୍ରୀମାନଙ୍କର ଧର୍ମ ହେଲା ପତି, ପୁତ୍ର, ତଥା ବନ୍ଧୁ-ବାନ୍ଧବମାନଙ୍କର ନିରନ୍ତର ସେବା କରିବା ।"

ବ୍ରଜ ନାରୀମାନେ କହିଲେ—"ସମସ୍ତଙ୍କର ପତି, ପୁତ୍ର ତଥା ବନ୍ଧୁବାନ୍ଧବ-ମାନଙ୍କଠାରେ ଯେଉଁଭଳି ପ୍ରୀତି ଥାଏ ଠିକ୍ ସେହିଭଳି ପ୍ରୀତି ଆମ୍ଭମାନଙ୍କର ଆପଣମାନଙ୍କଠାରେ ରହିଅଛି ।"

ଭଗବାନ କହିଲେ—"ରହିବାରେ କିଛି କ୍ଷତି ନାହିଁ; କିନ୍ତୁ ସତୀ ସ୍ତ୍ରୀମାନଙ୍କର ଧର୍ମ ତ ହେଉଛି ପତିଙ୍କର ସେବା କରିବା ଏବଂ ପତିଙ୍କୁ ପରମେଶ୍ବର ବୋଲି ମାନିବା ।"

ଏଥି ଉପରେ ଜଣେ ଗୋପୀ କହିଲା—ହେ ଶ୍ୟାମସୁନ୍ଦର ! ଆମେ ଗୋଟିଏ କଥା ଆପଣଙ୍କୁ ଶୁଣାଇବୁ । ଆପଣ ଶୁଣିବେ ? ଆମେ ଗୋଟିଏ ପ୍ରଶ୍ନ ପଚାରିବୁ ଆପଣ ତାହାର ଉତ୍ତର ଦେବେ ?"

ଭଗବାନ କହିଲେ—"ହଁ ଶୁଣିବି ନା । ଉତ୍ତର ଦେବାର ଯୋଗ୍ୟ କଥା ହେଲେ ମୁଁ ଅବଶ୍ୟ ଉତ୍ତର ଦେବି ।"

ଗୋପୀ ଜଣକ କହିଲା—"ଜଣେ ପତିବ୍ରତା ସ୍ତ୍ରୀ ଥିଲା । ସେ ତା'ର ପତିଙ୍କୁ ପ୍ରାଣଠାରୁ ବଳି ଅଧିକ ପ୍ରେମ କରୁଥିଲା । ସେ ସବୁବେଳେ ପତିଙ୍କ ସେବାରେ ଲାଗି ରହିଥିଲା । ସଂଯୋଗର କଥା ହେଲା ଏହି ଯେ ଥରେ କୌଣସି ଦରକାରୀ କାମରେ ପତିଙ୍କୁ ବିଦେଶ ଯିବାକୁ ପଡ଼ିଲା । ପତିବ୍ରତା ସ୍ତ୍ରୀ ଜଣକ କହିଲା, ପ୍ରାଣନାଥ ! ମୁଁ ଆପଣଙ୍କ ବିନା କିପରି ବା ବଞ୍ଚି ରହିପାରିବି ? ମୋ'ର ତ ଏକମାତ୍ର ବ୍ରତ ହେଉଛି ଆପଣଙ୍କ ସେବା କରିବା । ମତେ ଜୀବନର କୌଣସି ଅବଲମ୍ବନ ବିଷୟରେ ଏବେ କୁହନ୍ତୁ ।"

ସ୍ୱାମୀ ମଧ୍ୟ ଅନ୍ତରର ସହିତ ନିଜ ସ୍ତ୍ରୀକୁ ଭଲପାଉଥିଲେ । ସେ ନିଜର ଗୋଟିଏ ଅବିକଳ ସୁନ୍ଦର ପ୍ରତିମୂର୍ତ୍ତିଟିଏ ମାଟିରେ ତିଆରି କରାଇ ତାହାକୁ ସ୍ତ୍ରୀକୁ ଦେଲେ ଏବଂ କହିଲେ—"ତୁମେ ଏହାକୁ ମୋର ରୂପ ବୋଲି ଭାବି ଏହାର ପୂଜା କରିବ । ଏତିକି

ସମସ୍ତ ଭିତରେ ମୁଁ ପୁଣି ଫେରି ଆସିବି । ଏହା କହି ସେ ଚାଲିଗଲେ । ଯଦିଓ ବାସ୍ତବରେ ସେହି ମାଟିର ପିତୁଳାଟି ତା'ର ସ୍ୱାମୀ ନଥିଲା, ତଥାପି ସେ ସ୍ୱାମୀଙ୍କ ଆଦେଶରେ ତାହାଠାରେ ପତିଙ୍କ ଭାବନାକୁ ରଖି ତାହାକୁ ପୂଜା କରିବାକୁ ଲାଗିଲା । ସେ ତାହା ଆଗରେ ବନ୍ଦାବନ୍ଦା କରୁଥାଏ, ତାହାର ଚରଣାମୃତ ନେଇ ପିଉଥାଏ, ଏବଂ ତାହାଠାରେ ଭୋଗ ଲଗାଇ ପ୍ରସାଦ ପାଉଥାଏ ।"

ଦିନକର କଥା ସେ ପତି-ପ୍ରତିମାଟିକୁ ପ୍ରେମର ସହିତ ପୂଜା କରୁଥିଲା । ହଠାତ୍ ତା'ର ପତି ଆସି କବାଟ ଖଡ୍ ଖଡ୍ କଲେ ଏବଂ ତା'କୁ ପ୍ରେମପୂର୍ଣ୍ଣ ଭାଷାରେ ଡାକିଲେ । ଏବେ ତୁମେମାନେ ତ ଦେଖି ତା'ର ଧର୍ମ କ'ଣ ହେବ ? ସେ ସେହି ମାଟିର ପ୍ରତିମାଟିକୁ ପୂଜା କରିବାରେ ଲାଗି ରହିଥିବ ନା ପତିଙ୍କ ଡାକ ଶୁଣି ସବୁକିଛି ଛାଡ଼ିଦେଇ କବାଟ ପାଖକୁ ଦଉଡ଼ି ଯିବ ?

ଭଗବାନ କହିଲେ—"ଏଥିରେ ପ୍ରଶ୍ନ କରିବାର କ'ଣ ବା ଅଛି ? ଯେତେବେଳେ ତା'ର ପ୍ରକୃତ ପତି ଆସିଗଲେ, ଯେତେବେଳେ ସେ ତା'କୁ ପ୍ରେମଭରା କଣ୍ଠରେ ଡାକୁଛନ୍ତି, ସେତେବେଳେ ପୁଣି ମାଟିର ପତି-ପ୍ରତିମାକୁ ପୂଜା କରିବାର କ'ଣ ବା ଆବଶ୍ୟକତା ଅଛି ?"

ଗୋପୀ କହିଲା—"ତା' ହେଲେ ଦେଖନ୍ତୁ ତ ଏବେ ଆପଣଙ୍କ ମୁହଁରେ ହିଁ ଆପଣଙ୍କ କଥା କଟିଗଲା । ଆପଣ ତ କହିଥିଲେ ପତିଙ୍କଠାରେ ପରମେଶ୍ୱରଜ୍ଞାନ କରି ତାଙ୍କର ସେବା କରିବାକୁ ହେବ । ଏଥିରେ ଏହି କଥାଟି ପ୍ରମାଣିତ ହୋଇଗଲା ଯେ ପରମେଶ୍ୱର ଆଉ କେହି ନୁହନ୍ତି । ହାଡ଼ ମାଂସରେ ତିଆରି ହୋଇଥିବା ପତିଙ୍କଠାରେ ତାଙ୍କର ଭାବନା କରାଯାଇଥାଏ । ଆମକୁ ଯେତେବେଳେ ପ୍ରକୃତ ପରମେଶ୍ୱର ମିଳି ଯାଇଛନ୍ତି ଏବଂ ସେ ଯେତେବେଳେ ବଂଶୀ ବଜାଇ ହଠାତ୍ ଆମକୁ ତାଙ୍କ ପାଖକୁ ଡାକି ଆଣିଛନ୍ତି, ସେତେ-ବେଳେ ଆମେ ଏଠାରୁ ଫେରିକରି କୁଆଡ଼େ ବା ଯିବୁ ?"

ଭଗବାନ କହିଲେ—"ତୁମ୍ଭମାନଙ୍କ ଭାଇ ବନ୍ଧୁମାନେ ତୁମ୍ଭମାନଙ୍କ ପାଇଁ ଚିନ୍ତିତ ହୋଇ ଉଠୁଥିବେ ।"

ଗୋପୀମାନେ କହିଲେ—"ସେମାନେ କାହିଁକି ଚିନ୍ତିତ ହୋଇ ଉଠୁଥିବେ, ସେଥିପାଇଁ କ'ଣ ଆମ୍ଭେମାନେ ସେମାନଙ୍କ ଉପରେ ଅପଣାପଣିଆ କାହିଁକି କରି ରଖିବୁ ? ଏବେ ଆମ୍ଭେମାନେ ଚାହୁଁଛୁ ଯେ ସେମାନଙ୍କ ସମସ୍ତଙ୍କଠାରେ ଆମ୍ଭମାନଙ୍କର ଯେଉଁ ମମତ୍ୱ-ବୋଧ ଅଛି ତାହା ସବୁ ଆସି ଆପଣଙ୍କଠାରେ ଠୁଳ ହୋଇଯାଉ; କାରଣ ପ୍ରାଣୀମାନଙ୍କ ସମସ୍ତଙ୍କ ପ୍ରିୟଠାରୁ ପ୍ରିୟତର ବନ୍ଧୁ ହେଉଛନ୍ତି ଆପଣ । ଜୀବମାନଙ୍କ ସମସ୍ତଙ୍କ ଅନ୍ତରାତ୍ମା ହେଉଛନ୍ତି ଆପଣ । ଆପଣଙ୍କ ଯୋଗକୁ ହିଁ ସମସ୍ତଙ୍କ ଜୀବନ ସମ୍ଭବପର । ଆମ୍ଭେମାନେ ଯେତେବେଳେ

ସର୍ବାନ୍ତର୍ଯାମୀ ଓ ଜୀବନର ଆଧାର ପୁରୁଷଙ୍କର ଶରଣ ନେଇ ଯାଇଛୁ, ସେତେବେଳେ ଆମ୍ଭମାନଙ୍କ ପକ୍ଷରେ ଅନ୍ୟ କାହା ପାଖକୁ ଯିବା ଆ ଉ ଉଚିତ ହେବ ନାହିଁ । ମୂର୍ଖ-ମାନଙ୍କର କଥା ତ ଆମ୍ଭେମାନେ କହୁନାହୁଁ । ସେମାନଙ୍କର ତ ଜ୍ଞାନ ନାହିଁ । ସେମାନେ ଏହି ହାଡ଼-ମାଂସରେ ତିଆରି ହୋଇଥିବା ପାଞ୍ଚଭୌତିକ ଶରୀରକୁ ଆତ୍ମା ବୋଲି ମାନିଥାନ୍ତି; କିନ୍ତୁ ଶାସ୍ତ୍ରଜ୍ଞ ଲୋକମାନେ ଆତ୍ମସ୍ୱରୂପ ଆପଣଙ୍କୁ ହିଁ ପ୍ରେମ କରିଥାନ୍ତି । ସଂସାରରେ କରାଯାଉଥିବା ପ୍ରେମ ତ ହେଉଛି ଅନିତ୍ୟ । ଯଦି ଏହା ରୂପର କାରଣରୁ ହୋଇଥାଏ, ତା'ହେଲେ ରୂପ ନଷ୍ଟ ହୋଇ ଯିବାରେ ଏହା ନଷ୍ଟ ହୋଇ ଯାଇଥାଏ । ଯଦି ଦେହର କାରଣରୁ ଏହା ହୋଇଥାଏ, ତା' ହେଲେ ବି ଏହା ନାଶର ଯୋଗ୍ୟ ; କିନ୍ତୁ ଆପଣ ତ ହେଉଛନ୍ତି ଅବିନାଶୀ ; ତେଣୁ ଆପଣ ହିଁ ହେଉଛନ୍ତି ଚିରନ୍ତନ ପ୍ରିୟ । ଆପଣଙ୍କୁ ପ୍ରେମ କରିବାରେ ହିଁ ସୁଖ ମିଳିବ । ଯେଉଁମାନଙ୍କର ଆପଣଙ୍କ ସହିତ ପ୍ରେମ ହୋଇଗଲା, ସେମାନଙ୍କୁ ତ ଏହି ପତି, ପୁତ୍ର ଆଦି ମାଟିର ପିତୁଳା ଭଳି ବୋଧ ହେବେ । ପୁଅକୁ ପ୍ରେମ କଲେ କେବଳ ଦୁଃଖ ହିଁ ସାର । ସେ ଛୋଟ ଥିଲାବେଳେ ତା'ର ମଳ-ମୂତ୍ର ଧୋଇବାକୁ ପଡ଼ିଥାଏ । ତୁମେ କେଉଁ ସତ୍ସଙ୍ଗକୁ ଯାଇଥିବାବେଳେ ପିଲାଟି ଯଦି କାନ୍ଦି ଉଠିଲା, ଚିତ୍କାର କଲା, ତା'ହେଲେ ତମ ସହିତ ଅନ୍ୟ ଶ୍ରୋତାମାନଙ୍କର ବି କଷ୍ଟ ହୋଇ-ଥାଏ । ତୁମକୁ ଆଠ ପହରଯାକ ତା'ର ମୁହଁକୁ ଚାହିଁ ରହିବାକୁ ପଡ଼ିଥାଏ । ତା'ର ଦେହ ଅସୁଖ ହୋଇଗଲା ତ ସାରା ରାତି ଚେଇଁ ରହି ତା'ର ସେବା କରିବାକୁ ପଡ଼ିଥାଏ । ସେ ବଡ଼ ହୋଇଗଲେ ତା'ର ଲେଖାପଢ଼ା କରାଇବାକୁ ପଡ଼ିଥାଏ । ପୁଣି ତା' ପାଇଁ ସୁନ୍ଦରୀ ବୋହୂଟିଏ ଖୋଜି ଆଣିବାକୁ ପଡ଼ିଥାଏ । ବୋହୂ ଆସିଗଲା ତ ଦୁହିଙ୍କର ସେବା କରିବାକୁ ପଡ଼ିଥାଏ । ସେମାନଙ୍କ କଥା ଦିନରାତି ଶୁଣିବାକୁ ପଡ଼ିଥାଏ । ସେମାନଙ୍କ ସୁଖ-ଦୁଃଖରେ ସୁଖୀ-ଦୁଃଖୀ ହେବାକୁ ପଡ଼ିଥାଏ । ପୁଅ ଯଦି ମରିଗଲା, ତା' ହେଲେ କାନ୍ଦି କାନ୍ଦି ତୁମକୁ ଅନ୍ଧ ହୋଇଯିବାକୁ ପଡ଼ିଥାଏ । ତେବେ କୁହନ୍ତୁ ତ ଦେଖି ଏଥିରେ କ'ଣ ବା ସୁଖ ଅଛି ? ଏ ମୋହ ମମତା ବ୍ୟର୍ଥ ଜିନା ! ହେ ପରମେଶ୍ୱର ! ଆପଣ ତେଣୁ ଆମ୍ଭମାନଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ, ଆମ୍ଭମାନଙ୍କ ଆଶା-ଲତାଟି ଉପରେ ତୁଷାରପାତ କରନ୍ତୁ ନାହିଁ, ଏବଂ ଆମ୍ଭମାନଙ୍କୁ ପ୍ରତାରିତ କରନ୍ତୁ ନାହିଁ । ଆମ୍ଭମାନଙ୍କୁ ଆପଣ ନିଜର କରି ନିଅନ୍ତୁ, ନିଜର ଦାସୀ କରି ରଖନ୍ତୁ ଏବଂ ନିଜ ଗୁଡ଼-ତଳେ ଜାଳି ଧରନ୍ତୁ । ଦେଖନ୍ତୁ ତ ଆମ୍ଭେମାନେ କେତେଦିନ ଧରି ଆଶା ବାନ୍ଧି ବସିଥିଲୁ, କେତେଦିନ ଧରି ଦିନ ଗଣି ଗଣି ରହି ଆସିଥିଲୁ । ଆପଣ ଆମ୍ଭ-ମାନଙ୍କୁ ଡଙ୍ଗାରେ ନଇର ମଝି ଧାରକୁ ଆଣି ବୁଡ଼ାଇ ଦେଉଛନ୍ତି । ଏହା କ'ଣ ଠିକଣା କଥା ହେଉଛି ? କେବେଠାରୁ ଆମ୍ଭେମାନେ ଛଟପଟ ହେଉଛି ଭଳି ଆପଣଙ୍କ ଘରର ଝରକାର ଆଖପାଖରେ ଘୂରି ବୁଲି ଆସୁଥିଲୁ । ଆମ୍ଭେମାନେ ଯେତେବେଳେ ଆପଣଙ୍କର ଘରଆଡ଼େ ଆସୁଥିଲୁ, ଆମ୍ଭମାନଙ୍କ ମନ କହୁଁ ଥିଲା କେମିତି ଆପଣଙ୍କ ପାଖକୁ ଆସନ୍ତୁ, ଆସିକରି ଆପଣଙ୍କର ଦର୍ଶନ କରି ନିଅନ୍ତୁ ଏବଂ ଆପଣଙ୍କ ସାଥିରେ ଦୁଇପଦ ପ୍ରେମର କଥା

ରହିଥାନ୍ତି । ବାପା, ମାଆ, ପରିଜନମାନଙ୍କ ଗହଣରେ ରହିବାଦ୍ୱାରା ଆପଣଙ୍କ ହୃଦୟର କଥା କହିବାକୁ ଏବଂ ନିଜର ବେଦନାକୁ ପ୍ରକାଶ କରିବାକୁ, ଆମ୍ଭମାନଙ୍କୁ ଏଭଳି ସୁଯୋଗ ମିଳୁ ନଥିଲା । ଆଜି ଯେତେବେଳେ ଆପଣ ଏକାନ୍ତରେ ମିଳିଛନ୍ତି, ସେତେବେଳେ ପୁଣି ଆପଣ ଏଭଳି ନିଷ୍ଠୁର କଥା କହିବାକୁ ଲାଗୁଛନ୍ତି ଏବଂ ଏଭଳି ଧର୍ମୋପଦେଶ ଦେବାକୁ ଲାଗୁଛନ୍ତି । ଏହି ଧର୍ମୋପଦେଶ ଆପଣ ନିଜ ମାଆ ଯଶୋଦାଙ୍କୁ ଦିଅନ୍ତୁ । ଆପଣ ବୁଝିଥାନ୍ତୁ ମହାଶୟ ! ଆମ୍ଭେମାନେ ପୋଥି ଧରି ଆପଣଙ୍କ ପାଖରେ ଧର୍ମଶାସ୍ତ୍ର ପଢ଼ିବାପାଇଁ ଆସିନାହୁଁ । ଆମେ ତ ଆପଣଙ୍କୁ ବୁଝିଛୁ ପ୍ରିୟତମ ଓ ପରମ ପ୍ରେମାସ୍ପଦ ବୋଲି ଏବଂ ସେଇଥି ପାଇଁ ଆମେ ପ୍ରେମର ମାଗୁଣି କରି ଆସିଛୁ । ଆମକୁ ଆପଣ ପ୍ରେମ ଦିଅନ୍ତୁ । ଆମକୁ ଆଉ ଅଧିକ ବ୍ୟାକୁଳ କରନ୍ତୁ ନାହିଁ ।"

ସୂତ କହୁଥାନ୍ତି—"ହେ ମୁନିମାନେ ! ଗୋପୀମାନଙ୍କ ମୁହଁରୁ ଏଭଳି ପ୍ରେମପୂର୍ଣ୍ଣ କଥା ଶୁଣି ଶ୍ରୀକୃଷ୍ଣଙ୍କ ପ୍ରେମସାଗର ସମାନ ହୃଦୟରେ ଲହରୀର ଉଚ୍ଛ୍ୱାସ ଉଠିବାକୁ ଲାଗିଲା । ସେ ମଧ୍ୟ ପ୍ରେମକୁ ଅଧିକ ବଢ଼ାଇବା ଉଦ୍ଦେଶ୍ୟରେ କହିଲେ, 'ଆଗୋ ଗୋପୀମାନେ ! ତୁମ୍ଭେମାନେ ଯାହାସବୁ କହୁଛ, ତାହା ଅବଶ୍ୟ ସତ କଥା ; କିନ୍ତୁ ତଥାପି ତୁମ୍ଭମାନଙ୍କର ଏହି ଘୋର ବଣରେ ରହିବା ଉଚିତ ହେବ ନାହିଁ । ଏବେ ତୁମ୍ଭେମାନେ ଫେରି ନିଜ ନିଜ ଘରକୁ ଚାଲିଯାଅ ।"

ଏଥିରେ ଗୋପୀମାନେ ପ୍ରେମ-କୋପରେ ଭରପୂର ହୋଇ ଉଠିଲେ । ସେମାନେ ଲୁହଭରା ଛଳ ଛଳ ଆଖି କରି ଶ୍ରୀକୃଷ୍ଣଙ୍କ ଆଡ଼କୁ ଚାହିଁ ରହିଲେ ଏବଂ ଗଦ ଗଦ କଣ୍ଠରେ କହିଲେ—"ଆପଣ ଆମକୁ ବାରମ୍ବାର ଯିବାପାଇଁ କହୁଛନ୍ତି । ଆମେ ଯିବୁ ବା କୁଆଡ଼େ ? ଯିବା କାମଟା ତ ପାଦଦ୍ୱାରା ହୋଇଥାଏ । ଏବେ କିନ୍ତୁ ଆଉ ପାଦମାନେ ଆମ ଅଧୀନରେ ନାହାନ୍ତି । ସେମାନେ ପାଦଟିଏ ବି ଆଗକୁ ଚାଲି ପାରିବେ ନାହିଁ । ଘରକୁ ଫେରିଯାଇ କାମଦାମ କରିବା କଥା ଆପଣ କହୁଛନ୍ତି । କାମଦାମ ତ ହାତଦ୍ୱାରା ହୋଇଥାଏ । ଆମ ହାତମାନେ ତ ଅଚଳ ହୋଇଯାଇଛନ୍ତି । ସେମାନଙ୍କ ଦେଇ କିଛି କାମ ହୋଇ ପାରିବ ନାହିଁ । ଏଥିରେ ଆମର କିଛି ଅପରାଧ ନାହିଁ । ସବୁ ଅପରାଧ ତ ଆପଣଙ୍କର । ଆମେ ଘରର ସବୁ କାମ-ଧନ୍ଦା କରି ବସିଥିଲୁ । ଆପଣ ମଧୁର ବଂଶୀ ବଜାଇ ଆମର ଚିତ୍ତକୁ ହରିନେଲେ ଏବଂ ଆମକୁ ନିଜ ଆଡ଼କୁ ଟାଣି ଆଣିଲେ । ଏବେ ପୁଣି ଆମକୁ ଯାଅ ଯାଅ ବୋଲି କହୁଛନ୍ତି । ଆମେ କେମିତି ବା ଯିବୁ । ଆମ ପାଦଗୁଡ଼ିକ ତ ନିଷ୍କ୍ରିୟ ରହି ଯାଇଛି । ସେଗୁଡ଼ିକ ଆପଣଙ୍କ ପାଖରୁ ସାମାନ୍ୟ ଟିକିଏ ହେଲେ ବି ଘୁଞ୍ଚିବାକୁ ଚାହୁଁ ନାହିଁ । ଯଦି ଆପଣ ଜୋର ଜବରଦସ୍ତି କରି ନିଜର ସାମର୍ଥ୍ୟ ଦେଖାଇ ଆମକୁ ପଠାଇ ଦେବେ, ତେବେ ଆମେ କ'ଣ ବା କରି ପାରିବୁ ? ଆମେ ତ ଅବଳା , ତେଣୁ ଆମେ ବିବଶ ହୋଇ

ଚାଲିଯିବୁ । ଆମ ମୁହଁରେ ଖାଦ୍ୟ ମୁଠିଏ ଯିବ ନାହିଁ କିମ୍ବା ପାଣି ବୁନ୍ଦାଏ ବି ଯିବ ନାହିଁ । ଆମେ ରାତିଦିନ କାନ୍ଦି କାନ୍ଦି ରହୁଥିବୁ । କାନ୍ଦି କାନ୍ଦି ଆମେ ସାରା ସମୟଟାକ କଟାଇ ଦେଉଥିବୁ । ଆମଦ୍ୱାରା ଘରର କାମଦାମ ହୋଇ ପାରିବ ନାହିଁ କିମ୍ବା କାହାର ସେବା ଶୁଶ୍ରୁଷା ବି ହୋଇ ପାରିବନାହିଁ । ଯେଉଁ ନରକରୁ ମୁକ୍ତ କରି ଆମେ ଆସିଛୁ, ଆପଣ ଆମକୁ ପଠାଇବା ପାଇଁ ଚାହୁଁଛନ୍ତି ।”

ଭଗବାନ କହିଲେ—“ତୁମ୍ଭେମାନେ ସମସ୍ତେ ତ ମୋ’ ଦର୍ଶନ ଲାଗି ଆସିଥିଲ । ଦର୍ଶନ ତ ହୋଇଗଲା । କଥାବାର୍ତ୍ତା ବି ହୋଇଗଲା । ଏବେ ତୁମ୍ଭେମାନେ ଯାଅ; ଆଉ ଡେରି କର ନାହିଁ ।”

ଗୋପୀମାନେ କହିଲେ—“ଆଜି ଚିତ୍ତ କେବଳ ଦର୍ଶନରେ ତୃପ୍ତ ହେବ ନାହିଁ । ବଂଶୀର ମଧୁର ସ୍ୱନ ଆମ ହୃଦୟର କାମରୂପୀ ଇନ୍ଧନରେ ଜଳନ୍ତା ନିଆଁ ଖଣ୍ଡିଏ ପକାଇ ଦେଲା । ତାହା ଫଳରେ ଖୁବ୍ ଜୋର୍‌ରେ ଧୂଆଁ ଉଠିଲା । ଆମେ ସେଥିରେ ବ୍ୟାକୁଳ ହୋଇ ଉଠିଲୁ ଏବଂ ତେଣୁ ବଂଶୀ-ସ୍ୱନର ଉଦ୍‌ଗମ ସ୍ଥାନଟିର ସନ୍ଧାନରେ ଚାଲିଆସିଲୁ । ଏଠାକୁ ଆସିବାରେ ଆପଣଙ୍କର ମୁରୁକ ମୁରୁକ ହସୁଥିବା ଓଠଟି ବଂଶୀକୁ ଫୁଙ୍କି ତାଦ୍ୱାରା ସେହି କାମର ନିଆଁକୁ ଆହୁରି ଅଧିକ ପ୍ରଜ୍ୱଳିତ କରିଦେଲା । ଏବେ ତାହାକୁ ଶାନ୍ତ କରିବାର ଭାର ଆପଣଙ୍କ ହାତରେ ହିଁ ଅଛି । ଆପଣଙ୍କର ଏହି ଅଧର ହେଉଛି କୋମଳ, ଲାଲ ଲାଲ ଓ ରସାଳ । ତହିଁରୁ ଯେଉଁ ଅମୃତ ଝରୁଛି ଆପଣ ତାହାର ବେଗକୁ ପ୍ରବଳତର କରି ଦିଅନ୍ତୁ ଏବଂ ସେହି ପ୍ରବାହଦ୍ୱାରା ଆମର କାମାଗ୍ନିକୁ ଶାନ୍ତ କରି ଦିଅନ୍ତୁ । ଆମ କପୋଳଗୁଡ଼ିକ ଘର୍ମିତ ହୋଇ ଉଠୁଛି । ଆପଣ ତାହାକୁ ସେଗୁଡ଼ିକ ଉପରେ ରଖନ୍ତୁ ଏବଂ ତାହା କରିବାଦ୍ୱାରା ଆମର ଏହି ସନ୍ତାପକୁ ଦୂର କରିଦିଅନ୍ତୁ । ଯଦି ଆପଣ ଦୟା ନ କରି ଆମକୁ ଉପେକ୍ଷା କରି ବସନ୍ତି, ତା’ହେଲେ ଆପଣଙ୍କ ବିରହରେ ଯେଉଁ ନିଆଁ ଜଳି ଉଠୁଛି, ତାହାଦ୍ୱାରା ଆମ ଦେହ ପୋଡ଼ି ପାଉଁଶ ହୋଇଯିବ । ଆମେ ସମସ୍ତେ ଆପଣଙ୍କୁ ହିଁ ଝୁରି ଝୁରି ପ୍ରାଣ ଛାଡ଼ି ବସିବୁ ଏବଂ ଦିବ୍ୟ ଶରୀର ଦ୍ୱାରା ଆପଣଙ୍କର ସନ୍ନିଧି ପାଇଯିବୁ ।”

ସୂତ କହୁଛନ୍ତି—“ହେ ମୁନିମାନେ ! ଏତିକି କହୁ କହୁ ଗୋପୀମାନେ ଚେତା ହରାଇ ବସିଲେ କିନ୍ତୁ କୃଷ୍ଣ ଥିଲେ କଠୋର । ସେ ଜମା ତରଳିଲେ ନାହିଁ, ସେ ପୂର୍ବେ ଯେମିତି ଥିଲେ ସେମିତି ନିଷ୍ଠୁର ହୋଇ ରହିଲେ ।”

## ରୂପପଦ୍ୟ

କମଳନୟନ ! ଅବ କଠିନ ହୃଦୟ ବନ ମତ ଠାକୁରଓ ।
ଫୁଲୀ ଆଶାଲତା ତାହି ନହିଁ ନାଥ ! ଜରଓ ॥

ଜାହୁଁ କହାଁକା କରେଂ ଚଲ ନହିଁ ବଣମହୁଁ ପ୍ୟାରେ ।
କର, ପଦ ଅବ ଗତିହୀନ ଅଙ୍ଗ ସବ ଭୟେ ହମାଁରେ ॥
ଅରେ, ନିର୍ଦ୍ଦୟୀ ! ପ୍ରଥମ ତୋ ଜାଲ ପ୍ରେମକୋ ଡାରକେଂ ।
ଅବ ଫଁସାଇ ବ୍ୟାକୁଲ କରତ କ୍ୟୋଂ ନହିଁ ଡାରେ ମାରକେଂ ॥



## କାମସନ୍ତପ୍ତା ବ୍ରଜବଲ୍ଲଭୀ

ତନ୍ନଃ ପ୍ରସୀଦ ବୃଜିନାର୍ଦ୍ଦନ ତେଽଙ୍ଘ୍ରିମୂଳମ୍,
ପ୍ରାପ୍ତା ବିସୃଜ୍ୟ ବସତୀସ୍ତ୍ୱଦୁପାସନାଶାଃ ।
ତ୍ୱତ୍ସୁନ୍ଦରସ୍ମିତନିରୀକ୍ଷଣତୀବ୍ରକାମ—
ତପ୍ତାତ୍ମନାଂ ପୁରୁଷଭୂଷଣ ଦେହି ଦାସ୍ୟମ୍ ॥

(ଶ୍ରୀ ଭା. ୧୦ ସ୍କ, ୨୯ ଅ ୩୮ ଶ୍ଳୋକ)

### ଛପ୍ପୟ

ମନ୍ଦ-ମନ୍ଦ ମୁସକାୟ ହୃଦୟମହଁ ବାନ ଚଲାୟୋ ।
କରି ପ୍ରଜ୍ୱଲିତ ଅଗି କାମକୀ ସରବସୁ ଖୋୟୋ ॥
ପ୍ୟାସୀ ବନମହଁ ଫିରହିଂ ଦୟା ହିରଦେମହଁ ଲାଓ ।
ଅଧରାମୃତ ଅତିସୁଖଦ ରମଣ ! ଭରପେଟ ପିଆଓ ॥
ବଧିକ ! ବିରହ ବିଷବାନତେଂ ନହିଂ ହମ ସବ ମରି ଜାଇଁଗୀଂ ।
ଦିବ୍ୟ ଦେହତେଂ ଧ୍ୟାନ ଧରି ଚରନ ଶରନ ତବ ପାଇଁଗୀଂ ॥

ରୋଗ ହେଉଛି ଦୁଇ ପ୍ରକାର । ଗୋଟିଏ ହେଉଛି ଶାରୀରିକ ଏବଂ ଅପରଟି ମାନସିକ । ବାତ, ପିତ୍ତ ଓ କଫର ମାତ୍ରାରେ ବିଷମତା ଆସିଲେ ଶାରୀରିକ ରୋଗ ହୋଇଥାଏ । ଶରୀରର ଯେତିକି ପରିମାଣରେ କଫ ଆବଶ୍ୟକ, ତାହାଠାରୁ ଅଧିକ ହୋଇଗଲେ ଏବଂ ପିତ୍ତ ଓ ବାତର ପରିମାଣ କମ୍ ହୋଇଗଲେ କଫଜ ରୋଗ ହୋଇଥାଏ ।

ଏହିପରି ଭାବରେ ଏହି ତିନୋଟିଯାକ ଜିନିଷ ସାରା ଦେହରେ ବ୍ୟାପ୍ତ ହୋଇ ରହିଛି ; କିନ୍ତୁ କଫର ପ୍ରଧାନ ସ୍ଥାନ ହେଉଛି କଣ୍ଠ । ପିତ୍ତର ସ୍ଥାନ ଥାଏ ହୃଦୟର ତଳେ ଏବଂ ଏହା ନାଭି ପର୍ଯ୍ୟନ୍ତ ଲମ୍ବି ରହିଥାଏ । ନାଭିର ତଳେ ହେଉଛି ବାତର ସ୍ଥାନ । ବାତ, ପିତ୍ତ ଓ କଫ ଯେତେବେଳେ ବଢ଼ିଯାଏ କିମ୍ବା କମିଯାଏ, ତାହାକୁ ଦୋଷ ବୋଲି କୁହାଯାଉଥାଏ ଏବଂ ତାହା ଫଳରେ ଜ୍ୱର, ଅତିସାର, ସଂଗ୍ରହଣୀ, ଶୋଥ, ଶୋଷ, ପ୍ରମେହ ଆଦି ରୋଗ ହୋଇଥାଏ । ବାତ ପ୍ରଧାନ ଲୋକର ବାୟୁ ସମ୍ବନ୍ଧୀ ରୋଗ ବେଶି ହୋଇଥାଏ । ଏହା ଫଳରେ ମୁଖ-ଦ୍ୱାର ଓ ଅପାନ-ଦ୍ୱାର ବାଟେ ଖୁବ୍ ବାୟୁ ନିର୍ଗତ ହୋଇଥାଏ । ଶରୀରର ରୁକ୍ଷତା, ମନର କଠିନତା ଆଦି ପିତ୍ତ ସମ୍ବନ୍ଧୀ ରୋଗ ପିତ୍ତପ୍ରଧାନ ଲୋକଠାରେ ଦେଖା ଦେଇଥାଏ । ବେଶି ଶୋଷ କରିବା, ଦେହ ଜଳା ପୋଡ଼ା କରିବା, ଧାତୁ ସମ୍ବନ୍ଧୀ ରୋଗ ଆଦି କଫ ପ୍ରଧାନ ଲୋକର ହୋଇଥାଏ । ଏଗୁଡ଼ିକ ହେଉଛି କଫ ସମ୍ବନ୍ଧୀ ରୋଗ । କଫର ଗ୍ରନ୍ଥିଗୁଡ଼ିକ ପଚିଯିବା, କଫର ପରିମାଣ ବଢ଼ିଯିବା, ଏବଂ ଶ୍ଳେଷ୍ମା ଆଦି ହେବା ହେଉଛି ଏହାର ଅନ୍ତର୍ଗତ । ଏଗୁଡ଼ିକର ନିରାକରଣ ଲାଗି ବୈଦ୍ୟଶାସ୍ତ୍ରରେ ଅନେକ ଉପାୟର ଉଲ୍ଲେଖ ଅଛି । ଯେଉଁପରି ଭାବରେ ଶାରୀରିକ ରୋଗ ବାତ, ପିତ୍ତ ଓ କଫଦ୍ୱାରା ଜନ୍ମିଥାଏ, ଠିକ୍ ଅନୁରୂପ ଭାବରେ ମାନସିକ ରୋଗର କାରଣ ହେଉଛି ସତ୍ତ୍ୱ, ରଜ ଓ ତମ, ଏହି ତିନି ଗୁଣ । ମନରେ ଯେତେବେଳେ ସତ୍ତ୍ୱଗୁଣର ପ୍ରଧାନତା ଥାଏ, ସେତେବେଳେ ଶାନ୍ତି ଆସିଯାଏ, ଚିତ୍ତ ଶାନ୍ତ ହୋଇଉଠେ ଏବଂ ଭଲ ଓ ମନ୍ଦ ସମ୍ପର୍କରେ ବିବେକ ଜ୍ଞାନର ଉଦୟ ହୁଏ । ଚିତ୍ତରେ ଯେତେବେଳେ ରଜୋଗୁଣ ଓ ତମୋଗୁଣ ପ୍ରବଳ ହୋଇଉଠେ, ସେତେବେଳେ ତହିଁରେ କାମ, କ୍ରୋଧ, ଲୋଭ, ମୋହ, ଈର୍ଷ୍ୟା, ଅଭିମାନ, ମଦ, ଶୋକ, ଚିତ୍ତୋଦ୍‌ବେଗ ତଥା ହର୍ଷାଦି ରୋଗ ଉତ୍ପନ୍ନ ହୋଇଥାଏ, ଚିତ୍ତର ଏହି ରୋଗମାନଙ୍କ ମଧ୍ୟରେ କାମ ହେଉଛି ସବୁଠାରୁ ବଳବତ୍ତର ପ୍ରବଳ ରୋଗ । କାମରୁ ହିଁ କ୍ରୋଧ, ଲୋଭ, ମୋହାଦିର ଉତ୍ପତ୍ତି ହୋଇଥାଏ । କାମ-ରୋଗ ସ୍ତ୍ରୀ ଓ ପୁରୁଷ ଉଭୟଙ୍କ ମନରେ ଜନ୍ମିଥାଏ । କାମର ଜନ୍ମ ହୋଇଛି ବ୍ରହ୍ମାଙ୍କଠାରୁ । ଜନ୍ମ ହେବାମାତ୍ରେ ହିଁ ସେ ବ୍ରହ୍ମାଙ୍କ ଉପରେ ନିଜର ଶକ୍ତିକୁ ପ୍ରୟୋଗ କରିଥିଲା । ସେତେବେଳେ ବ୍ରହ୍ମା ଏହି ନିୟମଟି ବାନ୍ଧି ଦେଇଥିଲେ ଯେ ଶ୍ରେଷ୍ଠ ପିଲାକୁ କାମ-କଷ୍ଟ ହେବ ନାହିଁ । ତେଣୁ ପିଲାମାନଙ୍କୁ ଛାଡ଼ି ଦେଲେ ଅନ୍ୟ ସମସ୍ତଙ୍କୁ କାମ-ରୋଗ ପୀଡ଼ା ଦେଇଥାଏ । କାମର ପ୍ରବଳତା ହେବାରେ ଏହା କେବଳ ମାନସିକ ରୋଗ ହୋଇ ନ ରହି ଶାରୀରିକ ରୋଗରେ ବି ପରିଣତ ହୋଇ ଯାଇଥାଏ । ସ୍ତ୍ରୀ ଲୋକମାନଙ୍କୁ କାମ-ଜ୍ୱର ହୋଇଥାଏ ଏବଂ ଇଷ୍ଟ ଜିନିଷଟି ମିଳିବା ହିଁ ଏହାର ଔଷଧ ହୋଇଥାଏ । ପୁରୁଷମାନଙ୍କର ବୀର୍ଯ୍ୟୋନ୍ମାଦ ରୋଗ ଜନ୍ମିଥାଏ । ତାହାର ବି ଔଷଧ ହେଉଛି ଇଷ୍ଟ ଜିନିଷଟିକୁ ପାଇବା । କାମର ବେଗ ବଡ଼ ପ୍ରବଳ । ଏଭଳି ପ୍ରବଳ ବେଗ ଅନ୍ୟ କୌଣସି ରୋଗର ହୋଇ ନ ଥାଏ । ସ୍ତ୍ରୀମାନଙ୍କ କ୍ଷେତ୍ରରେ,

ଚକ୍ଷୁରେ, ମୁଖରେ, ବକ୍ଷସ୍ଥଳରେ, ନାଭିରେ, ଗୁହ୍ୟ-ଦ୍ୱାରରେ ଓ ଜଂଘରେ ବିଶେଷ ଭାବରେ କାମ ନିବାସ କରିଥାଏ । ଏଣୁ ଶ୍ରେୟଃ ଚାହୁଁଥିବା ବ୍ୟକ୍ତିଙ୍କ ପକ୍ଷେ ଏହି ସ୍ଥାନଗୁଡ଼ିକୁ କାମ-ଭାବ ନେଇ କେବେହେଲେ ଚାହିଁବା ଉଚିତ ନୁହେଁ । ପୁରୁଷର ହୃଦୟରେ କାମ-ଭାବ ଜନ୍ମିଲେ ତା'ର ଚକ୍ଷୁ ଚଞ୍ଚଳ ହୋଇଉଠେ, ଆଖି ଦୁଇଟିରେ ଅନୁରାଗ ଭରା ହୋଇଯାଏ, ଦେହ ପୁଲକିତ ହେବାକୁ ଲାଗେ ଏବଂ ସେ ଇଷ୍ଟ ବସ୍ତୁଟି ବିଷୟରେ ସର୍ବଦା ଚିନ୍ତା କରିବାକୁ ଲାଗିଥାଏ । କୌଣସି କାମରେ ତା'ର ମନ ଲାଗେ ନାହିଁ । ସେ ନିଜର କର୍ତ୍ତବ୍ୟକୁ ଭୁଲିଯାଏ ଏବଂ ଯେଉଁ କାମ ନ କରିବାର କଥା, ସେ ତାହା କରିବାରେ ଉଦ୍ୟମଶୀଳ ହୁଏ । ଠିକ୍ ଅନୁରୂପ ଭାବରେ ସ୍ତ୍ରୀମାନଙ୍କର କାମ-ବେଗ ପ୍ରବଳ ହୋଇ ଉଠିଲେ ସେମାନେ ଖୁବ୍ ଦୀନା ହୋଇ ଉଠିଥାନ୍ତି । ସେମାନଙ୍କର ସାରା ଅଙ୍ଗରେ ଅନୁରାଗ ଫୁଟି ଉଠେ ଏବଂ ବାରମ୍ବାର ରୋମାଞ୍ଚ ଜାତ ହୁଏ । ଇଷ୍ଟ ବସ୍ତୁଟି ମିଳିବାରେ ଯାଇ ସେମାନେ ଶାନ୍ତ ହୋଇଥାନ୍ତି । ଏହି ଭାବ ଯଦି ଭଗବାନଙ୍କଠାରେ ଦେଖାଦିଏ, ତେବେ ତାହାକୁ ପ୍ରେମ ଶକ୍ତିର ଅନୁବର୍ତ୍ତୀ ବୋଲି କୁହାଯାଇଥାଏ । ସାଧାରଣ ସ୍ତ୍ରୀ-ପୁରୁଷଙ୍କର ଅଙ୍ଗ-ମିଳନର ଇଚ୍ଛାର ନାଁ ହେଉଛି କାମ । ଯଦି ଏହି କାମଭାବ ପ୍ରବଳ ଭାବରେ ପରମାତ୍ମାଙ୍କଠାରେ ଲଗ୍ନ ହୋଇଗଲା ଏବଂ ପରମାତ୍ମାଙ୍କୁ ନିଜର ପ୍ରାଣପତି ମାନି ଏହିସବୁ ଭାବ ତାଙ୍କ ପ୍ରତି ଆରୋପ କରାଗଲା, ତେବେ ଏହା ପରମ-ପଦ ମିଳିବାର ଗୋଟିଏ ପ୍ରଧାନ ସାଧନ ହୋଇଉଠିବ । ସ୍ୱାତିର ଜଳ ଗୋବରରେ ପଡ଼ିବାଦ୍ୱାରା ବିଛୁମାନେ ଜନ୍ମିଥାନ୍ତି; କିନ୍ତୁ ତାହା ଶାମୁକାରେ ପଡ଼ିଲେ ମୋତି ହୋଇଯାଇଥାଏ । ସେଥିପାଇଁ ଗୋପୀମାନଙ୍କ କାମ-ଭାବକୁ ବିଶୁଦ୍ଧ ପ୍ରେମ ବୋଲି କୁହାଯାଇଥାଏ । ସାଧାରଣ କାମପୀଡ଼ିତା କାମିନୀମାନଙ୍କର ଯେଉଁଭଳି ଦଶା ହୋଇଥାଏ, ସେମାନଙ୍କର ଅବଶ୍ୟ ଠିକ୍ ସେହିଭଳି ଦଶା ହୋଇଥିଲା ; କିନ୍ତୁ ତାହା ଭଗବାନଙ୍କ ପାଇଁ ହୋଇଥିବାରୁ ତାହାକୁ ଦୂଷଣ ବୋଲି ନ କୁହାଯାଇ ଭୂଷଣ ବୋଲି କୁହାଯାଇଥାଏ ; ତେଣୁ ଏବେ ଯେଉଁ ବର୍ଣ୍ଣନା ହେବ ତାହା ଗୋପୀମାନଙ୍କର କାମସନ୍ତପ୍ତ ଅବସ୍ଥାର ହିଁ ବର୍ଣ୍ଣନା ହେବ । ପାଠକମାନେ ତହିଁରେ ପ୍ରାକୃତ ବୁଦ୍ଧିର ପ୍ରୟୋଗ ନକରି ଭଗବଦ୍-ଭାବନା ହିଁ କରନ୍ତୁ । ଏହା ତ ପ୍ରଭୁଙ୍କର ରାସ-ବିଳାସ ନିଜର—ପ୍ରତିବିମ୍ବମାନଙ୍କ ସାଥିରେ କ୍ରୀଡ଼ା !

ସୂତ କହୁଥାନ୍ତି—"ହେ ମୁନିମାନେ ! ପ୍ରେମ ଏକାନ୍ତରେ ବ୍ୟକ୍ତ ହୋଇଥାଏ । ଧ୍ୟାନ, ଭଜନ, ପୂଜନ ତଥା ପ୍ରେମ ସମସ୍ତଙ୍କ ଆଗରେ ବଢ଼ିପାରେ ନାହିଁ । ସେଥିପାଇଁ ସାଧକ ସଂସାରର କୋଳାହଳକୁ ଛାଡ଼ି ଏକାନ୍ତରେ ବଣକୁ ଯାଇ ଧ୍ୟାନ କରିଥାନ୍ତି । ଧର୍ମଧ୍ୱଜୀଙ୍କ ମେଳରେ ରହିବାଦ୍ୱାରା ଚିତ୍ତବୃତ୍ତି ଇତସ୍ତତଃ ହୋଇଯାଇଥାଏ । ସଂସାରରେ ବି ଏ କଥା ଦେଖାଯାଇଥାଏ ଯେ କେହି ଯଦି ଦଶ-ଯୋଡ଼ିଏଜଣ ସ୍ତ୍ରୀ କିମ୍ବା ପୁରୁଷଙ୍କ ସାଥିରେ ଆସିଲା କିମ୍ବା ଗଲା, ତା' ମନ ଉପରେ ଏହାର କିଛି ବିଶେଷ ପ୍ରଭାବ

ପଡ଼ି ନଥାଏ । ପ୍ରଥମତଃ ଶୀଳ-ସଙ୍କୋଚ ହୋଇଥାଏ ; ତେଣୁ ଗୋପନ ଭାବଗୁଡ଼ିକୁ ସେ ବ୍ୟକ୍ତ କରିପାରେ ନାହିଁ । ଦ୍ୱିତୀୟତଃ ଚିତ୍ତବୃତ୍ତି ହିଁ ଇତସ୍ତତଃ ହୋଇଯାଇଥାଏ । ଯଦି ନିର୍ଜନ ଜାଗାରେ ଏକାନ୍ତରେ ସ୍ତ୍ରୀ-ପୁରୁଷକୁ କିମ୍ବା ପୁରୁଷ ସ୍ତ୍ରୀକୁ ଦେଖିନିଏ, ତେବେ ବିକାର-ଭାବ ଜନ୍ମିଥାଏ । ସେଥିପାଇଁ ତାହା ଶାସ୍ତ୍ରକାରମାନେ ବାରମ୍ବାର ଚେତାବନୀ ଦେଇ କହି ଆସିଛନ୍ତି ଯେ ନିଜର ଜନ୍ମଦାତ୍ରୀ ମା'ଆ, ଭଉଣୀ କିମ୍ବା ଯୁବତୀ ଝିଅ, ଏମାନଙ୍କ ସାଥିରେ କେବେହେଲେ ଏକାନ୍ତରେ ରହିବାକୁ ହେବନାହିଁ; କାରଣ ଇନ୍ଦ୍ରିୟର ଶକ୍ତି ଅତ୍ୟନ୍ତ ପ୍ରବଳ ଏବଂ ଏହା ବଳବାନ୍ ବ୍ୟକ୍ତିଙ୍କୁ ମଧ୍ୟ ଟାଣି ନେଇ ଯାଇପାରେ । ଯେଉଁ ସ୍ଥାନରେ ବୁଢ଼ା-ବୁଢ଼ୀମାନଙ୍କର କଥା ଗୁରୁଜନମାନଙ୍କର ଶୁଣିବାର ଆଶଙ୍କା ନଥାଏ, ପତି-ପତ୍ନୀ ସେହି ସ୍ଥାନରେ ହିଁ ନିଜ ଭାବଗୁଡ଼ିକୁ ବ୍ୟକ୍ତ କରିଥାନ୍ତି । ସେଥିପାଇଁ ଏହାକୁ ଐକାନ୍ତିକ ଭାବ ବୋଲି ବୁଝାଯାଇଥାଏ । ଯେଉଁମାନଙ୍କ ମନରେ ଆଶଙ୍କା ଲାଗି ରହିଥାଏ, ସେମାନଙ୍କ ପକ୍ଷରେ ଐକାନ୍ତିକ ସୁଖର ଯଥାର୍ଥ ରସାସ୍ୱାଦନ ହୋଇପାରି ନଥାଏ । ପ୍ରେମ କ୍ରମଶଃ ଦର୍ଶନଦ୍ୱାରା ସ୍ପର୍ଶଦ୍ୱାରା ଓ ଅଙ୍ଗମିଳନଦ୍ୱାରା ଉତ୍ତରୋତ୍ତର ବଢ଼ିଥାଏ । ସଂସାରରେ ପତି-ପତ୍ନୀଙ୍କର ଯେଉଁ ଭାବଥାଏ, ଠିକ୍ ସେହି ଭାବ ଗୋପୀମାନଙ୍କର ଭଗବାନଙ୍କଠାରେ ଥିଲା । ପ୍ରେମୀର ଯେତେ ଯେତେ ଆତ୍ମୀୟତାପୂର୍ଣ୍ଣ କଥାବାର୍ତ୍ତା ହେଉଥିବ, ତାହା ସେତେ ସେତେ ବଢ଼ୁଥିବ । ପ୍ରେମାସ୍ପଦ ଏହି କଥାଟି ବାରମ୍ବାର ଶୁଣିବାକୁ ଚାହୁଁଥାଏ, 'ଆପଣଙ୍କ ପାଦ ଦୁଇଟି ଛଡ଼ା ମୋର ଅନ୍ୟ କୌଣସି ଗତି ନାହିଁ । ପୂର୍ଣ୍ଣିମା ଦିନ ସମୁଦ୍ରରେ ଚନ୍ଦ୍ରଙ୍କୁ ଦେଖି ଯେଉଁଭଳି ଭାବରେ ଜୁଆର ଉଠିଥାଏ, ଏହାଦ୍ୱାରା ବି ତାଙ୍କ (ପ୍ରେମାସ୍ପଦଙ୍କ) ମନରେ ସେହିଭଳି ପ୍ରେମର ଉଚ୍ଛ୍ୱାସ ଉଠିଥାଏ । ପ୍ରେମାସ୍ପଦଙ୍କ ହୃଦୟରେ ପ୍ରେମର ଅଭିବୃଦ୍ଧି ହେବାଦ୍ୱାରା ପ୍ରେମିକାଙ୍କ ଉତ୍ସାହ ଆହୁରି ବି ବଢ଼ି ଉଠିଥାଏ । ପୁଣି ସେ ନିଜର ପ୍ରସ୍ତାବକୁ ଲଜ୍ୟାସଙ୍କୋଚ ଭାବରେ ଅନାବୃତ ରଖିଥାନ୍ତି । ଯେତେବେଳେ ଦୁଇପଟରୁ ପ୍ରେମ-ସମୁଦ୍ର ନିଜର ମର୍ଯ୍ୟାଦାକୁ ଉଲଙ୍ଘନ କରି ଉଚ୍ଛୁଳି ଉଠିବାକୁ ଲାଗେ, ସେତେବେଳେ ରାସ-ବିଳାସ ହୋଇଥାଏ । ତାହା ପୂର୍ବରୁ ଯାହା ଘଟିଥାଏ, ତାହା କ୍ଷଣିକ ଇନ୍ଦ୍ରିୟ-ବିକାର । ଏଣୁ ତାହା ତୁଚ୍ଛ । ତହିଁରେ ସୁଖ ନଥାଏ କିମ୍ବା ଶାନ୍ତି ନଥାଏ । ତାହା ହେଉଛି ହୃଦୟର ଦୁର୍ବଳତା ।

ଗୋପୀମାନେ ଅନୁଭବ କରିବାକୁ ଲାଗିଲେ, ଆମ୍ଭେମାନେ ଯେଉଁ ଶ୍ୟାମସୁନ୍ଦରଙ୍କୁ ଏତେ ସମସ୍ତ ଧରି ଅନୁନୟ-ବିନୟ କରି ଆସୁଅଛୁ, ତାହା ବ୍ୟର୍ଥ ହେଉନାହିଁ । ଶ୍ୟାମସୁନ୍ଦରଙ୍କ ହୃଦୟରେ ଅନୁରାଗର ଜୁଆର ଉଠୁଛି । ଯଦିଓ ସେ ଉପରକୁ ନାହିଁ ନାହିଁ କରୁଛନ୍ତି, ତଥାପି ସ୍ୱାଙ୍କ ମନ ଅନୁରାଗରେ ସିକ୍ତ ହୋଇ ଉଠିଛି । ସେଥିପାଇଁ ପରା ପ୍ରବାଦ ଅଛି—ମନ କହୁଛି ହଁ, ମୁଣ୍ଡ କହୁଛି ନା । ସେ ସତେ କେତେଦୂର ତନ୍ମୟ ହୋଇ ଆମ କଥା ଶୁଣୁଛନ୍ତି ! ସେଥିପାଇଁ ସେମାନଙ୍କର ସାହସ ଅତୁଳ ବଢ଼ିଗଲା ଏବଂ ସେମାନେ କହିବାକୁ

ଲଗିଲେ, 'ହେ ଶ୍ୟାମସୁନ୍ଦର ! ଦେଖନ୍ତୁ ତ ଆମେ ହେଉଛୁ ଅବଳା । ଆମ ସାଥିରେ ଅନ୍ୟାୟ କରନ୍ତୁ ନାହିଁ । ଟିକିଏ ହେଲେ ଭାବନ୍ତୁ ତ ଦେଖି ଏହି ଗହନ ବନରେ ଆମର ବା କ'ଣ ଅଛି ? ଆମେ ଘର-ଦ୍ୱାର, କୁଟୁମ୍ବ, ପରିବାରର ମୋହ ଛାଡ଼ି ଏଠାରେ କାହିଁକି ବା ପଡ଼ି ରହିଛୁ ? ଖାଲି ଆପଣଙ୍କ ପାଇଁକି ନା ନାହିଁ ? ହେ କମଲଲୋଚନ ! ଆପଣ ତ ହେଉଛନ୍ତି ବନବାସୀ ମୁନିମାନଙ୍କର ପ୍ରିୟ । ଆମେ ଶୁଣିଛୁ ଯେ ବଣରେ ଥାଇ ଭଜନ କରୁଥିବା ଲୋକମାନଙ୍କୁ ଆପଣ ଭଲପାଆନ୍ତି । ସେଥିପାଇଁ ତ ଆମେ ଘର ଛାଡ଼ି ବଣକୁ ଚାଲିଆସିଛୁ । ଆପଣ କ'ଣ ଆମକୁ ପ୍ରେମ କରିବେ ନାହିଁ ? ଆମେ ଶୁଣିଛୁ ଯେ ଆପଣ ଯେତେବେଳେ ଶେଷ-ଶଯ୍ୟାରେ ସୁଖ-ଶୟନ କରିଥାନ୍ତି, ସେତେବେଳେ ଚଞ୍ଚଳା ହୋଇକରି ମଧ୍ୟ ଲକ୍ଷ୍ମୀଦେବୀ ନିରନ୍ତର ଆପଣଙ୍କର ପାଦ-ସେବା କରିଥାନ୍ତି । ସେହି ପାଦ-ସେବାର ଟିକିଏ ସୁଯୋଗ କ'ଣ ଆପଣ ଆମକୁ ଦେବେ ନାହିଁ ? ଆପଣ ହୁଏତ ଭାବୁଥିବେ ଯେ ଆମେ ଆଜି ନୂଆ କରି ଆପଣଙ୍କୁ ପ୍ରେମ କରୁଛୁ ; କିନ୍ତୁ କଥାଟା ସେପରି ନୁହେଁ । ଆପଣଙ୍କର ଏହି ପାଦ ଦୁଇଟି ପଦ୍ମ ଭଳି କୋମଳ ଏବଂ ଲକ୍ଷ୍ମୀଙ୍କୁ ବଳି କରି ଆହୁରି ଅଧିକ ଚତୁର୍ଦ୍ଦିଗ । ଆମେ ଏ କଥା ସଂକଳ୍ପ ନେଇ କହୁଛୁ ଯେ ଯେଉଁଦିନଠାରୁ ସେହି ପାଦ ଦୁଇଟିକୁ ଆମେ ଛୁଇଁଛୁ ସେହିଦିନଠାରୁ ଆମେ ବିନା ମୂଲ୍ୟରେ ନିଜକୁ ଆପଣଙ୍କ ହାତରେ ବିକି ଦେଇ ସାରିଛୁ ଏବଂ ଆପଣଙ୍କର କ୍ରୀତଦାସୀ ହୋଇ ସାରିଛୁ । ଆମକୁ ଯମୁନା ମଝିରେ ଠିଆ କରାଇ ଆପଣ ଆମକୁ ବୁଝାଇ ଦିଅନ୍ତୁ ଯେ ଆପଣ ହେଉଛନ୍ତି ସର୍ବାନ୍ତର୍ଯାମୀ ଓ ପରମାତ୍ମା ଏବଂ ଆପଣଙ୍କଠାରେ ଆମର ପତି-ଭାବ ରହିଛି । ଏବଂ ଏହି ଭାବକୁ ଆମେ ବି ପାପ ବୋଲି ଭାବୁନାହୁଁ । ଯେ ଆପଣଙ୍କୁ ପୁଅ କରାଇ ନେଇଥାନ୍ତି, ସେ ପିଲାଟି ଭଳି ଆପଣଙ୍କ ମୁହଁରେ ସ୍ତନ ଗୁଞ୍ଜି ଦିଅନ୍ତି ନା ନାହିଁ ? ଆଉ ଆପଣ ବି ତାଙ୍କ ଭାବନା ଅନୁସାରେ ପୁଅ ହୋଇ ତାଙ୍କ ସ୍ତନକୁ ଚୋଷନ୍ତି ନା ନାହିଁ ? ତା' ହେଲେ ଆମେ ତ ଆପଣଙ୍କୁ ପତି ରୂପରେ ମାନୁଛୁ । ଆପଣ ନିଜ ପାଦ ଦୁଇଟିକୁ ଆଣି ଆମ ବକ୍ଷ ସ୍ଥଳରେ ରଖନ୍ତୁ । ଆପଣଙ୍କୁ ଛାଡ଼ି ଆମର ଅନ୍ୟ କୌଣସି ଲୋକଙ୍କ ପତି, ପୁତ୍ରାଦି ଆମ ଆଗରେ ଠିଆ ହୋଇ ପାରିବେ ନାହିଁ । ଏ କଥା ଆମେ ଥରେ ନୁହେଁ, ଲକ୍ଷେ ଥର କହିପାରିବୁ ।''

ଭଗବାନ ଅତ୍ୟନ୍ତ ଭୋଳା-ଭାବ ଦେଖାଇ କହିଲେ—''ତା'ହେଲେ ତୁମ୍ଭେମାନେ କ'ଣ ଚାହୁଁଛ ? ନିଜ ବକ୍ଷସ୍ଥଳଟିଏ ତ ମୁଁ ଲକ୍ଷ୍ମୀଙ୍କୁ ସମର୍ପି ଦେଇଛି । ତାହା ଉପରେ ତ ତାଙ୍କର ହିଁ ଅଧିକାର ଅଛି ।''

ଗୋପୀମାନେ ଦୃଢ଼ ସ୍ୱରରେ କହିଲେ—''ତାଙ୍କର ସେହି ଅଧିକାର ଥାଉ । ଆମର ଲକ୍ଷ୍ମୀଦେବୀଙ୍କ ସାଥିରେ କିଛି ବାଦ ସାଧିବାକୁ ନାହିଁ । ସେ ଆପଣଙ୍କ ହୃଦୟରେ ବିହାର କରୁଛନ୍ତି । ଆମେ ତାଙ୍କର ଏହି ଅଧିକାରକୁ ଛଡ଼ାଇ ଆଣିବାପାଇଁ ଚାହୁଁନାହୁଁ; କିନ୍ତୁ ହେ ନାଥ ! ଆପଣ ତ ହେଉଛନ୍ତି ଅନେକଙ୍କର ସ୍ୱାମୀ ଏହା ଏତ ନା ମିଛ ? ଦେଖନ୍ତୁ,

ତୁଳସୀ ଦେବୀ ଆପଣଙ୍କର ପାଦ-ସେବା କରିଥାନ୍ତି । ଭକ୍ତମାନେ ଆସି ଆପଣଙ୍କ ପାଦ-ତଳେ ପଡ଼ିଥାନ୍ତି । ଯେ ଆସେ, ଆପଣ ତାକୁ ନିଜ ପାଦତଳେ ଶରଣ ଦେଇଥାନ୍ତି । ହୃଦୟ ଉପରେ ଲକ୍ଷ୍ମୀଦେବୀଙ୍କର ଅଧିକାର ଅଛି ତ ତାହା ରହିଥାଉ; କିନ୍ତୁ ଏହି ପାଦଦୁଇଟି ତ ସମସ୍ତଙ୍କର । ଯେ ଆପଣଙ୍କ ପାଖକୁ ଆସେ, ସେ ପାଦତଳେ ପଡ଼ିଯାଇଥାଏ । ଲକ୍ଷ୍ମୀ ହେଉଛନ୍ତି ଚପଳା ଓ ଚଞ୍ଚଳା । ଏଥିରେ ତାଙ୍କ ଚିତ୍ତ ବି ଚଞ୍ଚଳ ହୋଇ ଉଠିଥାଏ । ସେ ବି ପାଦ-ସେବା କରିବାପାଇଁ ଲାଳାୟିତ ହୋଇ ଉଠିଥାନ୍ତି । ତାଙ୍କୁ ବି ଆପଣ ମନା କରିନଥାନ୍ତି । ତାଙ୍କୁ ବି ଆପଣ ପଦସେବାର ଅଧିକାର ଦେଇଥାନ୍ତି । ତା'ହେଲେ ଆମକୁ କାହିଁକି ଆପଣ ଆଘାତ ଦେଉଛନ୍ତି ? ଆମପାଇଁ ଆପଣ ଏତେଦୂର କଠୋର କାହିଁକି ହୋଇ ଉଠୁଛନ୍ତି ? ଆମେ ତ ଲକ୍ଷ୍ମୀଦେବୀଙ୍କ ଭଳି କୌଣସି ଅନଧିକାର ଚର୍ଚ୍ଚା କରୁନାହୁଁ । ଯେଉଁ ପାଦ ଦୁଇଟି ସମସ୍ତ ଭକ୍ତଜନଙ୍କଦ୍ୱାରା ସେବିତ, ଯାହା ଉପରେ ସର୍ବସାଧାରଣଙ୍କର ଅଧିକାର ଅଛି, ଆମେ ତ ସେହି ପାଦ ଦୁଇଟିର ଧୂଳିକୁହିଁ ଖୋଜି ବସିଛୁ । ଘରଦ୍ୱାର ଛାଡ଼ିଦେଇ ଆମେ ଏଠାକୁ ବଣ ଦେଖିବାପାଇଁ କିମ୍ବା ଧ୍ୟାନ କରିବାପାଇଁ ଅଥବା ଶାରଦୀୟ ଶୋଭା ଦେଖିବାପାଇଁ ଆସିନାହୁଁ । ଆମ ଆସିବାର ଏକମାତ୍ର କାରଣ ହେଲା, ଆପଣଙ୍କର ସେବା କରିବା । ଆପଣ ଆମକୁ ସେବା କରିବାର ସୁଯୋଗ ଦିଅନ୍ତୁ, ଏବଂ ସେବିକା ଭାବ ନିଜର କରିନିଅନ୍ତୁ । ଶିଷ୍ଟାଚାରପୂର୍ଣ୍ଣ କଥା କହି କୁଶଳ-ପ୍ରଶ୍ନ କରି ଏବଂ କ୍ଷମା ମାଗି ଉପରଠାଉରିଆ ଭାବରେ କଥାମାନ କହି ଆମ ମନରେ ଆପଣ ଆଘାତ ଦିଅନ୍ତୁ ନାହିଁ । ଆମକୁ ଆପଣଙ୍କ ପାଦ ପାଖରେ ରହିବାକୁ ଦିଅନ୍ତୁ ।"

ଅଚ୍ଛା ଦେଖନ୍ତୁ ତ ! ଏଥିରେ ଆମର ବା ଦୋଷ କ'ଣ ? ଆମେତ ଘରକରଣାର ଜଞ୍ଜାଳରେ ବୁଡ଼ିକରି ରହିଥିଲୁ । ଆପଣ ଭଳି ଆମକୁ କାହିଁକି ଦେଖା ଦେଲେ ? ଆପଣ ହୁଏତ କହିପାରନ୍ତି—ତୁମ୍ଭେମାନେ ତ ଏତେ ଲୋକଙ୍କୁ ଦେଖୁଛ । ସମସ୍ତଙ୍କୁ ସ୍ନେହ କରୁନାହଁ କାହିଁକି ? ଆଉ ସବୁ ଲୋକ ତ ହେଉଛନ୍ତି ସାଧୁ ପ୍ରକୃତିର ; କିନ୍ତୁ ଆପଣ ତ ଚୋରମାନଙ୍କର ଶିରୋମଣି । ଆପଣଙ୍କ ମନୋହର ମୁରୁକି ମୁରୁକି ହସ ଓ ସୁନ୍ଦର କଟାକ୍ଷଦ୍ୱାରା ଆମ ଚିତ୍ତକୁ ଚୋରାଇ ନେଇଯାଇଛନ୍ତି । ଆପଣଙ୍କ ଚାହାଣିରେ ଅନୁରାଗ ଭରପୂର ରହିଛି । ସେହି ଚାହାଣିଦ୍ୱାରା କାମ-ବାଣ ମାରି ଆପଣ ଆମ ହୃଦୟକୁ ପୋଡ଼ିଜାଳି ଦେଇଛନ୍ତି । ଆମ ହୃଦୟ କାମସନ୍ତପ୍ତ ହୋଇ ଉଠୁଛି । ଯଦି ଆପଣ ଦୟା କରି ଆମକୁ ଦାସୀ ରୂପେ ଗ୍ରହଣ କରିନେବେ, ସେବିକା ବୋଲି ଭାବ ନିଜର କରିନେବେ, ତା'ହେଲେ ଏହି ଦାହ ପ୍ରଶମିତ ହୋଇଯିବ ଏବଂ ବେଦନା ନିର୍ମୂଳ ହୋଇଯିବ । ଆପଣ ତ ଆମକୁ ଅଧରରେ ଲଟକାଇ ଧରିଛନ୍ତି । ଆପଣ ଆମକୁ ମାରୁ ନାହାନ୍ତି କିମ୍ବା ଜିଇଁବାକୁ ଦେଉନାହାନ୍ତି ।"

ଭଗବାନ ଏହା ଶୁଣି ହସି ଉଠିଲେ ଏବଂ କହିଲେ—"ଆଗୋ ଗୋପୀମାନେ ! ମୋ' ପାଖରେ ଏମିତି କି ଜିନିଷ ଅଛି ଯେ ତାହା ଲୋଭରେ ତୁମ୍ଭେମାନେ ଏଭଳି ପାଗଳିନୀ ହୋଇ ଉଠିଛ ? ଆରେ ମୁଁ ତ ଧନହୀନ ସାଧା-ସିଧା ଗୋଟିଏ ଗଉଡ଼ ପିଲା ।"

ଗୋପୀମାନେ କହିଲେ—"ଆପଣଙ୍କୁ ସାଧା-ସିଧା କିଏ ବା କହୁଛି ? ଆପଣ ତ ତିନି ଜାଗାରେ ବଙ୍କା । ଆପଣଙ୍କ ପାଖରେ ଆଉ କେଉଁ ଧନ ନଥାଉ ପଛକେ ଏଭଳି ଛଅଟି ଜିନିଷ ଅଛି ଯାହାକୁ ଦେଖି ଆପଣଙ୍କ ପ୍ରତି ଆସକ୍ତ ନହେବ ଏଭଳି କୌଣସି ସୁନ୍ଦରୀ ସ୍ତ୍ରୀ ତିନି ଭୁବନରେ ନାହିଁ ।"

"ଭଗବାନ ସମ୍ଭ୍ରମର ସହିତ ନଜାଣିଲା ଭଳି ପଚାରିଲେ, ସେହି ଛଅଟି ଜିନିଷ କ'ଣ କ'ଣ ?"

"ଗୋପୀମାନେ କହିଲେ—"ଗୋଟିଏ ହେଉଛି କଳା କଳା କୁଞ୍ଚୁକୁଞ୍ଚିଆ ବାଳଦ୍ୱାରା ଘୋଡ଼େଇ ହୋଇ ରହିଥିବା ଆପଣଙ୍କର ସୁନ୍ଦର ମୁହଁ । ପଦ୍ମ, ଚନ୍ଦ୍ର ଆଦି କୌଣସି ଜିନିଷକୁ ତାହା ସହିତ ଉପମା ଦେବାକୁ ଗଲେ ବ୍ୟର୍ଥ ହୋଇଯିବ । ଏହାକୁ ଦେଖି କେଉଁ ସ୍ତ୍ରୀ ବା ଧୈର୍ଯ୍ୟ ଧରି ରହିପାରିବ ? ଦ୍ୱିତୀୟ ଜିନିଷଟି ହେଉଛି କାନର କମନୀୟ କନକ-କୁଣ୍ଡଳର ସୁନ୍ଦର କାନ୍ତିଦ୍ୱାରା ଶୋଭା ପାଉଥିବା ଏହି ଗୋଲ ଗୋଲ ଲଳିତ କପୋଳ । ଏହି କପୋଳ ଦୁଇଟି ଉପରେ କିଏ ବା ନିଜର ସର୍ବସ୍ୱ ସମର୍ପି ଦେବାପାଇଁ ପ୍ରସ୍ତୁତ ନହେବ ? ତୃତୀୟ ଜିନିଷଟି ହେଲା ପାଚିଲା କଇଁଚ କାକୁଡ଼ି ଭଳି ଥିବା ଆପଣଙ୍କ ଟହ୍‌ଟହ ଓ ନରମ ଅଧରରୁ ଝରୁଥିବା ଅଧରାମୃତ । ଯାହାର ଓଠରେ ଏହାର ପରଶ ଥରେ ମାତ୍ର ଲାଗିଯିବ, ତାକୁ ଘର-ଦ୍ୱାର କୁଟୁମ୍ବ, ପରିବାର ଆଦି କେବେହେଲେ ଭଲ ଲାଗି-ପାରିବ ନାହିଁ । ଚତୁର୍ଥ ଜିନିଷଟି ହେଉଛି ଆପଣଙ୍କ ଚଞ୍ଚଳ କଟାକ୍ଷ । ତାହା ମନୋହର ଦର ଦର ହସରେ ଭରପୂର ଏବଂ ବିଷଭରା ବାଣ ସମାନ । ସହଜ ସ୍ୱଭାବରେ ଆପଣ ଥରେ ଯାହା ଆଡ଼କୁ ଚାହିଁ ଦେବେ, ସେ ଘରେ ରହିପାରିବ ନାହିଁ କିମ୍ବା ବାହାରେ ରହିପାରିବ ନାହିଁ । ଘରଦ୍ୱାର ହରାଇ ବସି ସେ ଡୋରରେ ବନ୍ଧା ହୋଇଥିବା କପୋତଟି ଭଳି ଆପଣଙ୍କ ପଛେ ପଛେ ଘୂରି ବୁଲୁଥିବ । ପଞ୍ଚମ ଜିନିଷଟି ହେଲା ଆପଣଙ୍କର ଏହି ଗୋଲ ଗୋଲ ଅଭୟଦାୟକ ବିଶାଳ ବାହୁ ଯୁଗଳ । ଯାହାର କାନ୍ଧରେ ଆପଣ ଏହି ଦୁଇଟିକୁ ରଖିଦେଲେ, ଯାହାର କଣ୍ଠରେ ହାର ସମାନ ଏହି ଦୁଇଟି ଥରଟିଏ ପାଇଁ ପଡ଼ିଗଲା ତାକୁ ପୁଣି ଏହି ମଣି, ମାଣିକ୍ୟ, ମୋତି, ସୁନା ଆଦିରେ ତିଆରି ହୋଇଥିବା ହାର କ'ଣ କେବେହେଲେ ଭଲ ଲାଗିପାରେ ? ନିଜ କର-କମଳରେ ଆପଣ ଥରେ ଯାହାକୁ ଛୁଇଁ ଦେଲେ, ସେ କ'ଣ ଆଉ ଅନ୍ୟ କୌଣସି ସୁଖଦ ସ୍ପର୍ଶରେ ତୃପ୍ତ ହୋଇପାରିବ ? ଷଷ୍ଠ

ନିକପଟେ ଆପଣଙ୍କ ବିଶାଳ ବକ୍ଷସ୍ଥଳ, ଯାହା ହେଉଛି ଏକମାତ୍ର ଲକ୍ଷ୍ମୀଦେବୀଙ୍କର କ୍ରୀଡ଼ାସ୍ଥାନ । ଏଠି ଶ୍ରୀବତ୍ସଙ୍କ ପାଦଚିହ୍ନ ଅଛି ଏବଂ କୌସ୍ତୁଭମଣି ଝୁଲୁଛି । ସେହି ବକ୍ଷସ୍ଥଳରେ ଯେଉଁ ଭାଗ୍ୟବତୀ ନାରୀର ବକ୍ଷସ୍ଥଳ ଲାଗିଯିବ ତା'ର ସୌଭାଗ୍ୟର କଳନା ସଂସାରରେ କିଏ ବା କରିପାରିବ ? ତା'ପାଇଁ ପୁଣି ଆଉ କ'ଣ ବା କର୍ତ୍ତବ୍ୟ ଅବଶେଷ ରହିଗଲା ? ହେ ବ୍ରଜବଲ୍ଲଭ ! ଆପଣଙ୍କର ଏହି ଯେଉଁ ଛଅଟି ନିକପଟ ଅଛି, ତାହାକୁ ଦେଖି ଆମେ ଅନ୍ତରରେ ଆପଣଙ୍କର ଦାସୀ ହୋଇ ସାରିଛୁ । ଆମେ ତ ନିଜର ସର୍ବସ୍ୱ ଆପଣଙ୍କ ଶ୍ରୀଚରଣରେ ସବୁଦିନ ପାଇଁ ସମର୍ପିତ କରିଦେଇଛୁ । ଏବେ ତାହାକୁ ସ୍ୱୀକାର କରିବା ହେଉଛି ଆପଣଙ୍କର କାମ ।''

ଆଚ୍ଛା ଆପଣ ତ ବାରମ୍ବାର ଏକଥା କହୁଛନ୍ତି ଯେ ଆମେ ଏହା ଉଚିତ କାମ କଲୁନାହିଁ । ଆମେ ପଚାରୁଛୁ, ଆମେ ତେବେ କେଉଁ ଅନୁଚିତ କାମଟା କରି ବସିଲୁ ! ମହାଶୟ ! ଆପଣ ଯଦି ସ୍ତ୍ରୀ ହୋଇଥାନ୍ତେ, ତେବେ ଆପଣଙ୍କୁ ଜଣାପଡ଼ନ୍ତା ଆମେ ଉଚିତ କାମ କଲୁ କି ଅନୁଚିତ କାମ କଲୁ । ଆପଣଙ୍କର ଏହି ମୁରଲୀ-ଧ୍ୱନିରେ ମଧୁର ସ୍ୱରାଳାପ ଭରିରହିଛି । ଆପଣ ଏହାକୁ ଆମ୍ଭମାନଙ୍କୁ ଡାକିବା ଉଦ୍ଦେଶ୍ୟରେ ବଜାଉଛନ୍ତି । ଖୁବ୍ ଉଚ୍ଚସ୍ୱରରେ ଏହାର ଗାନ ଉଚ୍ଛୁଳି ଉଠୁଛି । ଆପଣଙ୍କ ମୁଖର ଉପମା ହିଁ ନାହିଁ । ସେଇଥିରେ ଆପଣ ଏହାକୁ ଫୁଙ୍କି ଚାଲିଛନ୍ତି । ଏହାର ମଧୁର ପଦାବଳୀ କଳ କଳ ନିନାଦରେ ଝରିପଡ଼ୁଛି । ଆମେ ପ୍ରତିଜ୍ଞା କରି ଏବଂ ଅତି ଦୃଢ଼ତାର ସହିତ କହୁଛୁ ଯେ ଏହି ସ୍ୱନକୁ ଶୁଣି ଏବଂ ତ୍ରିଲୋକମୋହନ ଆପଣଙ୍କ ସୁକୁମାର ରୂପକୁ ଦେଖି ସଂସାରର ଏମିତି କେଉଁ ସ୍ତ୍ରୀ ଅଛି ଯେକି ଘରକରଣା କାମରେ ଲାଗି ରହିଥିବ ? କିଏ ବା ଏମିତି ଅଛି ଯେ କି ପାଗଳିନୀ ହୋଇ ଆପଣଙ୍କ ପାଦ ତଳକୁ ଦଉଡ଼ି ନଆସିବ ? ସ୍ତ୍ରୀମାନଙ୍କ କଥା ଛାଡ଼ନ୍ତୁ, ଗାଈମାନେ ବି ତ ଆପଣଙ୍କ ପଛେ ପଛେ ପୋଷା ହରିଣୀ ଭଳି ଘୂରି ବୁଲୁଛନ୍ତି । ସେମାନେ ବି ଆପଣଙ୍କ ସଙ୍କେତରେ ନାଚନ୍ତି । ଗଛରେ ରହୁଥିବା ଚଢ଼େଇମାନେ ବି ଆପଣଙ୍କ ମନୋହର ମାଧୁରୀରେ ମୁଗ୍‌ଧ ହୋଇ ମୁନିମାନଙ୍କ ଭଳି ସମାଧିରେ ବୁଡ଼ି ଯାଉଛନ୍ତି । ଏମାନଙ୍କ ସମସ୍ତଙ୍କ କଥା ଛାଡ଼ନ୍ତୁ, ଗଛମାନେ ବି ତ ରୋମାଞ୍ଚିତ ହୋଇ ଉଠୁଛନ୍ତି । ଯେତେବେଳେ ପଶୁ, ପକ୍ଷୀ ଓ ବୃକ୍ଷମାନଙ୍କର ଏଭଳି ଦଶା ହୋଇଛି, ସେତେବେଳେ ଯଦି ସ୍ତ୍ରୀମାନେ ନିଜର ଆର୍ଯ୍ୟମର୍ଯ୍ୟାଦାରୁ ବିଚଳିତ ହୋଇଯାନ୍ତି, ସେଥିରେ ଆଶ୍ଚର୍ଯ୍ୟ କଥା କେଉଁଠି ବା ରହିଲା ?

ଏହି କଥାକୁ ଆମେ ଆଉ ବଢ଼ାଇବାପାଇଁ ଚାହୁଁନାହୁଁ । କହିବାକୁ ଆମଠାରେ ଶକ୍ତି ନାହିଁ, ଆଉ ଯୋଗ୍ୟତା ବି ନାହିଁ । ସଂସାରରେ ବଳଥିବା ଲୋକ ବଳ ନଥିବା ଲୋକକୁ ରକ୍ଷା କରିଥାନ୍ତି । ଦେବତାମାନଙ୍କ ଉପରେ ଦୁଃଖ ପଡ଼ିଲେ ଦୟାର ସାଗର ବିଷ୍ଣୁ ସୁଦର୍ଶନ ଚକ୍ରଦ୍ୱାରା ସେମାନଙ୍କୁ ରକ୍ଷା କରିଥାନ୍ତି । ପ୍ରଜାମାନଙ୍କ ଉପରେ ଆପଦ-ବିପଦ

ପଡ଼ିଲେ ରାଜା ନିଜ ଶସ୍ତ୍ରଦ୍ୱାରା ସେମାନଙ୍କୁ ରକ୍ଷା କରିଥାନ୍ତି । ବ୍ରଜମଣ୍ଡଳ ଉପରେ ଯେତେବେଳେ ଯେଉଁ ବିପଦ ଆସିଛି, ଆପଣ ନିଜେ ସେହି ସବୁଥିରୁ ତାହାକୁ ରକ୍ଷା କରିଛନ୍ତି ଏବଂ ଗଉଡ଼-ଗଉଡ଼ୁଣୀମାନଙ୍କର ଦୁଃଖକୁ ଦୂର କରିଛନ୍ତି । ଏବେ ଆମପାଇଁ ଏଭଳି ନିଷ୍ଠୁର କାହିଁକି ହୋଇଯାଇଛନ୍ତି ? ଆମେ ଆପଣଙ୍କର ଦାସୀ । ଆମେ କାମର ପୀଡ଼ା ପାଉଛୁ । ଆମକୁ ବି ଆପଣ ରକ୍ଷା କରନ୍ତୁ । ଆମ ବକ୍ଷସ୍ଥଳରେ ଗୋଟିଏ ପ୍ରକାର ଦାହ ହେଉଛି । ଆମେ ଚନ୍ଦନ ଘୋରି ତହିଁରେ ଲଗାଇଲୁ ; କିନ୍ତୁ ତାହା ଶୁଖିଗଲା । ବେଣାଚେର ବାଟି ଲଗାଇଲୁ । ତାହାଦ୍ୱାରା ସେହି ଦାହ ଆହୁରି ବଢ଼ିଲା । ଶିଉଳିକୁ ବାଟି କରି ଲଗାଇଲୁ । ପଦ୍ମ-ପାଖୁଡ଼ା ଆଣିକି ଲଗାଇଲୁ, କିନ୍ତୁ ତାହାଦ୍ୱାରା ଦାହ ଦୂର ହେଲାନାହିଁ । ଆପଣଙ୍କ କର-କମଳ ହେଉଛି ସୁଖଦ ଓ ଶୀତଳ । ତାହାକୁ ଆଣି କିଛି ସମୟ ପାଇଁ ଆପଣ ଆମ ବକ୍ଷ-ସ୍ଥଳରେ ରଖିଦିଅନ୍ତୁ । ସେହି କମଳର ଶୀତଳତାଦ୍ୱାରା ତାହା ଅବଶ୍ୟ ହିଁ ଶୀତଳ ହୋଇଯିବ । ଆପଣଙ୍କ ବରଦ ହସ୍ତ ସଂସାରକୁ ଅଭୟ ଦେଇଥାଏ । ତାହାକୁ ଆଣି ଆପଣ ଆମ ମୁଣ୍ଡ ଉପରେ ଥୋଇ ଦିଅନ୍ତୁ । ଏହାଦ୍ୱାରା ଆମ ମୁଣ୍ଡବଥା ଦୂର ହୋଇଯିବ । ହେ ଶ୍ୟାମସୁନ୍ଦର ! ଆପଣ ଏତେ ନିଷ୍ଠୁର କାହିଁକି ହୋଇ ଉଠିଛନ୍ତି ? ଆମେ ଅବଳା । ଆମେ ଆପଣଙ୍କ ଶରଣ ପଶିଛୁ । ଆପଣ ଆମ ଉପରେ ଏଭଳି ଅନାଦର ଅତ୍ୟାଚାର କାହିଁକି କରୁଛନ୍ତି ? ହେ ଅଚ୍ୟୁତ ! ଆପଣ ଆମକୁ ନିଜର କରି ନେଉନାହାନ୍ତି କାହିଁକି ? ଆମେ ଯଦି ବଣିକ ନୋହୁ, ତେବେ ଆପଣତ ବଣିକ । ଆମେ ଶୁଣିଛୁ ଯେ ମାଇଉଅଁର ଅନ୍ୟ ପୋକକୁ ନିଜର ଭଳି କରି ନେଇଥାଏ । ଆପଣ ବି ତ ମାଇ ଉଅଁରଟି ଭଳି କଳା । ନିଜର ଶକ୍ତିବଳରେ ଆପଣ ଆମକୁ ନିଜଭଳି କରାଇ ନିଅନ୍ତୁ । ଆପଣ କହିପାରନ୍ତି—ତୁମ୍ଭେମାନେ ତ ଅନ୍ୟମାନଙ୍କର । ସେହି ଅନ୍ୟ ଜଣକ ଆପଣଙ୍କୁ ଛାଡ଼ି ଅଲଗା କିଏ ବା ହୋଇପାରନ୍ତି ? ଆପଣ ହିଁ ତ ହେଉଛନ୍ତି ଆପଣ । ଆମକୁ ଅନ୍ୟ କେଉଁମାନଙ୍କର ବୋଲି ନଭାବି ଆପଣ ନିଜର କରି ନିଅନ୍ତୁ । ଶରଣ ପଶିଥିବା ଲୋକକୁ ନିଜର କରିନେବା ତ ପରମେଶ୍ୱରଙ୍କର କାମ । ଆମେ ଆପଣଙ୍କ ପାଦ-ତଳେ ପଡ଼ିଛୁ, ଆପଣଙ୍କର ଶରଣ ନେଇଛୁ । ଆପଣ ଆମ ସେବାକୁ ଗ୍ରହଣ କରନ୍ତୁ ।”

ସୂତ କହୁଥାନ୍ତି—“ହେ ମୁନିମାନେ ! ଅନୁନୟ-ବିନୟର ବି ପରାକାଷ୍ଠା ସମ୍ଭବ ହୋଇଥାଏ । ଗୋପୀମାନଙ୍କୁ ଅତ୍ୟନ୍ତ ବିହ୍ୱଳ ଅବସ୍ଥାରେ ଦେଖି ନିଷ୍ଠୁର କୃଷ୍ଣଙ୍କ ହୃଦୟ ମଧ୍ୟ ତରଳିଗଲା । ଏବେ ସେ ଯେଉଁଭଳି ଭାବରେ ପ୍ରେମର ସ୍ୱୀକୃତି ଦେଲେ, ସେ କଥାର ବର୍ଣ୍ଣନା ମୁଁ ଆଗକୁ କରିବି ।”

## ଛପ୍ପୟ

ଜା ବନତେଁ ଅତ ମନୁହର ପଦମ ପଦ ହମନେ ପରସେ ।
ତା ବନତେଁ ଅନୁରାଗ ହୃଦୟ ସର ସରସିଜ ସରସେ ॥
ଚରନକମଲରଜ ତହହିଁ କଙ୍କରୀ କର ଅପନାଓ ।
ଦୀନବନ୍ଧୁ ଦୁଖଦଲନ ଦୟା କର ହୃଦୟ ଲଗାଓ ॥
ବାହୁ କଣ୍ଠକୋ ହାର କର କରସରୋଜ ସିରପୈ ଧରୋ ।
ବକ୍ଷଃସ୍ଥଳ ପଦକମଲ ଧର, ହୃଦୟତାପ ଗିରଧର ହରୋ ॥



## ସ୍ତୁତି

ଇତି ବିକ୍ଳବିତଂ ତାସାଂ ଶ୍ରୁତ୍ୱା ଯୋଗେଶ୍ୱରେଶ୍ୱରଃ ।
ପ୍ରହସ୍ୟ ସଦୟଂ ଗୋପୀରାତ୍ମାରାମୋଽପ୍ୟରୀରମତ୍ ॥

(ଶ୍ରୀ ଭା ୧୦ସ୍କ ୨୯ଅ, ୪୨ ଶ୍ଳୋକ)

## ଛପ୍ପୟ

ବ୍ରଜବନିତନକୀ ବିନୟ ବିହାରୀ ସୁନି ହରଷାୟେ ।
ପ୍ରେମ ଅଲୌକିକ ଜାନି ନୟନ ହରିକେ ଭରି ଆୟେ ॥
ଯୋଗେଶ୍ୱର ମୁସକାୟ କହ୍ୟୋ ହୌଂ ରମଣ କରୁଙ୍ଗୋ ।
ବିରହିନକୋ ସନ୍ତାପ ସବନକୋ ଆଜ ହରୁଙ୍ଗୋ ॥
ଯୋଂ କହି ଗୋପିନ ମଧ୍ୟମହିଁ, ଉଡୁଗନ ସମ ଶୋଭିତ ଭୟେ ।
ଶ୍ୟାମ ପରସତେଁ ସବନକେ, ଚନ୍ଦ୍ରବଦନ ବିକସିତ ଭୟେ ॥

ଖେଳ ସମସ୍ତଙ୍କୁ ଭଲ ଲାଗିଥାଏ । ସାରା ସଂସାର ହେଉଛି ଖେଳପ୍ରିୟ । ଖେଳର ସାମଗ୍ରୀ ନେଇ ଖେଳ ହୋଇଥାଏ । ଦୁଇ-ଚାରିଜଣ ସାଥୀଙ୍କ ସହିତ ମିଶିକରି ଖେଳ ହୋଇଥାଏ । ସଂସାରରେ ଧ୍ୟାନ ଦେଲେ ତୁମେ ଦେଖିବ, ସମସ୍ତେ ଖେଳୁଛନ୍ତି । ବାଳକର ତ ପ୍ରତ୍ୟକ୍ଷ ଖେଳ ହେଉଛି ଆହାର । ସେ ତ ନିରନ୍ତର ହିଁ ଖେଳୁଥାଏ । ପ୍ରଭେଦ ଏତିକି

ସେ ଖେଳର ସାମଗ୍ରୀଗୁଡ଼ିକରେ ପରିବର୍ତ୍ତନ ହୋଇ ଯାଇଥାଏ । ପିଲାମାନେ ଚକା-ଚକା ଭଉଁରୀ ଖେଳୁଥାନ୍ତି, ଆଉ ମଧ୍ୟ ଚକ ଖେଳନାଗୁଡ଼ିକରେ ଝୁମୁ ଝୁମୁକା ଓ ଅନ୍ୟାନ୍ୟ ମାଟି ବା ଧାତୁରେ ତିଆରି ଖେଳନାଗୁଡ଼ିକରେ ଖେଳଥାନ୍ତି । ବଡ଼ ହୋଇଗଲେ ସେହି ଖେଳ କାଗଜ, କଲମ, ବହି ତଥା ଅନ୍ୟ ବ୍ୟବସାୟର ଜିନିଷଗୁଡ଼ିକଦ୍ୱାରା ହୋଇଥାଏ । ପୁଣି ଯୌବନାବସ୍ଥାରେ ଆଉ ଗୋଟିଏ ଦ୍ୱିତୀୟ ପ୍ରକାର ଖେଳ ଆରମ୍ଭ ହୋଇଯାଏ । କୌଣସି ସ୍ତ୍ରୀ ଓ ପୁରୁଷ ପରସ୍ପରକୁ ରହସ୍ୟମୟ ଦୃଷ୍ଟିରେ ଯଦି ଅଦ୍ଭୁତରେ ଦେଖା କରନ୍ତି ଏବଂ କେହି ଜଣେ ଯଦି ସେମାନଙ୍କର ଭାବର ପ୍ରକୃତ ଅର୍ଥ ବୁଝିପାରେ, ସେ ସେତେବେଳେ କହିବାକୁ ଲାଗେ—"ସେ ଦୁହିଙ୍କ ମଧ୍ୟରେ ତ ପ୍ରଣୟକ୍ରୀଡ଼ା ହେବାକୁ ଲାଗିଲାଣି । ଏହା ଘଟିବାର କାରଣ ହେଲା, ପ୍ରାଣୀ ମାତ୍ରେ କ୍ରୀଡ଼ା ବିନା ରହିପାରେ ନାହିଁ । ଲୋକ ଜଣକ ଯେତେ ଗମ୍ଭୀର ହୋଇ ଥାଉନା କାହିଁକି, ସେ ଯେତେବେଳେ ଏକାନ୍ତରେ ପିଲାମାନଙ୍କ ସହିତ ମିଶେ, ସେତେବେଳେ ସେ ପିଲାଟିଏ ହୋଇଯାଏ । ସେ ସେମାନଙ୍କ ଭଳି ଖନେଇ ଖନେଇ କଥା କହେ ଏବଂ ସେମାନଙ୍କର ଘୋଡ଼ା ହୁଏ । ଆମେ ଅନେକ ଆଶ୍ଚର୍ଯ୍ୟ ସାଧୁ-ସନ୍ଥଙ୍କୁ ଦେଖିଥାଉଁ । ସେମାନେ ନିଜ ଆସନରେ ଦର୍ଶକମାନଙ୍କ ଆଗରେ ଏଭଳି ଗୁମ୍ ମାରି ବସିଥାନ୍ତି ଯେ ଜଣାପଡ଼ୁଥାଏ, ଯେପରି ଅବା ସେମାନେ ପଥରର ପ୍ରତିମା ପାଲଟି ଯାଇଛନ୍ତି; କିନ୍ତୁ ସେମାନେ ଯେତେବେଳେ ଏକାନ୍ତରେ ନିଜ ସାଥୀମାନଙ୍କ ସହିତ ମିଶନ୍ତି, ସେତେବେଳେ ସେମାନେ ଖୁବ୍ ହସାହସି ହୁଅନ୍ତି, ବିନୋଦ କରନ୍ତି ଏବଂ ଗପ-ସପ ହୁଅନ୍ତି । କେହି ଜଣେ ଅନ୍ତରଙ୍ଗ ଭକ୍ତ ପଚ୍ଛରି ବସେ, "ଏ କ'ଣ ମହାରାଜ ?" ସେତେବେଳେ ସେମାନେ ଉତ୍ତର ଦେଇଥାନ୍ତି, "ଏମାନେ ପରା ଆମର ପିଲାଦିନର ସାଙ୍ଗ । ଆମେ ଏବେ ଖେଳାଖେଳି କରୁଛୁ ।" ସେମାନେ ଏ କଥାକୁ ଭୁଲିଯାଆନ୍ତି ଯେ ଏ ପର୍ଯ୍ୟନ୍ତ ଯେଉଁ ସିଂହାସନ ଉପରେ ସେମାନେ ବସିଥିଲେ, ତାହା ବି ଥିଲା ଖେଳ । ଏହିସବୁ ହେଉଛି ଖେଳ । ଜୀବମାନେ ଖେଳପ୍ରିୟ । ଖେଳ ସମସ୍ତଙ୍କ ସାଥିରେ ହୋଇ ନଥାଏ । ଯାହା ସହିତ ଆତ୍ମୀୟତା ଅଛି ତା' ସାଥିରେ ହିଁ ଖୋଲାଖୋଲି ଭାବରେ ଖେଳ ହୋଇଥାଏ । ଅନ୍ୟମାନଙ୍କ ସାଥିରେ ଶିଷ୍ଟାଚାରପୂର୍ଣ୍ଣ ବ୍ୟବହାର ଦେଖାଇବାକୁ ହୋଇଥାଏ । ଶିଷ୍ଟାଚାର ମଧ୍ୟ ଗୋଟିଏ ଖେଳ, ଗୋଟିଏ ନାଟକ । ଏଥିରେ ମଧ୍ୟ ମଣିଷକୁ ଆନନ୍ଦ ମିଳିଥାଏ । ନାଟକର ଅଭିନୟ ପ୍ରତି ସମସ୍ତଙ୍କର ରୁଚି କାହିଁକି ହୋଇଥାଏ ? କାରଣ, ଏହା ହେଉଛି ପ୍ରତ୍ୟକ୍ଷ ଖେଳ । ସାଧୁମାନଙ୍କୁ ଆମେ ନିତି ଦେଖିଥାଉଁ । ସେଥିରେ ଆମ ମନରେ କୌତୂହଳ ଆସି ନଥାଏ; କିନ୍ତୁ ନାଟକରେ ସାଧୁମାନଙ୍କୁ ଦେଖିଲେ କୌତୂହଳ ଜନ୍ମିଥାଏ । ଏହାର କାରଣ ହେଲା, ସେମାନେ ହେଉଛନ୍ତି ନାଟକର ସାଧୁ । ଖେଳ ହେଉଛି ଦୁଇ ପ୍ରକାର । ଗୋଟିଏ ହେଉଛି ସୁଖାନ୍ତ ଏବଂ ଅପରଟି ଦୁଃଖାନ୍ତ । କରୁଣାପୂର୍ଣ୍ଣ ଖେଳ ଦୁଃଖାନ୍ତ ହୋଇଥାଏ । ମିଳନ, ହାସ୍ୟ, ତଥା ଶୃଙ୍ଗାରରେ ପରିପୂର୍ଣ୍ଣ ଖେଳ

ଦୁଃଖାନ୍ତ ହୋଇଥାଏ; କିନ୍ତୁ ସୁଖାନ୍ତ ଓ ଦୁଃଖାନ୍ତ ଏହି ଦୁଇ ପ୍ରକାର ଖେଳରୁ ସୁଖ ମିଳିଥାଏ । ସୁଖ ନମିଳିଥିଲେ ଶ୍ରୀରାମଚନ୍ଦ୍ର, ପାଣ୍ଡବ, ଦ୍ରୌପଦୀ, ଆଦିଙ୍କ ଦୁଃଖପୂର୍ଣ୍ଣ କାହାଣୀମାନ ଆମେ କାହିଁକି ବା ଶୁଣୁଥାନ୍ତୁ ? ସେଥି କାନ୍ଦିବାରେ ବି ସୁଖ ଅଛି । ସାର କଥା ହେଲା, ଜୀବ ହେଉଛି ଖେଳପ୍ରିୟ । ସେ ନିତିଦିନ ନୂଆ ନୂଆ ଖେଳ ଖୋଜେ । ଭଗବାନ୍ ବି ଖେଳପ୍ରିୟ । ସେ ହେଉଛନ୍ତି ଏକାକୀ । ଏକାକୀ ତ ଖେଳ ହୋଇପାରେ ନାହିଁ । ସେ ତେଣୁ ନିଜ ଆତ୍ମା ସାଥିରେ ହିଁ ରମଣ କରିଥାନ୍ତି । ସେ ନିଜେ ହିଁ ନିଜର ମୋହିନୀ ମାୟା ସହିତ କ୍ରୀଡ଼ା କରିଥାନ୍ତି । ସେଥିପାଇଁ ପରା ବେଦ ଉପନିଷଦରେ ତାଙ୍କୁ ଆତ୍ମାକ୍ରୀଡ଼ ବୋଲି କୁହାଯାଇଛି । ସେ ନିଜ ଆତ୍ମା ସହିତ ରତିମଗ୍ନ ଥାଆନ୍ତି । ଖେଳ କୁହ, କ୍ରୀଡ଼ା କୁହ, ରତି କୁହ ସବୁ ହେଉଛି ଗୋଟିଏ ହିଁ କଥା । ଖେଳରେ ସବୁ ଉଚିତ ଓ ଅନୁଚିତ କଥା ଆସି ଏକଜୁଟ ହୋଇଯାଏ । ଧରନ୍ତୁ ଜଣେ କେହି ଖୁବ୍ ବଡ଼ ପ୍ରତିଷ୍ଠିତ ସାଧୁ ଅଛନ୍ତି । ତାଙ୍କଠାରେ ଯଦି କିଛି ଗୋଟିଏ ଲୋକ—ବିରୁଦ୍ଧ ବ୍ୟବହାର ଦେଖାଇଲା, ତେବେ ଭକ୍ତମାନେ କହିଥାନ୍ତି, "ଏଇଟା ହେଉଛି ସାଧୁ ମହାରାଜାଙ୍କର ଖେଳ ।" ଏହା କହି ସେମାନେ ତାହାକୁ ଏଡ଼ାଇ ଦେଇଥାନ୍ତି । ଏହାର ଅର୍ଥ ହେଲା, ଖେଳରେ ସବୁକିଛି ହୋଇଯାଇଥାଏ । ଭଲ-ମନ୍ଦ ବା ଉଚିତ-ଅନୁଚିତର ବିଚାର ଯେଉଁଠାରେ ହୋଇଥାଏ, ତାହା ପ୍ରେମ-ଖେଳ କଦାପି ହୋଇ ନଥାଏ । ତାହା ବରଂ ହୋଇଥାଏ ଶିଷ୍ଟାଚାରର ଖେଳ ।

ଖେଳ, କ୍ରୀଡ଼ା ଅଥବା ରତିରେ ପ୍ରଥମେ ଇଚ୍ଛା ଜାଗ୍ରତ ହୋଇଥାଏ । ତାହାର ନାଁ ହେଲା ପୂର୍ବାନୁରାଗ । ପୂର୍ବାନୁରାଗରେ ଯାହା ସହିତ କ୍ରୀଡ଼ା କରିବାର ଥାଏ, ତା' ସହିତ ମିଳିତ ହେବାପାଇଁ ଇଚ୍ଛା ପ୍ରବଳ ହୋଇ ଉଠିଥାଏ । ପୂର୍ବାନୁରାଗ ପରେ ଆସେ ମିଳନ । ମିଳନରେ ପୂର୍ବାନୁରାଗ ଅପେକ୍ଷା ଅଧିକ ଆନନ୍ଦ ମିଳିଥାଏ । ପୁଣି ଆସେ ବିରହ । ବିରହ ଆଣିଦିଏ ସନ୍ତାପ । ସେହି ସନ୍ତାପ ହିଁ ହେଉଛି ସର୍ବଶ୍ରେଷ୍ଠ ସୁଖ । ସତ୍ୟ, ଦ୍ୱାପର, ତ୍ରେତା ଓ କଳି, ଏହିପରି ହେଉଛି ଚାରି ଯୁଗ ; କିନ୍ତୁ ସତ୍ୟ ଯୁଗ ବଦଳିଯିବା ମାତ୍ରେ ହଠାତ୍ ତ୍ରେତା ଯୁଗ ଆସିଯାଏ ନାହିଁ । ମଝିରେ କିଛି ସମୟ ରହିଯାଏ । ଏହାକୁ ସତ୍ୟଯୁଗ କୁହାଯାଇ ପାରିବ ନାହିଁ କିମ୍ବା ତ୍ରେତା ଯୁଗ ବି କୁହାଯାଇ ପାରିବ ନାହିଁ । ଏହାର ନାଁ ହେଉଛି ସନ୍ଧି-ସମୟ । ଠିକ୍ ସେମିତି ପୂର୍ବାନୁରାଗ ଓ ମିଳନର ମଝିରେ ଗୋଟିଏ ସମୟ ଥାଏ । ତାହାକୁ 'ରତ୍ୟୋଦ୍ବୋଧକ' ବୋଲି କୁହା ଯାଇପାରେ । ସେଥିରେ ପ୍ରେମର ଉଦ୍ବୁଦ୍ଧି ସଂଘଟିତ ହୋଇଥାଏ । ଠିକ୍ ଯେମିତି ଧରନ୍ତୁ, ଆମର ପିଲାଟି ହାତରେ ଖେଳିବାର ଅଛି । ଆମେ ଖେଳିବାପାଇଁ ଇଚ୍ଛା କଲୁ । ଏହା ହେଲା ପୂର୍ବାନୁରାଗ । ପିଲାଟି ଆଗକୁ ଆସିଲେ ତ ମିଳନ ହୋଇଗଲା ; କିନ୍ତୁ ପ୍ରକୃତ ମିଳନ ହେଲା ବା କେଉଁଠି ? ଆମେ ପିଲାଟିକୁ କୋଳରେ ନେବାପାଇଁ ହାତ ବଢ଼ାଇଲୁ । ପିଲାଟି କିଛି ସମୟ ପାଇଁ ରୁହିଁ ହେଲା ଏବଂ ପରେ ପରେ ଖୁବ୍ ଶୀଘ୍ର କାନ୍ଦି

ଦୂରକୁ ପଳାଇଯାଇ ମୁଣ୍ଡ ହଲାଇଲା ଏବଂ ହସିବାକୁ ଲାଗିଲା । ଆମେ ତା'କୁ "ଆସ ! ଆସ !" ବୋଲି ଡାକିଲୁ । ସେ କିନ୍ତୁ ନ ଆସି ଖାଲି ମୁଣ୍ଡ ହଲାଇବାକୁ ଲାଗିଲା । କୋଡ଼କୁ ଆସିବାକୁ ଯେ ତା'ର ଇଚ୍ଛା ନାହିଁ, ସେ କଥା ଠିକ୍ ନୁହେଁ । ସେ ବି କୋଡ଼କୁ ଆସିବା ପାଇଁ ଚାହୁଁଛି ; କିନ୍ତୁ ସେ ପ୍ରେମକୁ ଅଧିକ ବଢ଼ାଇ ଦେଉଛି, ତୀବ୍ର ଭାବରେ ଅନୁରାଗକୁ ଉଦ୍‌ବୋଧନ କରୁଛି । ଆମେ ତା'କୁ ନାନା ପ୍ରକାର ପ୍ରଲୋଭନ ଦେଖାଇଲୁ । ସେତେବେଳେ ସେ ହାତ ଉଠାଇ ଆଉ କିଛି ଅନ୍ୟ ପ୍ରକାର ତା'ର ସ୍ୱୀକୃତି ଦେଲା । ଆମେ ତା'କୁ ଖୁବ୍ ଜୋରରେ ଜାକି ଧରିଲୁ ଏବଂ ତା'ର ମୁହଁରେ ନିଜ ମୁହଁକୁ ଲଗାଇ ଦେଲୁ । ଏହାର ନାଁ ହେଲା ମିଳନ । ଯେ ପର୍ଯ୍ୟନ୍ତ ଦ୍ୱୈତଭାବ ଅଛି ତାହା ପ୍ରକୃତ ମିଳନ ନୁହେଁ; ତାହା ବରଂ ବ୍ୟଭିଚାର । ଏକତ୍ୱ ହେବା ହିଁ ହେଉଛି ମିଳନ । ମିଳନରେ ସ୍ୱୀକୃତିର ଆବଶ୍ୟକତା ଅଛି । ମିଳନ ପରେ ହୁଏ କ୍ରୀଡ଼ା । ପିଲାଟିକୁ ଗ୍ରୀବାରେ ଧରି ଆମେ ତା' ସାଥିରେ ଖେଳିଥାଉଁ । ତା'ର ଦୁଇ ପାଖରେ କୁତୁ କୁତୁ କରି ଆମେ ତାକୁ ହସାଇଥାଉଁ । ବରି ଫୁଲ, ବାରମାସି କଲରା ଫୁଲ ଆଦି ଆଜେ-ବାଜେ ବୃଥା କଥାମାନ କହି ଆମେ ତା'ର କୌତୂହଳକୁ ବଢ଼ାଇଥାଉଁ । ଆମେ ବାରମ୍ବାର ତା'କୁ ଆଲିଙ୍ଗନ କରିଥାଉଁ । ତା' ମୁହଁରେ ମିଠେଇ କିମ୍ବା ଅନ୍ୟ କୌଣସି ଜିନିଷ ଆଣି ଆମେ ଗୁଞ୍ଜି ଦେଇଥାଉଁ । ସେ ମଧ୍ୟ ନିଜର ଛୋଟ ଛୋଟ ହାତରେ ଆମ ମୁହଁରେ ତାହା ଆଣି ଦେଇଥାଏ । ସେତେବେଳେ ତା'ର ହାତକୁ ଆମେ ଓଠ ଓ ଦାନ୍ତ ଦ୍ୱାରା ଚାପି ଦେଇଥାଉଁ । ତା'ର କାନରେ କୁରୁରୁ ବୋଲି କହି ଆମେ ତା'କୁ ହସାଇ ଥାଉଁ । ତା'ର ବାଳରେ ଆଙ୍ଗୁଠି ଚଳାଇ ଆମେ ତା'କୁ ଘାଲି ଘଲି କରିଥାଉଁ । କୋଡ଼ରେ ଧରି ତା'କୁ ଆମେ ଉପରକୁ ଫିଙ୍ଗି ଦେଇଥାଉଁ ଏବଂ ମାଙ୍କଡ଼ ଭଳି ପୁଣି ଗ୍ରୀବାରେ ଜାକି ଧରିଥାଉଁ । ତା'କୁ ଧରି ଆମେ ଘୂରାଇ ଥାଉଁ । ଏହିପରି ଅନେକ ପ୍ରକାର କ୍ରୀଡ଼ା ଆମେ କରିଥାଉଁ । ଏଥିରେ ପିଲାଟିକୁ ଖୁବ୍ ବେଶି ସୁଖ ମିଳିଥାଏ ଏବଂ ତା' ସହିତ ଖେଳୁଥିବା ଲୋକଟି ବି ଆତ୍ମବିଭୋର ହୋଇ ଯାଇଥାଏ । ସେତେବେଳେ ତା'ର ସକଳ ଶୋକ-ସନ୍ତାପ ଦୂର ହୋଇ ଯାଇଥାଏ । ଖେଳରେ ସେ ନିଜକୁ ଭୁଲି ଯାଇଥାଏ ।

ସୂତ କହୁଛନ୍ତି—"ହେ ମୁନିମାନେ ! ଗୋପୀମାନଙ୍କର ପୂର୍ବାନୁରାଗର ଦଶା ବିଷୟରେ ମୁଁ ବେଣୁ-ଗୀତ ଆଦି ପ୍ରସଙ୍ଗରେ ବର୍ଣ୍ଣନା କରିସାରିଛି । ଏବେ ମୁଁ ମିଳନ ପ୍ରସଙ୍ଗର ହିଁ ବର୍ଣ୍ଣନା କରୁଛି । ମୋହନଙ୍କ ମୁରଲୀର ମିଠା ମିଠା ଓ ମନୋହର ତାନ ଶୁଣି ବ୍ରଜାଙ୍ଗନାମାନେ ନିଜ ନିଜର ଘର-ଦ୍ୱାର ଛାଡ଼ି ଶ୍ୟାମସୁନ୍ଦରଙ୍କ ପାଖକୁ ଆସିଲେ । ସେମାନେ ତାଙ୍କ କୋଳରେ ବସି କ୍ରୀଡ଼ା କରିବା ପାଇଁ ବଡ଼ ଉତ୍ସୁକ ଥିଲେ । ଏବେ ଶ୍ରୀକୃଷ୍ଣଙ୍କ ପାଖକୁ ଆସି ଯିବାରେ ଆଖି ସହିତ ଆଖିର ମିଳନ ହୋଇଗଲା ; କିନ୍ତୁ ଆଖି ସହିତ ଆଖିର ମିଳନ ତ ଯଥାର୍ଥ ମିଳନ ନୁହେଁ । ହୃଦୟ ସହିତ ହୃଦୟର ମିଳନର ନାଁ ହେଉଛି ମିଳନ । କେହି କେହି ଅବଶ୍ୟ ଆଖିର ମିଳନକୁ ଠିକ୍ ମିଳନ ବୋଲି କହୁଛନ୍ତି ।

ତାହା କାହିଁକି ପରିହାସର ଛଳରେ କୁହାଯାଇଛି । ଆଖିର ମିଳନ ପ୍ରୀତ୍ୟାନୁରାଗକୁ ଆହୁରି ବଢ଼ାଇ ଥାଏ । ତାହା କାହିଁକି ମିଳନ ନୁହେଁ । ଶ୍ରୀକୃଷ୍ଣ ଯେ ମିଳନ ସ୍ପୃହ ନ ଥିଲେ, ତାହା ଠିକ୍ ନୁହେଁ । ତାଳ ଗୋଟିଏ ହାତରେ ଜମା ବାଜେ ନାହିଁ । ଗୋପୀମାନଙ୍କର ମିଳନ ଲାଗି ଉତ୍କଟ ଇଚ୍ଛା ଥିଲା ; କିନ୍ତୁ ଶ୍ରୀକୃଷ୍ଣ ମିଳନର ସ୍ୱୀକୃତ ଦେଲେ ନାହିଁ । ଆପଣମାନେ ପଚାରି ପାରନ୍ତି, 'ଗୋପୀମାନେ ତ ତାଙ୍କ ପ୍ରତି ଥିଲେ ଅନୁରକ୍ତା ଓ ତାଙ୍କର ଭକ୍ତ । ତା'ହେଲେ ଶ୍ୟାମସୁନ୍ଦର ସେମାନଙ୍କ ସହିତ ମିଳିତ ହେବାଲାଗି ସ୍ୱୀକୃତ କାହିଁକି ଦେଲେ ନାହିଁ ? ମୁଁ ତ ଏବେ ତୁମ୍ଭମାନଙ୍କୁ ବାରମ୍ବାର ଏ କଥା କହୁଅଛି । ଭାଇମାନେ ! ହଠାତ୍ ଯଦି କୌଣସି ଜିନିଷ ମିଳିଯାଏ, ତା'ହେଲେ ତାହାର ମିଳିବାରେ ସେତେଟା ସୁଖ ଆସେ ନାହିଁ, ଯେତେଟା ସୁଖ ଅତ୍ୟନ୍ତ ଉତ୍କଣ୍ଠାର ସହିତ ଏବଂବହୁଦିନ ଧରି ପ୍ରତୀକ୍ଷା ପରେ ପାଇଥିବା ଜିନିଷଟିରୁ ମିଳିଥାଏ । ଭୋକ କରୁ ନ ଥିବା ସମୟରେ ଜୋର ଜବରଦସ୍ତି କରି ଚଟଣି ଆଦିର ସାହାଯ୍ୟରେ ଯେଉଁ ଆହାର ପେଟରେ ଭରି ଦିଆଯାଇ ଥାଏ, ତହିଁରେ ରସ ନଥାଏ, ସ୍ୱାଦ ନଥାଏ, ତୃପ୍ତି ନଥାଏ, ଏବଂ ପୁଷ୍ଟି ନଥାଏ । ଭୋକ ଯେତେ ପ୍ରବଳ ହେବ, ଭୋଜନରେ ସେତେ ଅଧିକ ସ୍ୱାଦ ଆସିବ । ଗୋପୀମାନଙ୍କ ମିଳନର ଇଚ୍ଛା ଅବଶ୍ୟ ପ୍ରବଳ ଥିଲା ; କିନ୍ତୁ ତାହାକୁ ଆହୁରି ଅତି ପ୍ରବଳ କରିବା ଉଦ୍ଦେଶ୍ୟରେ ଭଗବାନ ଉପରକୁ ଦେଖାଇବା ପାଇଁ ମୁଣ୍ଡ ହଲାଇ ନାହିଁ କଲେ ଏବଂ ନିସ୍ପୃହାଶୀଳ ବାବାଜିଟିଏ ସାଜିଲେ । ସେ ଯେତେବେଳେ ଦେଖିଲେ ଯେ ଏମାନଙ୍କ ଅଭିଳାଷ ଅତି ଉତ୍କଟ ହୋଇ ଯାଇଛି, ସେତେବେଳେ କଠୋର ହୃଦୟ କୃଷ୍ଣଙ୍କ ହୃଦୟରେ ମଧ୍ୟ ଦୟାର ସଞ୍ଚାର ହେଲା । ସେହି ବ୍ରଜନାରୀମାନଙ୍କ ଦୀନତା, ବିନୟ ଓ ବିବଶତାରେ ପଥର ମଧ୍ୟ ତରଳିଗଲା । ଆତ୍ମାରାମ ହୋଇ କରି ମଧ୍ୟ ଭଗବାନ ସେହି ଗୋପୀମାନଙ୍କ ସାଥିରେ ରମଣ କଲେ ।"

ଶୌନକ ପଚାରିଲେ—"ସୂତ ମହାଶୟ ! ବ୍ରଜବଲ୍ଲଭ ନନ୍ଦନନ୍ଦନ ତ ହେଉଛନ୍ତି ଆତ୍ମାରାମ ଓ ଆପ୍ତକାମସ୍ୱାମୀ । ସେତ ନିଜ ଆତ୍ମା ସହିତ ହିଁ ନିତ୍ୟ ରମଣ କରୁଥାନ୍ତି । ସେ ତ ଥାଆନ୍ତି ନିତ୍ୟତୃପ୍ତ । ସେ ତ ଆପ୍ତକାମ । ତାଙ୍କର ପୁଣି ସ୍ପୃହା ଗୋଟାଏ କ'ଣ ? ଯେ ଆତ୍ମତୁଷ୍ଟ, ତାଙ୍କର ପୁଣି ଗୋପୀମାନଙ୍କ ସାଥିରେ ରମଣ କରିବାର କି ଆବଶ୍ୟକତା ଥିଲା ? ପୁଣି ଶ୍ରୀକୃଷ୍ଣ ତ ଥିଲେ ଏକାକୀ ଏବଂ ଗୋପୀମାନେ ଥିଲେ ଅସଂଖ୍ୟ । ସେ ଏକାକୀ ଥାଇ ସେ ସମସ୍ତଙ୍କ ସାଥିରେ କପରି ବା ରମଣ କଲେ ?"

ଏହା ଉପରେ ସୂତ ଉତ୍ତର ଦେଇ କହିଲେ—"ହେ ପ୍ରଭୁ ! ପ୍ରଥମେ ଆପଣ ବ୍ରଜ, ଆତ୍ମାରାମ ତଥା ଆପ୍ତକାମର ଅର୍ଥ ବୁଝି ନଅନ୍ତୁ । 'ବ୍ରଜ' ଶବ୍ଦର ଅର୍ଥ ହେଉଛି ବ୍ୟାପ୍ତି । ବ୍ୟାପକ ହୋଇଥିବା କାରଣରୁ ନନ୍ଦନନ୍ଦନଙ୍କ କ୍ରୀଡ଼ା-ଭୂମିର ନାମ ହୋଇଛି ବ୍ରଜ । ତାହା

ହେଉଛି ବ୍ୟାପକ ଓ ନିର୍ଗୁଣାତୀତ । କାରଣ ତାହା ହିଁ ତ ହେଉଛି ତିନି ଗୁଣରେ ବ୍ୟାପ୍ତ । ତାହା ହିଁ ସମସ୍ତଙ୍କର ଏକ ମାତ୍ର ଅଧିଷ୍ଠାନ । ପରିପୂର୍ଣ୍ଣ ଓ ବ୍ୟାପ୍ତ ହୋଇଥିବା କାରଣରୁ ସର୍ବବ୍ୟାପକ ପରଂବ୍ରହ୍ମଙ୍କ ନାମକୁ ବ୍ରଜ କୁହାଯାଇଥାଏ । ତାହା ସଦାନନ୍ଦସ୍ୱରୂପ, ପରମ ଜ୍ୟୋତିର୍ମୟ ଓ ଅବିନାଶୀ । ଯେଉଁ ବ୍ରହ୍ମ ସାକ୍ଷାତ୍ ପରଂବ୍ରହ୍ମ ସ୍ୱରୂପ, ତହିଁରେ ନନ୍ଦନନ୍ଦନ ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟ ନିବାସ । ତାହା ତାଙ୍କର ହିଁ ସ୍ୱରୂପ । ସେଥିପାଇଁ ନନ୍ଦନନ୍ଦନଙ୍କ ନାମ ବ୍ରଜବଲ୍ଲଭ ବୋଲି କୁହାଯାଇଛି । ଯେଉଁ ଲୋକମାନେ ଛତୁଆ ଖାଇ ପେଟ ପୋଷାଉଛନ୍ତି, ଯେଉଁମାନେ ଦୁର୍ବଳ ଓ ଶୁଷ୍କ ପ୍ରକୃତିର, ସେମାନେ ସେହି ବ୍ରଜବଲ୍ଲଭଙ୍କୁ ଅନୁଭବ କରି ପାରନ୍ତି ନାହିଁ । ପ୍ରେମିକ ରସିକମାନେ ହେଉଛନ୍ତି ସରସ ପ୍ରକୃତିର । ରସଗୋଲା ଭଳି ସେମାନଙ୍କ ଭିତର ବାହାର ପ୍ରେମ-ରସରେ ପାଗ ହୋଇଛି । ସେହିମାନେ ହିଁ କେବଳ ରସିକଶେଖରଙ୍କ ମଧୁର ରସକୁ ଅନୁଭବ କରିପାରନ୍ତି ।

ଭଗବାନଙ୍କୁ କାହିଁକି ଅତ୍ମାରାମ ଓ ଆପ୍ତକାମ ବୋଲି କୁହାଯାଇଛି, ଏବେ ଆମେ ଏହି କଥା ଉପରେ ବିଚାର କରିବା । ଶ୍ରୀରାଧିକା ହେଉଛନ୍ତି ନନ୍ଦନନ୍ଦନ ଶ୍ରୀ କୃଷ୍ଣଚନ୍ଦ୍ରଙ୍କର ଆତ୍ମା । ଭଗବାନ ତାଙ୍କ ସାଥିରେ ନିତିଦିନ ରମଣ କରୁଥାନ୍ତି । ଦୁହିଙ୍କ ଅନ୍ତରୂ ପ୍ରେମର ସମୁଦ୍ର ଉଚ୍ଛୁଳି ଉଠୁଥାଏ । ଦିନକୁଦିନ ନୂଆ ନୂଆ ପ୍ରେମ ବଢ଼ି ବଢ଼ି ଚାଲୁଥାଏ । ସେ ଦୁହିଙ୍କର ମିଳନ ନିରନ୍ତର ହେଉଥିଲେ ମଧ୍ୟ, ସର୍ବଦା ଏହି ଅନୁଭବ ଆସୁଥାଏ, ଯେପରି ପୂର୍ବରୁ ଦୁହେଁ କେବେହେଲେ ମିଳିତ ହୋଇ ନାହାନ୍ତି ଏବଂ ଏବେ ନୂଆ କରି ମିଳିତ ହେଉଛନ୍ତି । ଏହିଭଳି ଭାବରେ ରମଣ କରୁଥିବା ହେତୁ ତାଙ୍କୁ ଅତ୍ମାରାମ ବୋଲି କୁହାଯାଇଥାଏ ।

ଅଚ୍ଛା, ଆପ୍ତକାମର ଅର୍ଥ ପୁଣି କ'ଣ ? ଇଚ୍ଛାକୁ କାମନା ବୋଲି କୁହାଯାଇଥାଏ । ଇଚ୍ଛିତ ବସ୍ତୁଟିକୁ ପାଇବା ଲାଗି ଅଭିଳାଷ କରିବାର ନାମ ହେଉଛି କାମ । ବ୍ରଜରେ ରହି ପୁଣି ଭଗବାନଙ୍କର କି କାମନା ? ଗାଈମାନଙ୍କୁ ପାଳନ-ପୋଷଣ କରିବା, ଗଉଡ଼ ପିଲାମାନଙ୍କ ସାଥିରେ ଖେଳାଖେଳି କରିବା, ଗୋପୀମାନଙ୍କ ସାଥିରେ ମଧୁର ରସର କ୍ରୀଡ଼ା କରିବା, ଏବଂ ସରସ ଲୀଳାମଧ୍ୟ ବିହାର କରିବା ଆଦି ଭଗବାନଙ୍କୁ ବ୍ରଜରେ ପୂର୍ଣ୍ଣମାତ୍ରାରେ ମିଳିଥାଏ । ସେଥିପାଇଁ ତାଙ୍କ ନାମ ହୋଇଛି 'ଅପ୍ତକାମ' । ଏହି ଲୀଳାର ରହସ୍ୟକୁ ପ୍ରାକୃତ ଲୋକମାନେ ତାଙ୍କ କୃପା ବିନା ଅନୁଭବ କରି ପାରନ୍ତି ନାହିଁ । ଏହାର କାରଣ ହେଲା, ଏହା ହେଉଛି ପ୍ରକୃତିର ଅତୀତ । ହଁ, ଯେତେବେଳେ ଭଗବାନ ପ୍ରକାଶ୍ୟ ଭାବରେ ଅବତାର ନିଅନ୍ତି, ସେତେବେଳେ ପ୍ରାକୃତ ଲୋକମାନେ ମଧ୍ୟ ତାଙ୍କର ଅନୁଭବ କିଛିଟା କରିପାରନ୍ତି । ସେଥିପାଇଁ କେହି କେହି କହିଛନ୍ତି ଯେ ଭଗବାନଙ୍କ ଅବତାରଲୀଳା ହେଉଛି ଦୁଇ ପ୍ରକାର । ଗୋଟିଏ ହେଉଛି ବାସ୍ତବଲୀଳା ଏବଂ ଅପରଟି ବ୍ୟାବହାରିକ । ଲୀଳା ବାସ୍ତବଲୀଳାର ଜ୍ଞାନ ଆପେ ଆପେ ସ୍ଫୂର୍ତ୍ତି ହୁଏ । ତାହାର ଅନୁଭବ

ଭଗବାନ କରିପାରନ୍ତି ଏବଂ ତାଙ୍କର ଅନନ୍ୟ ଉପାସକ ରସିକ ଭକ୍ତଜନ ବି କରି ପାରନ୍ତି । ବ୍ୟାବହାରିକ ଲୀଳାର ସୃଷ୍ଟି ପ୍ରକୃତିକୁ ସାଥିରେ ନ ନେଇ ହୋଇ ନ ଥାଏ । ସେଥିପାଇଁ ପ୍ରକୃତି ସାଥିରେ ରହିଥିବାରୁ ପ୍ରାକୃତ ଲୋକମାନେ ଏହାକୁ ଦେଖିପାରନ୍ତି ; କିନ୍ତୁ ଏହା ବାସ୍ତବ ଲୀଳାଠାରୁ ସବୁ ଦୃଷ୍ଟିରୁ ଭିନ୍ନ । ଏହା ହେଉଛି ଆତ୍ମାରାମ ଓ ଆପ୍ତକାମ ଶବ୍ଦ ଦୁଇଟିର ବ୍ୟାଖ୍ୟା ।

ଏବେ ଆପଣଙ୍କ ମନରେ ଶଙ୍କା ଆସୁଛି ଯେ ଶ୍ରୀକୃଷ୍ଣ ଅସଂଖ୍ୟ ଗୋପୀଙ୍କ ସାଥିରେ କିପରି ରମଣ କଲେ ? ତାହାର ବି ଉତ୍ତର ଶୁଣନ୍ତୁ । ଯୋଗୀ ନିଜ ଇଚ୍ଛାବଳରେ ଅନେକ ରୂପ ଧରି ପାରନ୍ତି । ସମସ୍ତେ ଜାଣନ୍ତି ଯେ ମହର୍ଷି ସୌଭରି ଯୋଗବଳରେ ପଚ୍ଚାଶଟି ରୂପ ଧରି ମହାରାଜ ମାନ୍ଧାତାଙ୍କ ପଚ୍ଚାଶ ଜଣ କନ୍ୟାଙ୍କ ସାଥିରେ ରମଣ କରିଥିଲେ । ଯୋଗୀଙ୍କୁ ଯୋଗ-ପ୍ରଭାବରେ ସକଳ ସାମର୍ଥ୍ୟ ମିଳିଥାଏ । ସକଳ ଯୋଗର ଈଶ୍ୱର ହେଉଛନ୍ତି ଶିବ । ସେଥିପାଇଁ ତାଙ୍କୁ ଯୋଗେଶ୍ୱର କୁହାଯାଇଥାଏ । ସେହି ଶିବଙ୍କର ଯେ ହେଉଛନ୍ତି ଈଶ୍ୱର, ସେହି ଯୋଗେଶ୍ୱରେଶ୍ୱର ଶ୍ରୀକୃଷ୍ଣଚନ୍ଦ୍ରଙ୍କ ପକ୍ଷରେ ଏତେ ରୂପ ଧରିନେବାରେ କ'ଣ ବା ଆଶ୍ଚର୍ଯ୍ୟ ଅଛି ? ସବୁ ଗୋପୀ ଅନୁଭବ କଲେ ଯେ ଶ୍ୟାମସୁନ୍ଦର ସେମାନଙ୍କ ଆଡ଼କୁ ବାହୁ ବିସ୍ତାରିତ କରି ସେମାନଙ୍କୁ ହିଁ ଆଲିଙ୍ଗନ-ଦାନ କରିବାପାଇଁ ଉତ୍ସୁକ ହୋଇ ଉଠୁଛନ୍ତି ।"

ଶୌନକ କହିଲେ—"ସୂତ ମହାଶୟ ! ଆମ ଶଙ୍କାର ସମାଧାନ ହୋଇଗଲା । ଏବେ ଆଗିଲା କଥା କୁହନ୍ତୁ ? ଆଗକୁ କ'ଣ ଘଟିଲା ?"

ସୂତ ହସି ହସି କହିଲେ—"ମହାରାଜ ! ଆଗର କଥା କହିବାପାଇଁ ଏବେ ମୋ'ଠାରେ ସାମର୍ଥ୍ୟ ହିଁ ନାହିଁ । ଯାହା କରିବାପାଇଁ ବାକିଥିଲା, ଆଗକୁ ତାହା ହିଁ ହେଲା । ରମଣ ହେଲା ଏବଂ ରାସବିଳାସ ହେଲା । ତାହାର ବର୍ଣ୍ଣନା ମୁଁ ଏତେ ଲମ୍ବ ଦାଢ଼ି ଧରିଥିବା ଅବସ୍ଥାରେ କିପରି ବା କରିବି ? ସେଠାରେ ଯେଉଁମାନଙ୍କର ପ୍ରବେଶ ଥିଲା ସେମାନଙ୍କର କାହାରି ନିଶ-ଦାଢ଼ି ନଥିଲା । ଶ୍ରୀକୃଷ୍ଣଙ୍କର କିମ୍ବା କୌଣସି ଜଣେ ହେଲେ ଗୋପୀର ନିଶ ଦାଢ଼ି ନଥିଲା । ସମସ୍ତଙ୍କ ମୁହଁ ଥିଲା ସଫା ଏବଂ ସମସ୍ତଙ୍କ ମୁଣ୍ଡରେ କଳା କଳା କୁଞ୍ଚୁକୁଞ୍ଚିଆ ବାଳ ଭରି ରହିଥିଲା । ଧଳା ବାଳର ତ ସେଠାରେ ଦର୍ଶନ ହିଁ ନଥିଲା । ମୋ' ପିଙ୍ଗଳ ରଙ୍ଗର ଦାଢ଼ିକୁ କୌଣସି ଗୋପୀ ଯଦି ଦେଖି ନେଲା, ତା'ହେଲେ କେଉଁ ଲୋକରୁ କିଏ ଆସିଲା ବୋଲି ଭାବି ସେ ଡରି-ମରି-ପଳାଇଯିବ ; ତେଣୁ ହେ ପ୍ରଭୁ ! ରାସ-ବିଳାସର ବର୍ଣ୍ଣନା କରିବା ମୋ' ଶକ୍ତିର ବାହାରେ ଏବଂ ମୋ' ସାମର୍ଥ୍ୟର ଅତୀତ । ମୁଁ ଏହାର ବର୍ଣ୍ଣନା କରି ପାରିବି ନାହିଁ, କଦାପି କରି ପାରିବି ନାହିଁ । ଆପଣ ଏଥିପାଇଁ ମୋ' ପାଖରେ ଆଗ୍ରହ ଦେଖାନ୍ତୁ ନାହିଁ । ଆଗର କଥା ମୁଁ କହୁଛି ।"

ଶୌନକ ନମ୍ରତାର ସହିତ କହିଲେ—"ନାହିଁ ସୂତ ମହାଶୟ ! ଏମିତି କିଛି କଥା ନାହିଁ । ଭଗବାନଙ୍କ ସକଳ ଲୀଳାର ବର୍ଣ୍ଣନା ତ ବ୍ରହ୍ମା ବି କରି ପାରିବେ ନାହିଁ । ଗଙ୍ଗାର ସାରା ଜଳକୁ ପାତ୍ରରେ ଧରିକେହି ପ୍ରାଣୀ ବା ନେଇଯାଇପାରିବ ଏବଂ କହିପାରିବ ଯେ ମୁଁ ଗଙ୍ଗାକୁ ନେଇଆସିଛି ? ପକ୍ଷୀଟି କ'ଣ ଅନନ୍ତ ଆକାଶର ଆର ପାରିକୁ ପାଇପାରିବ ? ପୁଣି ବି ସେ ତ ନିଜ ସାମର୍ଥ୍ୟ ଅନୁସାରେ ଉଡ଼ିଥାଏ । ଆପଣ ଟାଳଟୁଳ କରନ୍ତୁ ନାହିଁ; ରାସ-ଲୀଳାର ବର୍ଣ୍ଣନା ଅବଶ୍ୟ ହିଁ କରନ୍ତୁ । ଆପଣ ପିଲମାନଙ୍କ ଭଳି ଖେଳ-କୌତୁକ କରୁ ନାହାନ୍ତି ତ ? ନାହିଁ ନାହିଁ କରି ଆପଣ ଆମର ଅଭିଳାଷକୁ ବଢ଼ାଇ ଦେଉ ନାହାନ୍ତି ତ ? ହେ ମହାଭାଗ ! ଆମେ ତ ପ୍ରଥମରୁ ହିଁ ଏହି ପ୍ରସଙ୍ଗଟି ଶୁଣିବା ପାଇଁ ଅତ୍ୟନ୍ତ ଉତ୍ସୁକ ରହି ଆସିଛୁ ।

ଏହା ଶୁଣିବା ପରେ ସୂତ ହସି ହସି କହିଲେ—"ଆହେ ମହର୍ଷିଜ ! ସେଭଳି କିଛି କଥା ନୁହେଁ । ସତ କହିବାକୁ ଗଲେ, ଏହି ବିଷୟଟି ବଡ଼ ଗମ୍ଭୀର । ମୋ' ଭଳି ଜଣେ ବିଷୟୀ ଲୋକଙ୍କର ଏହା କହିବାର ଅଧିକାର ନାହିଁ । ଆପଣ ଯେତେବେଳେ ଆଦେଶ ଦେଉଛନ୍ତି ଏବଂ ଆଗ୍ରହ ଦେଖାଉଛନ୍ତି, ସେତେବେଳେ ମୁଁ ଅବଶ୍ୟ ଆପଣଙ୍କ ଆଦେଶ ପାଳିବି । ମୋ'ର ଯେତିକି ବୁଦ୍ଧି ଓ ଯେତିକି ଶକ୍ତି, ସେହି ଅନୁସାରେ ଅବଶ୍ୟ ମୁଁ ଏହାର ବର୍ଣ୍ଣନା କରିବି । ଏବେ ଆପଣମାନେ ସମସ୍ତେ ସମାହିତ ଚିତ୍ତରେ ଏହି ପୁଣ୍ୟମୟ ପ୍ରସଙ୍ଗଟିକୁ ଶୁଣିବା ହୁଅନ୍ତୁ ।"

## ଛପ୍ପୟ

ବାଲ୍ୟପାପମହଁ ଜକର ଫିରେଁ ବନ ରଞ୍ଜପଡ ସମ ହର ।
କନ୍ୟାଂ ହରନ ପଗ ହରନ କରନ ସଁଗ ମତମାଡ଼ତା କର ॥
କୃଷ୍ଣକୀରତନ କରନ୍ତ କଂଠ କଲ ସବ ମିଲ ଗାଓୟେଂ ।
ନଟବର ବେନୁ ବଜାଇ ତାଲମହଁ ତାଲ ମିଲାଓୟେଂ ॥
ବନ ବନ ବଚରତ ସଖିନ ସଁଗ, ଆୟେ ଗିରଧର ପୁଲିନମହଁ ।
ଯମୁନାତଟ ଶୀତଳ ସୁଖଦ, ସରସ ବାଲୁକା ରମ୍ୟ ଜହଁ ॥

# ଆତ୍ମାରାମଙ୍କ ରମଣ

ବାହୁପ୍ରସାର ପରିରମ୍ଭକରାଳକୋରୁ—
ନୀବୀସ୍ତନାଳଭନନର୍ମ ନଖାଗ୍ରପାତୈଃ
କ୍ଷ୍ୱେଲ୍ୟାବଲୋକହସିତୈ ର୍ବ୍ରଜସୁନ୍ଦରୀଣାମ୍
ଉତ୍ତମ୍ଭୟନ୍ ରତିପତିଂ ରମୟାଞ୍ଚକାର ॥

(ଶ୍ରୀଭା: ୧୦ ସ୍କ, ୨୯ ଅ, ୪୬ ଶ୍ଳୋକ)

### ଛପ୍‌ପୟ

ଚଞ୍ଚଳ ତରଳ ତରଙ୍ଗ ସଙ୍ଗ ଶୀତଳ ମଳୟାନିଳ ।
କୁସୁମ କୁମୁଦିନୀ ଗନ୍ଧ ପବନ ସଁଗ ଖେଲେ ହିଲ୍‌ମିଲ ॥
ତହିଁ ରାସେଶ୍ୱର ଆଇ ରମଣ ରମଣିନ ସଁଗ କୀନ୍ହୋଂ ।
କାମକଲତେଂ ସକଲ ଅଲୌକିକ ସୁଖ ଅତି ଦୀନ୍ହୋଂ ॥
ତନୁ ପୁଲକିତ ହୁଲସିତ ହୃଦୟ, ହଁସହିଁ ହାଥ ଫୈଲାଇକେଂ ।
ମିଲହିଁ ପରସ୍ପର ପ୍ରେମତେଂ, ଭରମାମେଂ ଲେକାଇକେଂ ॥

ଯାହା ଅନୁଭବର ବିଷୟ ଏବଂ ରହସ୍ୟମୟ ତାହାର ବର୍ଣ୍ଣନା ଭାଷାରେ ହୋଇ ପାରିବ ନାହିଁ । କେତେଗୁଡ଼ିଏ ବୁଢ଼ି ରହସ୍ୟମୟ ଶବ୍ଦ ଅଛି, ଯେଉଁଗୁଡ଼ିକ ଏ ବିଷୟରେ ବ୍ୟବହୃତ ହୋଇଥାଏ । ତାହାର ଅର୍ଥ ପରମ୍ପରା ଅନୁସାରେ ହିଁ ବୁଝା ଯାଇଥାଏ । ଉଦାହରଣ ସ୍ୱରୂପ 'ପିଣ୍ଡ' ଶବ୍ଦଟିକୁ ନିଆଯାଉ । କେହି ଯଦି କୁହେ, 'ମୋ'ର ବାପାଙ୍କ ପିଣ୍ଡ ଦେବାକୁ ଅଛି,' ତା'ହେଲେ ଛୋଟରୁ ଛୋଟ ପିଲାଟିଏ ବି ଏହାର ଅର୍ଥ ବୁଝିଯିବ ; କିନ୍ତୁ ଯେଉଁ ଦେଶଗୁଡ଼ିକର ଲୋକେ ପୁନର୍ଜନ୍ମର ସିଦ୍ଧାନ୍ତକୁ ମାନନ୍ତି ନାହିଁ, ଯେଉଁଠି ଶ୍ରାଦ୍ଧ-ତର୍ପଣ ହୁଏ ନାହିଁ, ସେମାନଙ୍କୁ ପିଣ୍ଡ ଶବ୍ଦର ଅର୍ଥ ବୁଝାଇବାକୁ ଗଲେ କହିବାକୁ ହେବ ଏହା ଅନ୍ନର ଗୋଳା । ଏହା ମୃତ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଦିଆଯାଉଥିବା ଖାଦ୍ୟ' । ଏସବୁର ଯାହାକିଛି ଭାବ ତାହା କିନ୍ତୁ ସେମାନେ ବୁଝି ପାରିବେ ନାହିଁ । ଉପନିଷଦଗୁଡ଼ିକରେ ବହୁତ ଯନ୍ତ୍ର ଅଛି, ଯାହାର ପରମ୍ପରା ଏବେକୁ ନଷ୍ଟ ହୋଇ ଯାଇଛି । ଏବେ ସେଗୁଡ଼ିକୁ କିଏ ଉଦ୍ଧାର କରିବାକୁ ଚାହିଁଲେ ଜମା କରି ପାରିବ ନାହିଁ । ଏହାର

କାରଣ ହେଲା ସେଗୁଡ଼ିକରେ ଯେଉଁ ପ୍ରଚଳିତ ଶବ୍ଦମାନ ଅଛି, ତାହାର ସ୍ୱରୂପ ଆମକୁ ଜଣା ନାହିଁ । ଆଜି 'ସର୍ବତୋଭଦ୍ରଚକ୍ର'ଟିଏ ତିଆରି କରିଦେବାପାଇଁ କହିଲେ ଅତି ଶ୍ରେଷ୍ଠ କର୍ମକାଣ୍ଡୀ ଲୋକ ଜଣେ ମଧ୍ୟ ବହୁ ପରିଶ୍ରମରେ ତାହା ତିଆରି କରି ଦେଇ ପାରୁଛନ୍ତି ; କିନ୍ତୁ ତାଙ୍କୁ ଲେଖିକରି ବୁଝାଇଲେ ସେ ତାହା ବୁଝି ପାରିବେ ନାହିଁ । ମୁଦ୍ରାଗୁଡ଼ିକର କଥା ମଧ୍ୟ ଠିକ୍ ସେହିପରି । ଯେଉଁମାନେ ପରମ୍ପରାକ୍ରମେ ମୁଦ୍ରାଗୁଡ଼ିକୁ ଶିଖିଛନ୍ତି, ସେମାନେ ଖୁବ୍ ଶୀଘ୍ର ଶୀଘ୍ର ସେଗୁଡ଼ିକୁ ଦେଖାଇ ଦେଇପାରିବେ । କିନ୍ତୁ ପଢ଼ିକରି ଯଦି କେହି କୌଣସି ମୁଦ୍ରା ଶିଖିବାପାଇଁ ଚାହାନ୍ତି, ତା'ହେଲେ ତାହା ଅତି କଠିନ ହୋଇଥାଏ । ଠିକ୍ ଅନୁରୂପ ଭାବରେ ଭଗବାନ ଆନନ୍ଦକନ୍ଦ ଗୋପୀମାନଙ୍କ ସାଥିରେ ଯେଉଁ ରମଣ କରିଥିଲେ ତାହା ବାଣୀ ଓ ଲେଖନୀର ଅତୀତ । ପ୍ରାଣୀ ଯଦି ଗୋପୀଭାବ-ଦ୍ୱାରା ଭାବିତ ହୋଇ ନଥିବ, ତା'ହେଲେ ସେ ତାହାକୁ ଅନୁଭବ କରି ପାରିବ ନାହିଁ । ତେଣୁ ଏହା କହିବାର ବିଷୟ ନୁହେଁ କିମ୍ବା ଶୁଣିବାର ବି ବିଷୟ ନୁହେଁ । ଅନେକ ଜନ୍ମର ସାଧନା ପରେ ଯାଇ ମନୁଷ୍ୟ ଏହି ବିଷୟଟିକୁ ଅନୁଭବ କରିବାର ଯୋଗ୍ୟତା ହାସଲ କରିଥାଏ । ଏ କଥା ତ ଆମେ ବାରମ୍ବାର କହିଛୁ ଯେ ଗୋପୀ ପୁରୁଷ ନୁହେଁ କିମ୍ବା ସ୍ତ୍ରୀ ନୁହେ କିମ୍ବା ନପୁଂସକ ନୁହେଁ । ଏହା ହେଉଛି ଏକ ଭାବ ଯାହାକି ଲିଙ୍ଗାଦିମାନଙ୍କୁ ଅତିକ୍ରମ କରିଥିବା ବସ୍ତୁ । ପୁଣି ମଧ୍ୟ କେବଳଲୀଳା ନିମିତ୍ତ ଗୋପୀମାନଙ୍କର ସ୍ତ୍ରୀ ବେଶ ଏବଂ ଶ୍ୟାମସୁନ୍ଦରଙ୍କର ପୁରୁଷ-ବେଶ । ସ୍ତ୍ରୀ-ପୁରୁଷଙ୍କ ମଧ୍ୟରେ ଯେଉଁ ପାରସ୍ପରିକ କ୍ରୀଡ଼ାମାନ ହୋଇଥାଏ, ତାହା ଗୋପୀମାନଙ୍କ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ହୋଇଥାଏ ; ତେଣୁ ଏହି ଉପାସନାର ଅଧିକାର ବି ଶେଷ ସ୍ତରରେ ସ୍ତ୍ରୀଲୋକମାନଙ୍କଠାରେ ଅଛି, କାରଣ ସେମାନେ ସଂସାରରେ ପତିଙ୍କୁ ପ୍ରେମ କରି ସାରିଛନ୍ତି । ସେହି ପ୍ରେମକୁ ସେମାନଙ୍କ ପକ୍ଷରେ ଭଗବାନଙ୍କ ଆଡ଼କୁ ମୋଡ଼ି ଆଣିବାକୁ ହୋଇଥାଏ । ଯେ କେବେହେଲେ କାହାକୁ ପ୍ରେମ କରିନାହିଁ, ସେ ଭଗବାନଙ୍କୁ ପ୍ରେମ କରିପାରିବ ନାହିଁ । ଯେଉଁ କ୍ଷେତରେ ଘନାବନା ଗଛ, ଦୁବୁରା, ଗନ୍ଧ, ବାବୁଲ ଆଦି ଜନ୍ମୁଛି, ସେଠାରେ ଗହମ ଉତ୍ପନ୍ନ ହେବାର ସମ୍ଭାବନା ଅଛି ; କିନ୍ତୁ ଯାହା ସବୁ ଦୃଷ୍ଟିରୁ ଦେଖିଲେ ଟାଙ୍ଗରା ଭୂଇଁ, ଯେଉଁଠି କିଛି ଜନ୍ମୁ ନାହିଁ, ସେଠି କୌଣସି ଫସଲ ଉତ୍ପନ୍ନ ହେବାର କ'ଣ ବା ସମ୍ଭାବନା ଅଛି ?

କୌଣସି ଜଣେ ସନ୍ଥ ପୁରୁଷଙ୍କ ପାଖକୁ ଜଣେ ଜିଜ୍ଞାସୁ ଲୋକ ଗଲେ ଏବଂ କହିଲେ—"ମତେ ଆପଣ ପ୍ରେମ-ମାର୍ଗର ଦୀକ୍ଷା ଦିଅନ୍ତୁ ।"

ସନ୍ଥ ପଚାରିଲେ—"ସଂସାରରେ ତୁମେ ଆଜିଯାଏ କାହାକୁ ପ୍ରେମ କରିଛ ?"

ସେ କହିଲେ—"ନା ମହାରାଜ ! ମୁଁ କାହାକୁ ହେଲେ ପ୍ରେମ କରିନାହିଁ ।"

ସନ୍ଥ କହିଲେ—"ତୁମେ ତା'ହେଲେ ଯାଅ; ସଂସାରରେ କାହାକୁ ଜଣକୁ ପ୍ରେମ କରିବାପାଇଁ ଶିଖ । ପ୍ରଥମେ ସ୍ଲେଟ୍ ଉପରେ ଲେଖିବା ଶିଖ । ହାତ ସିଧା ହୋଇଗଲେ

କାଗଜ ଉପରେ ବି ଲେଖିପାରିବ ।'' ଏହାର ସାରକଥା ହେଲା, ସାଂସାରିକ ପ୍ରେମ ହେଉଛି ପ୍ରେମ-ମହାବିଦ୍ୟାଳୟର ପ୍ରାଥମିକ ପାଠ । ଏହି ସଂସାର ହେଉଛି ପ୍ରାଥମିକ ପାଠଶାଳା ଯେଉଁଠି ପଢ଼ା ଆରମ୍ଭ ହୋଇଥାଏ । ପୂର୍ବେ ଚକ୍ଷୁ ଚିକିତ୍ସକ ଚକ୍ଷୁ-ଚିକିତ୍ସା ଲାଗି ଏହିଭଳି ଭାବରେ ଶିକ୍ଷା ଦେଉଥିଲେ । ସେ ତ କୌଣସି ଗୋଟିଏ ପାତ୍ରରେ ପାଣି ନେଇ ତାହା ଉପରେ ସୂକ୍ଷ୍ମ ଲେମ୍ବୁଟିଏ ନେଇ ରଖୁଥିଲେ ଏବଂ ଛାତ୍ରମାନଙ୍କୁ କହୁଥିଲେ, ''ଏହା ଭିତରେ ଏଭଳି ଭାବରେ ଛୁଞ୍ଚିମାର, ଯାହା ଫଳରେ ପାଣି ହଲିବ ନାହିଁ; ଅଥଚ ଛୁଞ୍ଚିଟି ଲେମ୍ବୁ ଭିତରେ ପ୍ରବେଶିବ ।'' ଏଠାରେ ଫଳରେ ଛୁଞ୍ଚି ଗଳାଇବାର ତାତ୍ପର୍ଯ୍ୟ ହେଲା ଆଖିରେ ଛୁଞ୍ଚି ଚଳାଇବାର ଅଭ୍ୟାସ କରିବା । ହାତକୁ ଏପରି ହାଲୁକା କରିବାକୁ ପଡ଼ିବ ଯେ ଆଖିର ପରଦାକୁ ଚିରିବାରେ ଆଖିର କୌଣସି ପ୍ରକାର ଅନିଷ୍ଟ ହେବନାହିଁ । ଯେଉଁମାନେ ଶିକ୍ଷା ବିନା ଅନଧିକାର କର୍ମ କରିବେ, ସେମାନେ ସଫଳ ହୋଇପାରିବେ ନାହିଁ । ପ୍ରେମ-ସାଧନା ହେଉଛି ଅନୁଭବର ବସ୍ତୁ । ସମସ୍ତେ ଏହାକୁ କହିବାପାଇଁ କିମ୍ବା ଶୁଣିବା ପାଇଁ ଅଧିକାରୀ ହୋଇ ନଥାନ୍ତି । ସେଥିପାଇଁ ତ ମୁନିମାନେ ଏହାକୁ ଅତି ଗୁପ୍ତ ରଖିଛନ୍ତି । ଯେଉଁଠି ବା ଏହାର ବର୍ଣ୍ଣନା ଅଛି, ତାହା ଅଛି ଅତି ରହସ୍ୟମୟ ଭାବରେ ।''

ସୂତ କହୁଛନ୍ତି—''ହେ ମୁନିମାନେ ! ଭଗବାନ ଗୋପୀମାନଙ୍କ ସହିତ ଯେଉଁ ଭଳି ଭାବରେ ରମଣ କରିଥିଲେ, ତାହା ବର୍ଣ୍ଣନା କରିବାପାଇଁ ଆପଣମାନେ ମତେ ଆଦେଶ ଦେଉଛନ୍ତି ; କିନ୍ତୁ ସତକଥା କହିବାକୁ ଗଲେ ସେଥିକି ମୋ'ର ସାହସ ନାହିଁ । ହେ ମହାଭାଗମାନେ ! ମୂକ ଲୋକ ଗୁଡ଼ ଖାଇ ମଧ୍ୟ ତାହାର ସ୍ୱାଦୁ ବିଷୟ ବର୍ଣ୍ଣନା କରିପାରେ ନାହିଁ । ତାହାକୁ ଯଦି ପଚାରିବ, 'ଲଡୁଣୀର ସ୍ୱାଦୁ କିପରି, ସେ କହିବ 'ଭାରି ଭଲ' । ଏହାଠାରୁ ଅଧିକ ବା ସେ କ'ଣ କହି ପାରିବ ? ସେଥିପାଇଁ ମୋ'ର ଗୁରୁଦେବ ଭଗବାନ୍ ଶୁକ ଏହି ବିଷୟର ବର୍ଣ୍ଣନା ଅତି ସଂକ୍ଷିପ୍ତ ଭାବରେ ଓ ସାଙ୍କେତିକ ଢଙ୍ଗରେ କରିଛନ୍ତି । ତାଙ୍କର ପଦଚିହ୍ନକୁ ଅନୁସରଣ କରି ମୁଁ କିଛି କହିବି ; କିନ୍ତୁ ମୋ'ଠାରେ ଏତେଟା ଯୋଗ୍ୟତା ନାହିଁ ; ତେଣୁ ମୁଁ ଏଥିରେ ସଫଳ ହୋଇ ପାରିବିନାହିଁ ।''

ହଁ ସେହିଠାରୁ ଭଗବାନଙ୍କ ସ୍ୱୀକୃତି ମିଳିବା ଉତ୍ତାରୁ ବ୍ରଜାଙ୍ଗନାମାନଙ୍କ ମୁଖ-ପଦ୍ମଟିମାନ ଫୁଲ୍ ଫୁଲ୍ ହସି ଉଠିଲା, ହସ ହସ ମୁହଁରେ ସେହି ସ୍ତ୍ରୀମାନେ କୋଟି କନ୍ଦର୍ପଙ୍କ ଦର୍ପକୁ ଦଳନ କରୁଥିବା ଶ୍ରୀକୃଷ୍ଣଙ୍କ ଆଡ଼େ କମନୀୟ କଟାକ୍ଷ ଚାଳି ବୁଲୁଁଲେ । ସେମାନଙ୍କ ସ୍ୱହାଣିରେ ଅନୁରାଗ ଭରି ଉଠୁଥିଲା । ମଦନମୋହନଙ୍କ ମୁରୁକି ମୁରୁକି ହସ ମନକୁ ମୋହି ଦେଉଥିଲା । ତାଙ୍କ ଦାନ୍ତଗୁଡ଼ିକର କାନ୍ତି ଥିଲା କୁନ୍ଦ-କଢ଼ି ଭଳି କମନୀୟ । ସେ ବ୍ରଜାଙ୍ଗନାମାନଙ୍କ ଗହଣରେ ଥାଇ ତାରା-ମଣ୍ଡଳର ଘେରରେ ଥିବା ଚନ୍ଦ୍ରଙ୍କ ଭଳି ସୁନ୍ଦର ଶୋଭା ପାଇବାକୁ ଲାଗିଲେ ।

ଭଗବାନ ସେହି ବ୍ରଜାଙ୍ଗନାମାନଙ୍କ କଣ୍ଠରେ ଗଳ-ବସ୍ତ୍ର ପିନ୍ଧିଥିବା କାମଦେବ ସମାନ ଶୋଭା ପାଉଥିଲେ । ସେ ବୈଜୟନ୍ତୀ ମାଳା ପିନ୍ଧି ସେମାନଙ୍କ ସମସ୍ତଙ୍କ ସଙ୍ଗରେ ଉତ୍ପଳ ଭଳି ବଣରେ ଏଣେ ତେଣେ ବୁଲୁଥିଲେ । ସେହି କୃଷ୍ଣପ୍ରିୟା କାମିନୀମାନଙ୍କର କଣ୍ଠ ଥିଲା କୋଇଲିର କଣ୍ଠ ଭଳି କମନୀୟ । ସେମାନେ ନିଜ ନିଜର ସେହି କଣ୍ଠରେ କୃଷ୍ଣଙ୍କ ସୁନ୍ଦର କୀର୍ତ୍ତିକୁ ଗାନ କରୁଥିଲେ । ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କ ସ୍ୱର ସହିତ ସ୍ୱର ମିଳାଇ ଏବଂ ଲୟ ସହିତ ଲୟ ମିଳାଇ ସେମାନଙ୍କ ଗାନକୁ ଅନୁକରଣ କରୁଥିଲେ । ସେମାନଙ୍କ ତାଳ ସହିତ ତାଳ ମିଳାଇ ସେ ନିଜେ ବି ଗାଇ ଉଠୁଥିଲେ । ନିଜର ସୁଖଦ ସ୍ପର୍ଶଦ୍ୱାରା ସେମାନଙ୍କ ଦେହକୁ ପୁଲକିତ କରାଇ ଦେଇ ସେ ସେମାନଙ୍କୁ ବଣର ଶୋଭା ଦେଖାଉଥିଲେ । କ୍ଷଣକୁ କ୍ଷଣ ବ୍ରଜାଙ୍ଗନାମାନଙ୍କର ଅନୁରାଗ ବଢ଼ି ଉଠୁଥିଲା ; ତେଣୁ ବୁଲାବୁଲି କରିସାରିବା ପରେ ରମଣ ଲାଗି ଇଚ୍ଛା ଅତି ଉତ୍କଟ ହୋଇ ଉଠୁଥିଲା । ସେହି ଇଚ୍ଛାକୁ ପୂରଣ କରିବା ଉଦ୍ଦେଶ୍ୟରେ ଯଶୋଦାନନ୍ଦନ ଯମୁନାର ପବିତ୍ର କୂଳ ନିକଟକୁ ଆସିଲେ । ସେଠାକାର ବାଲି ଥିଲା ସରସ, ସୁନ୍ଦର, ନିର୍ମଳ ଓ କର୍ପୂର ଭଳି । ତାହା ପାଦକୁ ଯଲ ଯଲ କରି ଦେଉଥିଲା । ଜଣା ଯାଉଥିଲା, ସତେ ଅବା କେହି କଣେ କୋମଳ ଶଯ୍ୟା ଉପରେ ସୁଖଦ ଆସ୍ତରଣଟିଏ ବିଛାଇ ଦେଇଛି । ସେଠାରେ ଯେତେଜଣ ଗୋପୀ ଥିଲେ ସେତିକି ସଂଖ୍ୟାର କୃଷ୍ଣ୍ୟ ନନ୍ଦନନ୍ଦନ ନିଜ ଯୋଗମାୟାର ସାହାଯ୍ୟରେ ତିଆରି କରିଦେଲେ । ପ୍ରତ୍ୟେକ ରମଣୀ ସହିତ ରମଣ କରିବାର ଇଚ୍ଛା ନେଇ ରାଧାରମଣ କୁଞ୍ଜରେ ପ୍ରବେଶ କଲେ । ସେହି ସମୟର ଦୃଶ୍ୟ ଥିଲା ଅଲୌକିକ । ବାହାରେ ବହୁଥିଲା ମଳୟ ପବନ । ଯମୁନାର ତୃଙ୍ଗ ତରଙ୍ଗର ସଂସ୍ପର୍ଶରେ ତାହା ଶୀତଳ ଓ ପରମ ସୁଖଦ ହୋଇ ଉଠିଥିଲା । କଇଁଫୁଲ-ଗୁଚ୍ଛର ବାସନାରେ ତାହା ମହକି ଉଠୁଥିଲା ଏବଂ ଶ୍ରୀକୃଷ୍ଣଙ୍କ ଭୟରେ ତାହା ପାଦକୁ ଛପି ଛପି ପକାଇ ଧୀରେ ଧୀରେ ବହୁଥିଲା । ଗୋପୀମାନେ ଥିଲେ ଅଚ୍ୟୁତଙ୍କର ଅନନ୍ୟ ଉପାସିକା । ସେହି ଆନନ୍ଦମୟ ମୂର୍ତ୍ତିରେ ସେ ସେମାନଙ୍କର ସଂକଳ୍ପକୁ ପୂରା କଲେ । ସେ ଥିଲେ ପ୍ରାଣପତି ଓ ପ୍ରିୟତମ ଏବଂ କାମ-କଳାରେ ଅତି ଧୁରନ୍ଧର । ସେ ପ୍ରିୟତମାମାନଙ୍କର ବହୁଦିନର ଅଭିଳାଷକୁ ପୂର୍ତ୍ତି କଲେ । ବାହୁ-ପ୍ରସାର, ଆଲିଙ୍ଗନ, କର, କଙ୍କଣ, ହୃଦୟାଦି ସ୍ପର୍ଶ, କଟି ବସ୍ତ୍ର-ମୋକ୍ଷଣ, ନର୍ମ, ନଖ-ଦନ୍ତ-କ୍ଷତ, ଭ୍ରୂକୁ କଟାକ୍ଷ, ମନ୍ଦ ମନ୍ଦ ହାସ ତଥା ଅନ୍ୟ ଯାହା କିଛି କରଣୀୟ, ତାହା କରି ସେ ସେମାନଙ୍କ କାମ-ସନ୍ତପ୍ତ ହୃଦୟକୁ ଶାନ୍ତ କଲେ । ସେ ସେମାନଙ୍କୁ ସୁଖ ଦେଲେ, ସେମାନଙ୍କର ବଶ ହୋଇଗଲେ ଏବଂ ସେମାନଙ୍କ ପାଖରେ ଦୀନତା ଦେଖାଇବାକୁ ଲାଗିଲେ । ସେ ବାରମ୍ବାର ସେମାନଙ୍କୁ ପ୍ରଶଂସା ଭିକ୍ଷା କଲେ । ଏବେ ସେହି ଗୋପୀମାନଙ୍କର ଅଭିମାନ ବଢ଼ିଗଲା । ଏପର୍ଯ୍ୟନ୍ତ ସେମାନେ ପାଣିରେ ଭିଜ ଯାଇଥିବା ବିରାଡ଼ି ଭଳି ମିଆଁଉ ମିଆଁଉ କରି ଅସୁଥିଲେ । ଏବେ କିନ୍ତୁ ସେମାନେ ସିଂହ ଭଳି ଗର୍ଜିବାକୁ ଲାଗିଲେ ।"

ସୂତ କହୁଛନ୍ତି—"ହେ ମୁନିମାନେ ! ମଣିଷର ନିଜର ପୂର୍ବ ସ୍ମୃତିର ସ୍ପଷ୍ଟ ଛାପ ମନେ ରହୁଥାନ୍ତା, ତା'ହେଲେ ତା' ମନରେ କେବେହେଲେ ଅଭିମାନ ଆସୁନଥାନ୍ତା ଏବଂ ସେ କେବେହେଲେ ଭଗବାନଙ୍କୁ ଭୁଲିଯାଉ ନଥାନ୍ତା । ପୂର୍ବ ସ୍ମୃତିକୁ ଭୁଲିକରି ହିଁ ଜୀବ ଭଗବାନଙ୍କଠାରୁ ନିଜକୁ ପୃଥକ୍ ବୋଲି ଭାବିବାକୁ ଲାଗେ ଏବଂ ଅଶାନ୍ତ ହୋଇ-ଉଠେ । ସେ ନିଜର ସୁଖଦାତା ସଚ୍ଚିଦାନନ୍ଦଙ୍କୁ ନିଜ ଭିତରେ ନ ଖୋଜି ବାହାରେ ଖୋଜି ବସେ ; କିନ୍ତୁ ସେ ତ ଦୂରରେ ନଥାନ୍ତି । ସେ ବରଂ ଥାଆନ୍ତି ପାଖରେ, ଗୋପନ ଭାବରେ ହୃଦୟର କୋଠରୀ ଭିତରେ । ମଣିଷ ତାଙ୍କୁ ସେଠାରେ ନ ଖୋଜି ବାହାରେ ଖୋଜୁଥାଏ । ଗୋପୀମାନଙ୍କ ମନରେ ଯେତେବେଳେ ଅଭିମାନ ଆସିଗଲା, ସେତେବେଳେ ଭଗବାନ୍ ଭାବିଲେ—"ଆରେ ! ଏ ତ ଆଉ ଜଣେ ଅନ୍ୟ ପ୍ରେମିକ ଆସି ଏମାନଙ୍କ ହୃଦୟକୁ ଅଧିକାର କରି ବସିଛି ।' ସେହି ପ୍ରେମିକକୁ ନଷ୍ଟ କରିବା ଉଦ୍ଦେଶ୍ୟରେ ତା'କୁ ମାରିବାଲାଗି ଭଗବାନ ଗୋଟିଏ ଉପାୟ ବିଷୟରେ ଚିନ୍ତା କଲେ ।"

## ଛପ୍ପୟ

କବହୁଁ ଖଞ୍ଜନଡେ଼ୌଂ ଦୀନ ହୋହିଁ ପୁନି କବହୁଁ ଅକଡେ଼ଂ ।।
ହୃଦୟ, ମୁଖ, କର, କଟି, କେଶ କରନିତେଂ ପୁନି ପୁନି ପକଡେ଼ଂ ।।
କରି କରି କ୍ରୀଡ଼ା କଲିତ ପ୍ରେମରସମାହିଁ ଭିଗୋଇଂ ।
କୁସୁମ କଲୀ ସମ ସକଲ ସରସତା ମାହିଁ ଡ଼ୁବୋଇଂ ।।
ଜଗପତି ପରବଶସେ ଭୟେ କରୀଂ ତୃପ୍ତ ଅତି ସୁଖ ଦୟୌ ।
ପାଇ ମାନ ଅତି ଶ୍ୟାମତେଂ, ମାନ ସବନି ହୃଦୟମହିଁ ଭୟୌ ।।



## ଅନ୍ତର୍ଦ୍ଧାନ

ତାସାଂ ତତ୍ ସୌଭଗମଦଂ ବୀକ୍ଷ୍ୟ ମାନଂ ଚ କେଶବଃ ।
ପ୍ରଶମାୟ ପ୍ରସାଦାୟ ତତ୍ରୈବାନ୍ତରଧୀୟତ ।।

(ଶ୍ରୀ ଭା. ୧୦ ସ୍କ, ୨୯ ଅ ୪୮ ଶ୍ଳୋକ)

## ଛପ୍ପୟ

ଜିହ୍ନ ହୃଦୟମହଁ ମନହରନ ମାନ ତହଁ ଉପୁଯସି ଆୟୋ ।
ସମୁଝି ଗୟେ ଘନଶ୍ୟାମ ଦୃଶ୍ୟ ଅତି ଦୁଖଦ ଦଖାୟୋ ॥
କରନ କୃପା ମଦହରନ ରମନତେଂ ବିରତ ଭୟେ ତବ ।
ଅନ୍ତର୍ଧାନ ସୁଜାନ ଭୟେ ବିଲଖେଂ ଗୋପୀ ସବ ॥
ପତି ବିନୁ ନାରୀ ବିକଲ ଜୌଂ, ହଥିନୀ ଜୌଂ ବିନୁ ଯୂଥପତି ।
ତୌଂ ବ୍ୟାକୁଲ ଗୋପୀ ଭଇଂ, ନିରଖି ନିକୁଞ୍ଜ ନ ପ୍ରାନପତି ॥

ସଂସାରରେ ଯେଉଁ ଜିନିଷଗୁଡ଼ିକୁ ଖରାପ ବୋଲି ବୁଝାଯାଇଥାଏ, ସେଗୁଡ଼ିକ ଯଦି ଭଗବାନଙ୍କଠାରେ ଲାଗିଯାଏ ତା' ହେଲେ ଭଲ ହୋଇ ଯାଇଥାଏ । କାମ, କ୍ରୋଧ, ତଥା ଭୟ ଆଦି ହେଉଛି ସଂସାରରେ ଖରାପ କଥା । ଯଦି ଏଗୁଡ଼ିକ ଭଗବାନଙ୍କ ପ୍ରତି ପ୍ରଯୁକ୍ତ ହୋଇଥାଏ, ତେବେ ଏ ଗୁଡ଼ିକ ହିଁ ପରମପଦର ପ୍ରାପ୍ତି ଲାଗି ସାଧନ ହୋଇ ଉଠିଥାଏ । ସଂସାରରେ ଅଭିମାନ କରିବା ଏବଂ ନିଜର ସୌଭାଗ୍ୟକୁ ନେଇ ଗର୍ବୋନ୍ମତ୍ତ ହୋଇ ଉଠିବା ହେଉଛି ଖରାପ କଥା । ଏହି ମାନ ଭଗବାନଙ୍କ ପ୍ରତି ହୋଇଗଲେ ବିରହର ସୃଷ୍ଟି ହୋଇଥାଏ । ଏହାଦ୍ୱାରା ହୃଦୟ ତରଳି ଯାଇଥାଏ ଏବଂ ଅନ୍ତଃକରଣ ବିଶୁଦ୍ଧ ହୋଇ ଯାଇଥାଏ । ଏହା ଦ୍ୱାରା ମୂରୁକି ମୂରୁକି ହସି ଉଠୁଥିବା ମାଧବ ଆସି ଆଗରେ ପ୍ରକଟିତ ହୋଇଯାନ୍ତି । ସଂସାରରେ ଆହୁରି ମଧ୍ୟ ଦେଖାଯାଏ ଯେ ପତି-ପତ୍ନୀଙ୍କ ମଧ୍ୟରେ ପ୍ରେମର ଯେଉଁ ଅଭିମାନ ହୋଇଥାଏ, ତାହା ପ୍ରେମକୁ ଆହୁରି ବଢ଼ାଇବା ନିମିତ୍ତ ହୋଇଥାଏ । ଭକ୍ତି-ରସକୁ ଶାସ୍ତ୍ରମାନଙ୍କରେ ପ୍ରେମର ବ୍ୟଭିଚାରୀ ଭାବ ବୋଲି ବୁଝାଯାଇଥାଏ । ଉଦାହରଣ ସ୍ୱରୂପ ନିର୍ବେଦ, ବିଷାଦ, ଦୀନତା, ଗ୍ଲାନି, ଶ୍ରମ, ମଦ, ଗର୍ବ, ଶଙ୍କା, ତ୍ରାସ, ଆବେଗ, ଉନ୍ମାଦ, ଅପସ୍ମାର, ବ୍ୟାଧି, ମୋହ, ମୃତି, ଆଳସ୍ୟ, ଜଡ଼ତା, ଲଜ୍ଜା, ଅବହିତ୍ଥା ସ୍ମୃତି, ବିତର୍କ, ଚିନ୍ତା, ମତି, ଧୃତି, ହର୍ଷ, ଉତ୍ସୁକତା, ଉଗ୍ରତା, ଅମର୍ଷ, ଅସୂୟା, ଚପଳତା, ନିଦ୍ରା, ସୁପ୍ତି ତଥା ବୋଧ, ଏଗୁଡ଼ିକ ମଧ୍ୟରୁ ଅଧିକାଂଶ ସଂସାରରେ ନିନ୍ଦନୀୟ ବୋଲି ଧରାଯାଇଥାଏ; କିନ୍ତୁ ଯେତେବେଳେ ଏଗୁଡ଼ିକ ଭକ୍ତି ସହିତ ସଂପର୍କିତ ହୋଇଥାଏ, ସେତେବେଳେ ଏଗୁଡ଼ିକ ଅତି ଆଦରଣୀୟ ରସର ପୋଷକ ବୋଲି ଧରା ଯାଇଥାଏ । ଗୋପୀମାନଙ୍କ ହୃଦୟରେ ଯେଉଁ ଅଭିମାନ ଓ ମଦ ଭାବର ଉତ୍ପନ୍ନ ହୋଇଥିଲା, ତାହାର ଲକ୍ଷ୍ୟ ଥିଲା ରସର ଅଭିବୃଦ୍ଧି ଘଟାଇବା । ଏଭଳି ନ ହୋଇଥିଲେ, ଯେଉଁ ତନୁମନରେ ମନମୋହନ ବସି ରହିଛନ୍ତି, ତାହା ଭିତରେ ଲୌକିକ ମାନ ଓ ମଦ କିପରି ବା ପଶିପାରିବ ? ଏହି ମାନ ଓ ମଦର ଉତ୍ପନ୍ନ ହେବାଟା ବି ଗୋଟିଏ ଲୀଳା ।

ସୂତ କହୁଛନ୍ତି—"ହେ ମୁନିମାନେ ! ଯେତେବେଳେ ଭଗବାନ ବ୍ରଜାଙ୍ଗନାମାନଙ୍କୁ ଅତ୍ୟଧିକ ସମ୍ମାନ ଦେଖାଇଲେ ନିଜ ହାତରେ ସେମାନଙ୍କ କେଶ-ପାଶକୁ ସଜାଡ଼ି ଦେଲେ ସେଥିରେ ଫୁଲ-ମାଳା ପିନ୍ଧାଇ ଦେଲେ, ସେମାନଙ୍କୁ ତିଳକ ଲଗାଇ ଦେଲେ ଏବଂ ଆହୁରି ସବୁ ପ୍ରକାର ଆଦର ସେମାନଙ୍କ ପ୍ରତି ଦେଖାଇଲେ, ସେତେବେଳେ ସେହି ମାନବତୀ ସ୍ତ୍ରୀମାନେ ନିଜକୁ ସଂସାରରେ ସମସ୍ତ ସ୍ତ୍ରୀଙ୍କ ମଧ୍ୟରେ ଶ୍ରେଷ୍ଠା ବୋଲି ବିଚାର କରିବାକୁ ଲାଗିଲେ । ସେମାନେ ଭାବିବାକୁ ଲାଗିଲେ, 'ଲୋକମାନେ ଯାହାଙ୍କ ଦର୍ଶନ ଲାଗି ଲାଳାୟିତ ହୋଇଥାନ୍ତି, ଅତି ସୁନ୍ଦରୀ ସ୍ତ୍ରୀମାନେ ଯାହାଙ୍କ ସାମାନ୍ୟତମ କୃପା-କଟାକ୍ଷ ଲାଗି କାତର ଓ ବ୍ୟାକୁଳ ହୋଇଉଠିଥାନ୍ତି, ସେଇ ହିଁ ଆଜି ଆମର ଏଭଳି ସେବା କରୁଛନ୍ତି । ସେଇ ହିଁ ଆଜି ଆମ ପାଖରେ ଏଭଳି ଦୀନତା ଦେଖାଉଛନ୍ତି ।' ଭଗବାନ ଦେଖିଲେ ଯେ ଏମାନଙ୍କୁ ସୌଭାଗ୍ୟ ମଦ ଚାପି ଯାଇଛି । ଏହା ହେଉଛି ପ୍ରେମର ଘାତକ ।"

ଏହା ଉପରେ ଶୌନକ ପ୍ରଶ୍ନ କଲେ—"ସୂତ ମହାଶୟ ! ମଦ ଜନିତ କ'ଣ ।"

ସୂତ କହିଲେ—"ମହାରାଜ ! ମଦର କ'ଣ ବା ମୁଁ ବ୍ୟାଖ୍ୟା କରିବି ? ମଦ ତ ସଂସାରରେ ପ୍ରସିଦ୍ଧ ବୋଲି ସମସ୍ତେ ଜାଣନ୍ତି । ନିଜ ସୌଭାଗ୍ୟକୁ ନେଇ ଆମେ ଯେତେବେଳେ ନିଜକୁ କୃତକୃତ୍ୟ ବୋଲି ମନେ କରୁଁ, ସେତେବେଳେ ଆମେ ଭାବିଥାଉଁ, ଆମେ କେତେ ସୌଭାଗ୍ୟଶାଳୀ ଅଛେ ! ଏଭଳି ବଡ଼ ଲୋକ ଜଣେ ଆମ ବଶ ହୋଇ ଯାଇଛନ୍ତି ! ଏହିପରି ଭାବରେ ନିଜ ରୂପର, ଯୌବନାବସ୍ଥାର, ଗୁଣଗୁଡ଼ିକର, ସର୍ବଶ୍ରେଷ୍ଠ ଆଶ୍ରୟର ତଥା ଇଷ୍ଟଲାଭର ବିଷୟ ନେଇ ଯେଉଁ ଗର୍ବ ଆସେ ତାହାକୁ କୁହାଯାଏ ମଦ । ଗୋପୀମାନେ ନିଜ ସୌଭାଗ୍ୟର ପ୍ରଶଂସା କରିବାକୁ ଲାଗିଲେ ଏବଂ ସେମାନଙ୍କ ମନରେ ନିଜ ରୂପ-ଯୌବନ ନେଇ ମଧ୍ୟ ଗର୍ବ ଆସିଗଲା, ସର୍ବଶ୍ରେଷ୍ଠ ଆଶ୍ରୟ ତଥା ବସ୍ତ୍ରଧନ ଧରି ସ୍ୱୟଂ ଆସିଥିବା ଜନିତକୁ ପାଇ ସେମାନେ ନିଜକୁ ସର୍ବଶ୍ରେଷ୍ଠା ଗୁଣବତୀ ସ୍ତ୍ରୀ ବୋଲି ଭାବିବାକୁ ଲାଗିଲେ । ଏହିପରି ଭାବରେ ରସ-ଶାସ୍ତ୍ରକାରମାନେ ମଦ ଓ ଗର୍ବ ମଧ୍ୟରେ ପ୍ରଭେଦ ଦେଖାଇଛନ୍ତି । ମଦ ତ ଯୌବନକୁ ବଳ କରି ଉଚ୍ଛ୍ୱାସରେ ଓ ମଧୁ-ପାନରେ ହୋଇଥାଏ । ସେଥିରେ ବିବେକ ରହି ନଥାଏ ଏବଂ ହୃଦୟରେ ଅଧିକ ମାତ୍ରାରେ ଉଲ୍ଲାସ ହୋଇଥାଏ । ମୁହଁରୁ ଯାହା ମନେ ତାହା କଥା ବାହାରିଥାଏ । ମଣିଷ କିଛି ନା କିଛି ବକିବାକୁ ଆରମ୍ଭ କରିଥାଏ । ଏଥିରେ କେହି କେହି ହସିଥାନ୍ତି, ଗୀତ ଗାଇଥାନ୍ତି, ଚତ୍କାର କରିଥାନ୍ତି, ଗାଳି-ମନ୍ଦ କରିଥାନ୍ତି, କନ୍ଦା-କଟା କରିଥାନ୍ତି, ପିଟାପିଟି କରିଥାନ୍ତି ଇତ୍ୟାଦି; କିନ୍ତୁ ଯେଉଁଠି ସୌଭାଗ୍ୟ-ମଦର ଅଭିପ୍ରାୟ ହେଉଛି ଗର୍ବ, ସେଠି ମଣିଷମାନଙ୍କ ମନରେ ମାନ ବି ଆସିଯାଇଥାଏ । ଏଠାରେ ମାନର ଅଭିପ୍ରାୟ ପ୍ରେମକୁ ଜନମୁଥିବା ମାନ ନୁହେଁ । ଏଠାରେ ମାନର ଅଭିପ୍ରାୟ ହେଉଛି ଅଭିମାନ । ଭଗବାନ ଦେଖିଲେ ଯେ ତାଙ୍କ ପ୍ରିୟତମାମାନଙ୍କ ହୃଦୟରେ ମଦ ଓ ମାନ ପଶି ଯାଇଛି । ଏହା ଉଚିତ କଥା ନୁହେଁ ।

ଏହାକୁ ଶାନ୍ତ କରିବାକୁ ହେବ । ଯଦି କୌଣସି ଗରିବ ଲୋକଙ୍କୁ ପ୍ରଚୁର ପରିମାଣରେ ଧନ ମିଳିଯାଏ ଏବଂ ସେହି ହେତୁ ତା'ଠାରେ ଅତ୍ୟଧିକ ମଦଭାବ ଦେଖାଦିଏ, ତା'ହେଲେ ସେହି ଧନକୁ ନଷ୍ଟ କରିଦେବା ଉଚିତ । ଅଦର୍ଶନକୁ ନଷ୍ଟ କୁହାଯାଇଥାଏ । ସେହିହେତୁ ଭଗବାନ ସେମାନଙ୍କ ଉପରେ କୃପା କରିବା ନିମିତ୍ତ ତଥା ମଦ-ମାନକୁ ଶାନ୍ତ କରିବା ନିମିତ୍ତ ସେଠାରୁ ବାହାରକୁ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କ କଣ୍ଠରେ ଗୋପୀମାନେ ଯେଉଁ ବାହୁଗୁଡ଼ିକୁ ଛନ୍ଦିଥିଲେ, ସେଗୁଡ଼ିକ ସେମିତି ଶୂନ୍ୟକୁ ଜାବୁଡ଼ି ଧରିବା ଅବସ୍ଥାରେ ରହିଗଲା । ପଥର ଉପରେ ଉଞ୍ଚା ଜାଗାରୁ ପଡ଼ିଥିବା କାଚ ବୋତଲ ଯେମିତି ଚୂରମାର ହୋଇଯାଏ, ଠିକ୍ ସେମିତି ନିଜ ପାଖରେ ଶ୍ୟାମଙ୍କୁ ନ ଦେଖିବା ଫଳରେ ସେମାନଙ୍କ ସମସ୍ତଙ୍କ ମାନ ଚୂରମାର ହୋଇଗଲା । ସେମାନେ କାନ୍ଦିବାକୁ ଲାଗିଲେ, ଚିତ୍କାର କରିବାକୁ ଲାଗିଲେ ।"

ଶୌନକ କହିଲେ—"ସୂତ ମହାଶୟ ! ଏହା ତ ରସ-ଭଙ୍ଗ ହୋଇଗଲା । ହାୟ ! ମିଳନର ସୁଖ ଦେଇ କରି ହଠାତ୍ ଅନ୍ତର୍ଦ୍ଧାନ ହୋଇଯିବାଟା ଅମୃତ ପିଆଇବା ପରେ ହାତରେ ହଳାହଳ ବିଷର ପିଆଲା ଦେବା ସଙ୍ଗେ ସମାନ ।"

ସୂତ କହିଲେ—"ମହାରାଜ ! ପ୍ରେମ-ରାଜ୍ୟର ଏହିଭଳି ଖେଳ ହିଁ ହୋଇଥାଏ । ସବୁବେଳେ ମିଳନ ରହିଥିଲେ ପ୍ରେମ କିପରି ବା ବଢ଼ିବ ? କେବେ ମିଳନ ହୋଇଥାଏ; ପୁଣି ଆଉ କେବେ ବିରହ ହୋଇଥାଏ । ବିରହ ହେବା ଫଳରେ ହୃଦୟରେ ସର୍ବଦା ମିଳନ ହୋଇଥାଏ । ତାଙ୍କର (ପ୍ରେମିକର) ଗୋଟିଏ ଗୋଟିଏ କଥାକୁ, ଗୋଟିଏ ଗୋଟିଏ ଚେଷ୍ଟାକୁ ଏକାନ୍ତରେ ମନେ ପକାଇବା ଦ୍ୱାରା ହୃଦୟ ଭରପୂର ହୋଇ ଉଠିଥାଏ । ମନ ପ୍ରଫୁଲ୍ଲ ହୋଇ ଉଠିଥାଏ । ଦୀର୍ଘଦିନର ବିରହ ପରେ ଯେଉଁ ମିଳନ ଆସେ, ତାହା ଅଧିକ ମଧୁମୟ ହୋଇଥାଏ । ଉଦାହରଣ ସ୍ୱରୂପ ବହୁତ ଦିନ ପରେ ଚିନିମିଶା ଦୁଧ ପିଇଲେ ଆନନ୍ଦ ଆସିଥାଏ । ଏହା ରସ-ଭଙ୍ଗ ନୁହେଁ; ବରଂ ଏହା ରସର ପୋଷକ । ଶ୍ରୀକୃଷ୍ଣଙ୍କୁ ନପାଇ ଗୋପୀମାନେ ଉନ୍ମାଦିନୀ ଭଳି ଚେଷ୍ଟାମାନ କରିବାକୁ ଲାଗିଲେ ।"

ଶୌନକ ପଚାରିଲେ—"ସୂତ ମହାଶୟ ! ଉନ୍ମାଦ ଅବସ୍ଥା କହିଲେ କ'ଣ ବୁଝାଯାଏ ? ଏହି ଅବସ୍ଥାରେ କି କି ଚେଷ୍ଟାମାନ ହୋଇଥାଏ ।"

ସୂତ କହିଲେ—"ହୃଦୟରେ ବିଭ୍ରମ ହୋଇଯାଏ । ମଣିଷ କିଛି କରିବାକୁ ଚାହୁଁଥାଏ; ଅଥଚ ଆଉ କିଛି ଗୋଟିଏ କାମ କରିବସେ । ଏହାର ନାମ ହେଉଛି ଉନ୍ମାଦ । ଏଥିରେ କ'ଣ କରିବାକୁ ହେବ, କ'ଣ ନ କରିବାକୁ ହେବ, କାହାକୁ ପଚାରିବାକୁ ହେବ, କାହାକୁ ନ ପଚାରିବାକୁ ହେବ, କାହାକୁ କେଉଁ କଥା କହିବାକୁ ହେବ, ଏହିସବୁ ବିଷୟରେ ବିବେକ କାମ କରେନାହିଁ । ଏହି ସଂସାରରେ ଉନ୍ମାଦ ବି ଗୋଟିଏ ରୋଗ ।

କିନ୍ତୁ ପ୍ରେମରେ ଏହା ଭିନ୍ନପ୍ରକାର ଜାଗରଣର ହୋଇଥାଏ । ଗୋଟିଏ ବେଳେ, ହୃଦୟରେ ନିଜ ପ୍ରିୟ ବସ୍ତୁର ନିରନ୍ତର ସ୍ମୃତି ଜାଗ୍ରତ ରହିବାଦ୍ୱାରା ଯେଉଁ ଆନନ୍ଦ ଉଚ୍ଛୁଳି ଉଠୁଥାଏ, ତହିଁରେ ଉନ୍ମାଦ ହୋଇଯାଏ । ଠିକ୍ ଯେମିତି ଶ୍ରୀରାଧାଙ୍କ ହୃଦୟରେ ନିରନ୍ତର ଶ୍ୟାମସୁନ୍ଦର ବସି ରହିଥିଲେ । କାମ-ଧାମ କରୁଥିବାବେଳେ ସେ ନିରନ୍ତର ତାଙ୍କ ବିଷୟରେ ଚିନ୍ତା କରୁଥିଲେ । ଥରେ ତାଙ୍କ ମାଆ କହିଲେ, 'ଆଲୋ ଝିଅ ! ଟିକିଏ ଦହି ଗୋଳେଇ ଦେ ତ ।' ମନ ତ ମନମୋହନଙ୍କ ମୂର୍ତ୍ତିରେ ବୁଡ଼ି ରହିଥିଲା । ମାଆଙ୍କ କଥାରେ ଆଦରଣୀୟା ଝିଅ ଦେହର ଭାରକୁ ଅନିଚ୍ଛାପୂର୍ବକ ଉଠାଇ ଦହି ଗୋଳାଇବା ଜାଗାକୁ ଗଲେ । ସେଠି ଦହି ଗୋଳାଇବାର ଖୁମ୍ବଟି ଥିଲା । ଯାହାଦ୍ୱାରା ଦହି ଗୋଳାଯାଏ, ସେହି ଖୁଆଁଟି ଥିଲା; ତହିଁରେ ଦଉଡ଼ି ବନ୍ଧା ଯାଇଥିଲା । ଛିଙ୍କାରେ ଦହି ହାଣ୍ଡି ରଖାଯାଇଥିଲା । ଏବେ କାମ ଥିଲା ତାହାକୁ ଗୋଟିଏ ପାତ୍ରରେ ଢାଳି ଖୁଆଁଟିକୁ ତହିଁରେ ରଖି ତାହାକୁ ଗୋଳାଇବା; କିନ୍ତୁ ଶ୍ରୀକୃଷ୍ଣଙ୍କ ସ୍ମୃତିରେ ତ ସେ ପାଗଳିନୀ ହୋଇଯାଇଥିଲେ ; ତେଣୁ ସେ ଖାଲି ଦହି-ଗୋଳା ଖୁମ୍ବଟିରେ ଖୁଆଁକୁ ବାନ୍ଧି ଶୂନ୍ୟପାତ୍ରରେ ତାହାକୁ ରଖି ତାହାକୁ ଗୋଳାଇବାକୁ ଲାଗିଲେ । କିଛି ସମୟ ପରେ ମାଆ ଆସିଲେ ଏବଂ କହିଲେ, 'ରାଧା ! ତୋ' ମୁଣ୍ଡ ଖରାପ ହୋଇଯାଇ ନାହିଁ ତ ? ତୁ ପାଗଳୀ ହୋଇଯାଇନାହୁଁ ତ ? ଦହି ନରଖି ଖାଲି ପାତ୍ରଟିରେ ତୁ ଦହି ଗୋଳାଉଛୁ ଯେ ।' ରାଧାଙ୍କର ଏବେ ବୁଦ୍ଧି ଫେରିଲା । ସେ ଲାଜେଇ ଗଲେ । ଏହାର ନାମ ହେଉଛି ପ୍ରୌଢ଼ାନନ୍ଦୋନ୍ମାଦ । ଏହା ଦୁଇ ତରଫରୁ ହିଁ ଆରମ୍ଭ ହୋଇଥାଏ । ରାଧାଙ୍କର ଯେ ଖାଲି ଏଭଳି ସ୍ଥିତି ଥିଲା, ସେ କଥା ନୁହେଁ । କୃଷ୍ଣ ବି ରାଧାଙ୍କୁ ମନେପକାଇ ଏଭଳି ତନ୍ମୟ ହୋଇଯାଉଥିଲେ ଯେ ସେ ଗାଈ ଦୁହିଁବାକୁ ଭୁଲି ଯାଉଥିଲେ । ଏକାନ୍ତରେ ଥାଇ ସେ ପ୍ରିୟତମାଙ୍କ ସୁନ୍ଦର ଗୋଲ ଗାଲିଆ ମୁହଁଟି ବିଷୟରେ ଭାବୁଥିଲେ । ମାଆ କହୁଥାନ୍ତି, 'ଆରେ କାହ୍ନୁ ! ତୁ ଏଭଳି ଉଦାସ କାହିଁକି ? ଯା' ଗାଈ ଦୁହିଁ ଆଣ ।"

ମାଆଙ୍କ କଥାରେ ସେ ଗାଈ ଦୁହିଁବାପାଇଁ ଯାଆନ୍ତି ; କିନ୍ତୁ ସେ ପ୍ରିୟତମାଙ୍କ ପ୍ରେମୋନ୍ମାଦରେ ଏଭଳି ଆତ୍ମହରା ହୋଇ ଉଠିଥାନ୍ତି ଯେ, ସେ ଗାଈ ପାଖରେ ନ ବସି ଷଣ୍ଢକୁ ଦୁହିଁବାରେ ଲାଗନ୍ତି । ଏହି ସମୟରେ ଜଣେ ସାଙ୍ଗ ଆସି ପଚାରେ, 'ଆରେ କାହ୍ନୁ ! ତୁ' କ'ଣ କରୁଛୁ ?'

ସେଠାରେ ବସି ରହି ସେ କୁହନ୍ତି—"ଆରେ ! ତୋ' ଆଖି ଫୁଟି ଯାଇଛି ନା କ'ଣ ? ମୁଁ ପରା ଗାଈ ଦୁହୁଁଛି ।"

ହସି କରି ଗଉଡ଼ ଟୋକା ଜଣକ କହେ, 'ମୋ' ଆଖି ଫୁଟିଯାଇ ନାହିଁ । ମତେ ଜଣା ପଡୁଛି କୌଣସି ଝିଅର ଗୋରା ଗୋରା ମୁହଁ ତତେ ପାଗଳ କରି ଦେଇଛି । ତୁ ଗାଈ ଦୁହୁଁଛୁ ନା ଷଣ୍ଢ ଦୁହୁଁଛୁ ?' ଏବେ ଶ୍ରୀକୃଷ୍ଣଙ୍କ ବୁଦ୍ଧି ଫେରିଆସେ । ସେ କହନ୍ତି—"ଥରେ !

ମୁଁ ତ ଷଣ୍ଢ ଦେହରୁ ଚିହ୍ନମାନଙ୍କୁ ଛଡ଼ାଉଥିଲି । ସେମାନେ ଯା ଦେହରେ ଲାଗି ଯାକୁ କଷ୍ଟ ଦେଉଛନ୍ତି ।" ଗରୁଡ଼ ବାପୁଡ଼ା ମୁରୁକ ହସି ଚାଲିଯାଏ । ଏହା ହେଉଛି ଦୁଇ ତରଫର ପ୍ରୌଢ଼ୋନ୍ମାଦର ଲକ୍ଷଣ ।"

ଅପଦ-ବିପଦମାନଙ୍କରେ ବି ଉନ୍ମାଦ ହୋଇ ଯାଇଥାଏ । ଆପଣ-ବିପଦରେ ପଡ଼ି ଲୋକେ କଙ୍କରମୟ ପଥରକୁ ବି ପୂଜା କରିବାରେ ଲାଗିଥାନ୍ତି । ଯାହା କରିବାର କଥା ନୁହେଁ, ସେମାନେ ତାହା କରିଥାନ୍ତି । ବିରହରେ ମଧ୍ୟ ଉନ୍ମାଦ ହୋଇଥାଏ । ଗୋପୀମାନଙ୍କର ଏହି ଉନ୍ମାଦ ଶ୍ରୀକୃଷ୍ଣଙ୍କ ବିରହରେ ହିଁ ହୋଇଥିଲା ।

ଶୌନକ ପଚାରିଲେ "ହଁ ସୂତ ମହାଶୟ ! ଆପଣ ତା'ହେଲେ ଆମକୁ ଗୋପୀମାନଙ୍କ ବିରହୋନ୍ମାଦ ଦଶା କହି ଶୁଣାନ୍ତୁ ।"

ସୂତ କହିଲେ —"ମୁନିବର ! ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ବିରହରେ ବିଚିତ୍ର ଦଶା ହୋଇଗଲା । ସେମାନେ ଆନନ୍ଦରେ ବୁଡ଼ି ରହି ଶ୍ରୀକୃଷ୍ଣଙ୍କ ସହିତ ମିଳନର ସୁଖଟିକୁ ଆସ୍ୱାଦନ କରୁଥିଲେ । ଏହି ସମୟରେ ଶ୍ୟାମସୁନ୍ଦର ହଠାତ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଦଳପତି ଦନ୍ତୀ ହାତୀଟି ଅଦୃଶ୍ୟ ହୋଇଗଲେ ମାଈ ହାତୀମାନେ ଯେମିତି ବ୍ୟାକୁଳ ହୋଇ ଉଠନ୍ତି, ଅଥବା ଅଣ୍ଡିରା କୃଷ୍ଣସାର ମୃଗଟି ଚାଲିଯିବା ଉତ୍ତାରୁ ମୃଗୁଣୀ-ମାନେ ଯେମିତି ବ୍ୟାକୁଳ ହୋଇ ଉଠନ୍ତି, ସେତେବେଳେ ଠିକ୍ ସେମିତି ସେମାନେ ସମସ୍ତେ ବ୍ୟାକୁଳ ହୋଇ ଉଠିଲେ । ଏବେ ସେମାନେ ମନେ ମନେ ହିଁ ଭଗବାନଙ୍କ ଚେଷ୍ଟା ସମ୍ବନ୍ଧ କଥା ଚିନ୍ତା କରିବାକୁ ଲାଗିଲେ । ଶ୍ୟାମସୁନ୍ଦର କିପରି ଲଳିତ ଗତିରେ ବିଳାସ-ଭଙ୍ଗୀ ଦେଖାଇ ଧୀରେ ଧୀରେ ଚାଲୁଥିଲେ ! କିପରି ଅମୃତରେ ସିକ୍ତ ହୋଇଥିବା ଜନର ମୁରୁକ ମୁରୁକ ହସହାସ ସେ ତପ୍ତ ହୃଦୟକୁ ଶୀତଳ କରି ଦେଉଥିଲେ । ତାଙ୍କର କଟାକ୍ଷ କିପରି ଥିଲା ସୁଖଦ ଶୀତଳ ଓ ବିଳାସମୟ ଏବଂ ସେ କିପରି ତାହାଦ୍ୱାରା ଆମ ଚିତ୍ତକୁ ଚୋରି କରି ନେଉଥିଲେ ! ତାଙ୍କ କଥାଗୁଡ଼ିକ ଥିଲା ପ୍ରେମଭରା ଓ ମିଠା ମିଠା । ସେଗୁଡ଼ିକ ଯେତେ ଶୁଣିଲେ ବି କାନ ତୃପ୍ତ ହେଉ ନଥିଲା ! ସେ ତ କଥା କହୁ ନଥିଲେ । ଜଣା ପଡ଼ୁଥିଲା ସତେ ଅବା ସେ କାନରେ ଅମୃତ ଢ଼ାଳି ଦେଉଥିଲେ ! ତାଙ୍କ କଥାରେ କେତେ ଯେ ମଧୁରତା, କେତେ ଯେ ମାଦକତା, କେତେ ଯେ ତନ୍ମୟତା ଭରି ରହିଥିଲା । ତାଙ୍କର ସକଳ କାର୍ଯ୍ୟ ଥିଲା ଲୀଳା ବିଳାସମୟ ଏବଂ ତହିଁରେ ମାଦକତା ଭରପୂର ରହିଥିଲା ! ଏହିସବୁ କାରଣରୁ ଆମ ସମସ୍ତଙ୍କ ଚିତ୍ତ ତାଙ୍କ ପ୍ରତି ସେଠାରୁ ଟାଣି ହୋଇ ଯାଇଥିଲା ।"

ସୂତ କହି ଚାଲିଥାନ୍ତି—"ହେ ମୁନିମାନେ ! ସେହି ବ୍ରଜାଙ୍ଗନାମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ସ୍ୱରରେ ସ୍ୱରିତ ହୋଇ ତାଙ୍କଠାରେ ତନ୍ମୟ ହୋଇ, ତାଙ୍କର ଭିନ୍ନ ଭିନ୍ନ ଚେଷ୍ଟା ଗୁଡ଼ିକୁ

ନିଜେ ହିଁ ଅନୁକରଣ କରିବାକୁ ଲାଗିଲେ । ସେମାନେ ଏଭଳି ଭାବରେ ତନ୍ମୟ ହୋଇଗଲେ ଯେ ସମସ୍ତେ ନିଜକୁ ଶ୍ରୀକୃଷ୍ଣ ବୋଲି ଭାବିବାକୁ ଲାଗିଲେ । ପ୍ରେମର ଉନ୍ମାଦ-ବସ୍ଥାରେ ସେମାନେ ଯେଉଁ ଯେଉଁ ଚେଷ୍ଟାମାନ କଲେ, ତତ୍ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା ମୁଁ ପରେ କରିବ ।”

### ଛପ୍ପୟ

ହେତୁ ଶ୍ରାନ୍ତାତୁର କରହିଁ ସ୍ୱାଦ ହରିକେ କାମିନୀ ।
ମଧୁର ମଧୁର ମୁସକାନ ଚଲନ ଚିତବନ ସୁହିଁ ସଜନୀ ॥
ଲୀଳା ମଧୁର ବିଲାସ ସ୍ୱାଦ କରି କରିକେ ଖେଲେଁ ।
ହୈଁ ତନ୍ମୟ ଉନ୍ମତ୍ତ ସରସ ତନ ସୁଧି ବୁଧି ଖୋଏଁ ॥
ଉଚସ୍ୱରତେଁ ହରିଗୁନଗନ, ଗାଏଁ ରୋଏଁ ଫିର ଧୁନେଁ ।
ଖଗ, ମୃଗ, ଗିରି, ତରୁ ଲତନତେଁ ପୂଛେଁ ହରି କୋଉନ ସୁନେଁ ॥



## ବିରହୋନ୍ମାଦିନୀ ବ୍ରଜାଙ୍ଗନାଗଣ

ଗାୟନ୍ତ୍ୟ ଉଚ୍ଚୈରମୁମେବ ସଂହତା,
ବିଚିକ୍ୟୁରୁନ୍ମତ୍ତକବଦ୍ ବନାଦ୍ ବନମ୍ ।
ପପ୍ରଚ୍ଛୁରାକାଶବଦନ୍ତରଂ ବହି—
ର୍ଭୂତେଷୁ ସନ୍ତଂ ପୁରୁଷଂ ବନସ୍ପତୀନ୍ ॥
(ଶ୍ରୀ.ଭା. ୧୦ସ୍କ, ୩୦ଅ, ୪ ଶ୍ଳୋ)

### ଛପ୍ପୟ

ବୃକ୍ଷନକେ ଲୈ ନାମ କହେଁ—ହେ ! ପୀପର ! ପାକର ।
ହେ କଦମ୍ବ ! ହେ ବକୁଲ ! ନୀମ ! ବଟ ! ଚମ୍ପକ ! ଗୁଲର ॥
ହେ ରସାଲ ! ରସରାଜ ଶ୍ୟାମ ଇତ ତୋ ନହିଁ ଆୟେ ।
ଚିତବନ ଜାଲ ବିଛାୟ ହମାରେ ଚିତ ଚୁରାୟେ ॥

ସମ୍ପୂର୍ଣ୍ଣ ସ୍ୱାରଥୀ ନରଜନକୂଁ ସବ ମିଲ ତୁଲସୀତିଂଗ ଗଈଂ ।
କର ଅନ୍ତଃସ୍ଥ ଅନନ୍ୟ ବନସ୍ଥ, ପ୍ରେରଣ ପଠେତା ପୃଚ୍ଛିତ ଭଈଂ ॥

ବୃନ୍ଦାବନର ସମସ୍ତେ ଗଛ, ଲତା, ବୃଦା ଓ ପଥର ଆଦି ଯେ ଚିନ୍ମୟ ଏହା ସତ୍ୟ ସିଦ୍ଧ କଥା । କିନ୍ତୁ ଲୋକ-ଲୀଳାରେ ସେମାନେ ସମସ୍ତେ ହେଉଛନ୍ତି ଜଡ଼ । ଯେଉଁମାନେ ଚେତନ, ଯଥା, ପଶୁ-ପକ୍ଷୀ, ମୃଗାଦି ପ୍ରାଣୀ, ସେମାନଙ୍କଠାରେ ବି କଥା କହିବାର ଶକ୍ତି ପ୍ରାୟ ନଥାଏ । କିନ୍ତୁ ସେ ଜଡ଼ କି ଚେତନ, ସେ ବିଷୟରେ ପ୍ରେମୋନ୍ମାଦରେ ବିବେକ କାମ କରେ ନାହିଁ । ସେଥିରେ ଜମା ଜଡ଼-ଚେତନର ଭେଦଭାବ ରହେ ନାହିଁ । କେବଳ ଇଷ୍ଟ ହିଁ ଇଷ୍ଟ-ଦୃଷ୍ଟିର ଆଗରେ ରହିଥାଏ । ଯେତେବେଳେ ହୃଦୟରେ ଘନତା ଆସିଯାଏ । ମନ ଯାହାକୁ ଦେଖେ ତାହାଠାରେ ପ୍ରାକ୍ୟଭାବର ଆରୋପ କରିବାକୁ ଲାଗିଥାଏ । ଗୁଣ-ଦୋଷ ଦେଖିବାର ପ୍ରବୃତ୍ତି ନଷ୍ଟ ହୋଇ ଯାଇଥାଏ । ମନରେ ଏହି ଆଶା ଲାଗି ରହିଥାଏ ଯେ ସମ୍ଭବତଃ ତା'ର ପ୍ରିୟତମଙ୍କ ସନ୍ଧାନ ମିଳିଯିବ ଏବଂ ଏହାଙ୍କଠାରୁ ମିଳିଯିବ । ଏହିପରି ଭାବରେ ସେ ନିରନ୍ତର ପ୍ରିୟତମଙ୍କୁ ଖୋଜିବାରେ ଲାଗିଥାଏ । ପ୍ରିୟତମଙ୍କ ସ୍ମୃତିରେ ଏଭଳି ତନ୍ମୟତା ଆସି ଯାଇଥାଏ ଯେ ସର୍ବତ୍ର ନିଜେ ତାଙ୍କ ରୂପକୁ ଅନୁଭବ କରିବାକୁ ଲାଗିଥାଏ । ଯେଉଁ ଭାଗ୍ୟବାନ୍ ଲୋକମାନଙ୍କର ଏଭଳି ଦଶା ହୋଇଥାଏ, ସେମାନେ ହେଉଛନ୍ତି ବନ୍ଦନୀୟ । ଶ୍ରୀକୃଷ୍ଣଙ୍କ ବିରହରେ ଗୋପୀମାନଙ୍କର ଏହିଭଳି ଦଶା ହିଁ ହୋଇଥିଲା ।

ଶୌନକ ପଚାରିଲେ—"ହେ ସୂତ ମହାଶୟ ! ବିରହ କାହାକୁ କହନ୍ତି ? ସେଥିରେ କି କି ଦଶା ହୋଇଥାଏ ।"

ସୂତ କହିଲେ—"ମହାରାଜ ! ପ୍ରିୟତମଙ୍କଠାରୁ ବିଚ୍ଛେଦ ହୋଇଯିବା, ପାଇଥିବା ସଙ୍ଗରୁ ଅଲଗା ହୋଇଯିବା, ଏହାର ନାଁ ହିଁ ବିରହ । ପ୍ରେମ ଯେତେ ପ୍ରବଳ ହେବ, ବିରହ ସେତେ ଅସହ୍ୟ ହେବ । ପ୍ରିୟତମଙ୍କର ବିଦେଶକୁ ଚାଲିଯିବାରେ ଘଟିଥିବା ବିରହ ହେଉଛି ସାମାନ୍ୟ । କିନ୍ତୁ ଉତ୍କଟ ପ୍ରେମ-କ୍ଷେତ୍ରରେ ଆଖି ଆଗରୁ ଦୂରେଇ ଯିବାଟା ହିଁ ହେଉଛି ବିରହ । ଆଖି ଆଗରେ ପ୍ରିୟତମଙ୍କ ରହିବାରେ ମଧ୍ୟ ବିରହର ଅନୁଭବ ଆସିଥାଏ । ବ୍ରହ୍ମା ସେମାନଙ୍କ ଆଖିରେ ପଲକ କାହିଁକି ଆଣି ଦେଲେ ବୋଲି ଗୋପୀମାନେ ତାଙ୍କ ଉପରେ ରାଗ କରୁଥିଲେ ଏବଂ ତାଙ୍କୁ ନିର୍ବୁଦ୍ଧି ବୋଲି କହୁଥିଲେ । ଯଦିଓ ତାଙ୍କର ପଲକ ତିଆରି କରିବାର ଥିଲା, ତେବେ ତାହା ଉପରେ ସେ ପଣ କାହିଁକି ରଖାଇଲେ ? ଏହାର ଫଳରେ ଯିବା ପଲକ ପଡ଼ିବା ସମୟରେ ଶ୍ୟାମସୁନ୍ଦରଙ୍କର ବିରହ ହୋଇଯାଇଛି । ମାଛଠାରେ ପଲକ ନଥାଏ । ପାଣି ହେଉଛି ତାହାର ପ୍ରିୟତମ ଏବଂ ସେ ଅପଲକ ନୟନରେ ନିରନ୍ତର ତାହାକୁ ଦେଖୁଥାଏ । ପ୍ରିୟତମଙ୍କ କୋଳରେ ମଧ୍ୟ ରହିବା ପରେ ମଧ୍ୟ ବିରହ ଆସିଥାଏ । ଏହା ହେଉଛି

ବିରହର ଅତି ତୁଙ୍ଗ ଅବସ୍ଥା ସାମାନ୍ୟ ଭାବରେ ପ୍ରିୟତମଙ୍କ ଆଖିରୁ ଦୂର ହୋଇଯିବାଟା ହିଁ ହେଉଛି ବିରହ । ଯଦିଓ ଚକୁଆ-ଚକୋଇ ଚଢ଼େଇ ଦୁହେଁ ସବୁବେଳେ ଏକାଠି ଥାଆନ୍ତି, ତଥାପି ରାତିରେ ଦୁହେଁ ସାଥି ହୋଇ ରହି ପାରନ୍ତି ନାହିଁ । ସେ ଦୁହିଙ୍କ ପାଇଁ ସାରା ରାତିର ବିରହ ଅସହ୍ୟ ହୋଇ ଉଠିଥାଏ । ଗୋଟିଏ ଚଢ଼େଇ ଏପାରିରେ ଥାଇ ସାରା ରାତି ଦୁଃଖରେ ଚିତ୍କାର କରୁଥିଲାବେଳେ ଅନ୍ୟ ଚଢ଼େଇଟି ଆରପାରିରେ ଥାଇ ବିରହ-ଜର୍ଜରିତ ହେଉଥାଏ । ବିରହରେ ପ୍ରାୟ ଏହି ଦଶାମାନ ହୋଇଥାଏ । ଏଥିରେ ସାରା ଦେହ ତାତି ଉଠିଥାଏ, ଦୁର୍ବଳତା ଆସି ଯାଉଥାଏ, ରାତିରେ ନିଦ ଆସି ନଥାଏ, ଯଦିଓ ନିଦ ଆସିଗଲା, ମଝିରେ ତାହା ଚମକିଲା ଭଳି ଭାଙ୍ଗି ଯାଇଥାଏ ଏବଂ ତାଙ୍କୁ ଝୁରିବାକୁ ହେଉଥାଏ । କେହି ଯେମିତି ଆଶ୍ରା ନାହିଁ ମନରେ ଏହି ଅନୁଭବ ଆସୁଥାଏ । ପ୍ରିୟତମା ମନେ ମନେ ଭାବୁଥାଏ, 'ହାୟ ! ସେ ତ ମତେ ଛାଡ଼ି ଦେଇଗଲେ । ମୁଁ ଏବେ କାହାକୁ ଭରସା କରି ରହିବି ? ମୁଁ କପରି ବା ଜୀବନ ନେବି ? ମୁଁ କାହାକୁ ଆଶ୍ରା କରି ଏ ସଂସାରରେ ରହିବି ? ଧୈର୍ଯ୍ୟ ହରାଇ ବସିବା ଶରୀରରେ ଜଡ଼ତା ଆସିବା, ଅଙ୍ଗପ୍ରତ୍ୟଙ୍ଗରେ ଶିଥିଳତା ଅନୁଭବ କରିବା ତାଙ୍କ କଥା ମନେ ପଡ଼ିବା ମାତ୍ରକେ ଶରୀର ଜଡ଼ ଭଳି ଓ ପଥର ଭଳି ହୋଇଯିବା, ଶରୀରରେ ରୋଗ ଦେଖାଦେବା, ଉନ୍ମାଦ ଅବସ୍ଥା ଆସିଯିବା, କାହିଁର କାମ କାହିଁ କରିବା, କରିବା କାମକୁ ଭୁଲିଯିବା, ଉଠୁଣୁ ବସୁଣୁ ମୂର୍ଚ୍ଛା ଯିବା, ତଥା ମଲାଭଳି ଅବସ୍ଥା ହେବା, ଏହିଭଳି ନାନା ପ୍ରକାର ଦଶା ବିରହ-ଅବସ୍ଥାରେ ହୋଇଥାଏ । ଗୋପୀମାନଙ୍କର ପ୍ରିୟ-ମିଳନର ଆଶା ଥିଲା । ତେଣୁ ସେମାନେ ମୂର୍ଚ୍ଛା ଯାଇ ନଥିଲେ କିମ୍ବା ମୃତ ପ୍ରାୟ ଅବସ୍ଥା ପାଇ ନଥିଲେ । କିନ୍ତୁ ଉନ୍ମାଦାବସ୍ଥାରେ ସେମାନେ ପାଗଳୀ ଭଳି ଏଣେ ତେଣେ ବୁଲିବାକୁ ଲାଗିଲେ ।'

ସେମାନେ ଯାଉ ଯାଉ ବଣରେ ଗୋଟିଏ ବଡ଼ ଓସ୍ତଗଛ ଦେଖିଲେ । ତାହାର ଛାଇ ଥିଲା ଥଣ୍ଡା ଏବଂ ତାହା ଦେହକୁ ସୁଖ ଦେଉଥିଲା । ତାହାର କଅଁଳିଆ ପତ୍ରଗୁଡ଼ିକ ପବନରେ ଦୋହଲୁଥିଲା । ଗୋପୀମାନେ ତାହାର ତଳେ ପହଞ୍ଚିବାରେ ଶୀତଳତା ଅନୁଭବ କଲେ । ଏବେ ସେମାନଙ୍କ ମନରେ ସନ୍ଦେହ ହେଲା, ଶୀତଳତା ତ ଏକମାତ୍ର ଶ୍ୟାମସୁନ୍ଦରଙ୍କ ଛତ୍ର-ଛାୟାରେ ହିଁ ମିଳିଥାଏ । ତା'ହେଲେ ଏହାର ଛାଇରେ ଯେଉଁ ଶୀତଳତା ଅଛି, ଏହାକୁ ତାହା କେଉଁଠୁ ମିଳିଲା ? ଓହୋ ! ଶ୍ୟାମସୁନ୍ଦର ବୋଧହୁଏ ଏଇ ଟିକଏ ହେଲା ଏଠାରୁ ବାହାରି ଯାଇଥିବେ । ଗଲାବେଳେ ତାଙ୍କ ପ୍ରସାରିତ ହାତରୁ କିଛି ଶୀତଳତା ହୁଏତ ଝରାଇ ଦେଇଯାଇଥିବେ । ତେଣୁ ସେମାନେ ଓସ୍ତଗଛକୁ ଡାକି କହିଲେ, 'ହେ ଓସ୍ତଗଛର ଦେବତା । ତୁମେ ହେଉଛ ସବୁ ଗଛ ମଧ୍ୟରେ ଶ୍ରେଷ୍ଠ । ତୁମେ ହେଉଛ ଭଗବାନଙ୍କର ବିଭୂତି । ସମସ୍ତେ ତୁମକୁ ପୂଜା କରିଥାନ୍ତି । ଆମ ପ୍ରାଣଧନ କେଉଁଠି ଅଛନ୍ତି ସେ କଥା ଯଦି ତୁମେ ଆମକୁ ବତାଇ ଦେବ, ତା'ହେଲେ ଆମେ ତୁମକୁ

ପୂଜା କରନ୍ତୁ । ଏବେ ଆମକୁ କହିଦିଅ ତ ନନ୍ଦନନ୍ଦନ ଆମକୁ ଛାଡ଼ିଦେଇ କୁଆଡ଼େ ଚାଲିଯାଇଛନ୍ତି ? ତୁମ ପତ୍ରର ଆକାର ସହିତ ତାଙ୍କ ପେଟର ଆକାର କଣ୍ଟା ମେଳ ଖାଇଯାଉଛି ।'

ଓସ୍ତଗଛ କିଛି ଉତ୍ତର ନ ଦେବାରୁ ସେମାନେ ବରଗଛ ପାଖକୁ ଗଲେ ଏବଂ ତାହାକୁ କହିଲେ, 'ଆହେ ବରଗଛ ! ତୁମ ଚେରଗୁଡ଼ିକ ଖୁବ୍ ଟାଣ । ଶ୍ୟାମସୁନ୍ଦରଙ୍କ ଅଧର ଓ ଓଷ୍ଠ ହେଉଛି ତୁମ ଫଳ ସମାନ ନାଲ୍ ନାଲ୍ । ତାଙ୍କ ପାଦ-ତଳିପା ଓ ହାତ-ପାପୁଲି ହେଉଛି ତୁମ କଅଁଳିଆ ପତ୍ର ସମାନ । ତୁମ ଭଳି ସେ ଭକ୍ତ ପ୍ରକାର ତାପକୁ ଦୂର କରିଥାନ୍ତି । ତୁମେ ଯଦି ତାଙ୍କ ଠିକଣା ଜାଣିଛ, ତା'ହେଲେ ଆମକୁ କୁହ ।' ତାହାଠାରୁ ମଧ୍ୟ କିଛି ଉତ୍ତର ନ ପାଇ ସେମାନେ ଅମ୍ବଗଛ ପାଖକୁ ଗଲେ ଏବଂ ତାହାକୁ କହିଲେ, 'ଆହେ ଅମ୍ବଗଛ ! ତୁମେ ପରା ହେଉଛ ରସର ସାଗର । ତୁମ ଫଳକୁ ସବୁ ଫଳ ମଧ୍ୟରେ ଶ୍ରେଷ୍ଠ ବୋଲି କୁହାଯାଇଥାଏ । ଏହି ମଧୁରତା ତୁମେ ଅବଶ୍ୟ ନନ୍ଦନନ୍ଦନଙ୍କ ଅଧରାମୃତରୁ ପାଇଥିବ । ଶ୍ୟାମସୁନ୍ଦରଙ୍କ ବାଣୀ ହେଉଛି ପ୍ରଣୟଭରା ଓ ହାସ୍ୟମୟ । ସେ ତାହାଦ୍ୱାରା ଆମ ଚିତ୍ତକୁ ଚୋରାଇ ନେଇଛନ୍ତି ଏବଂ ଜଣେ ଚତୁର ଚୋର ଭାବରେ ଖସି ପଳାଇଯାଇଛନ୍ତି । ଆମେ ସମସ୍ତେ ତାଙ୍କୁ ଖୋଜୁଛୁ । ତୁମେ ଯଦି ତାଙ୍କ ଠିକଣା ଆମକୁ ବତାଇଦେବ, ତା'ହେଲେ ଜନ୍ମ-ଜନ୍ମାନ୍ତର ପର୍ଯ୍ୟନ୍ତ ଆମେ ତୁମଠାରେ ଋଣୀ ହୋଇ ରହିଥିବୁ । ତାହାଠାରୁ ବି ନିରାଶ ହୋଇ ସେମାନେ ଅନ୍ୟ ଗଛଗୁଡ଼ିକର ଶରଣ ନେଲେ ।

ସେମାନେ ଅଶୋକ ଗଛ ପାଖକୁ ଯାଇ କହିଲେ—"ଅହେ ଅଶୋକ ! ଆମେ ଶୁଣିଛୁ ଯେ ତୁମେ ସମସ୍ତଙ୍କ ଶୋକକୁ ହରଣ କରି ନେଇଥାଅ । ଆମ ଶୋକକୁ ବି ତୁମେ ହରଣ କରିନିଅ । ମଦନମୋହନ ମାଧବଙ୍କ ଠିକଣା ଆମକୁ ବତାଇ ଦିଅ । ତାଙ୍କ ସହିତ ଆମକୁ ମିଳାଇଦିଅ ।' ପୁଣି ସେମାନେ ଯାଇ ବେଲଗଛକୁ କହିଲେ, 'ଆହେ ବେଲଗଛ ! ତୁମଠାରେ ଲକ୍ଷ୍ମୀଦେବୀ ରହିଥାନ୍ତି । ଲକ୍ଷ୍ମୀଙ୍କ ସହିତ ମିଳିତ ହେବା ଉଦ୍ଦେଶ୍ୟରେ ଅସି କମଳାକାନ୍ତ ତୁମ ପତ୍ର-ସନ୍ଧିରେ ଲୁଚିଯାଇ ନାହାନ୍ତି ତ ? ତୁମେ ଆମକୁ କହିଦିଅ ସେ କେଉଁଠି ଅଛନ୍ତି ? ଆମେ ତାଙ୍କୁ କିଛି କୁହାବୁଝା କରିବୁ ନାହିଁ । ଆମେ ତାଙ୍କ କାମରେ ଜମା ହସ୍ତକ୍ଷେପ କରିବୁ ନାହିଁ । ଆମେ ଥରେ ମାତ୍ର ତାଙ୍କୁ ଖାଲି ଆଖି ପୂରାଇ ଦେଖିବାକୁ ଚାହୁଁଛୁ ।"

ସୂତ କହୁଛନ୍ତି—"ହେ ମୁନିମାନେ ମୁଁ ବା କେତେ ଗଛର ନାଁ ଗଣି ଗଣି କହିବି ? ବନରେ ସେମାନେ ଯେଉଁ ଗଛକୁ ଆଗରେ ଦେଖୁଥାନ୍ତି, ତାହା ଆଗରେ ଲମ୍ବ ହୋଇ ପ୍ରଣାମ କରୁଥାନ୍ତି ଏବଂ ଅତି ସ୍ନେହ ଓ ଆଦରର ସହିତ ତାହାକୁ ଶ୍ୟାମସୁନ୍ଦର କେଉଁଠି ଅଛନ୍ତି ବୋଲି ପଚାରୁଥାନ୍ତି । ଗଛ ଭଳି ଏଥିକ କ'ଣ ଉତ୍ତର ଦେଇପାରିବ ?

ସେମାନଙ୍କଠାରୁ ଉତ୍ତର ନପାଇ ପୁଣି ସେମାନେ ଆଗକୁ ବଢ଼ୁଥାନ୍ତି । ବର, କୁରୁବକ, ପଣସ, ଜାମୁ, ଅସନ, ମନ୍ଦାର, ଅର୍କ, ଖଜୁରି, ତଥା ବାଉଁଶ ଆଦି କରି ସବୁ ଗଛକୁ ଗୋଟି ଗୋଟି କରି ସେମାନେ ଶ୍ରୀକୃଷ୍ଣଙ୍କ ଠିକଣା ପଚାରିଲେ । ଯେତେବେଳେ କେହି କିଛି ଉତ୍ତର ନ ଦେଲେ, ସେତେବେଳେ ସେମାନଙ୍କ ମନରେ ଗୋଟିଏ ଭାବ ଜାଗିଉଠିଲା, 'ଆରେ ! ଏହି ଗଛମାନେ ତ ସମସ୍ତେ ହେଉଛନ୍ତି ପୁରୁଷବାଚକ । ଏହି ପୁରୁଷମାନେ ତ ବଡ଼ ନିଷ୍ଠୁର ହୋଇଥାନ୍ତି । ଦେଖ ତ ଶ୍ୟାମସୁନ୍ଦର ଆମକୁ କେତେ ସୁଖ ଦେଲେ; କିନ୍ତୁ ଶେଷରେ ଆମକୁ ଘାସ ଭଳି ମନେ କରି ଛାଡ଼ିଦେଇ ଚାଲିଗଲେ ! ଦୟା ତ ସ୍ତ୍ରୀମାନଙ୍କ ହୃଦୟରେ ହିଁ ହୋଇଥାଏ । ପରୋପକାର ଲାଗି ନିଜର ସର୍ବସ୍ୱକୁ ଉତ୍ସର୍ଗ କରିବା ତ ନାରୀ-ଜାତି ହିଁ ଶିଖିଛି । ଆସ ସିବା, ଏହି ଲତାମାନଙ୍କୁ ପ୍ରିୟତମଙ୍କ ପ୍ରଶ୍ନ ପଚାରିବା ।' ଏହା ଭାବି ସେମାନେ ଲତାମାନଙ୍କୁ ଓ ସ୍ତ୍ରୀଜାତୀୟ ଗଛମାନଙ୍କୁ ପ୍ରଭୁଙ୍କ ଠିକଣା ପଚାରିବାକୁ ଲାଗିଲେ ।"

## ଛପ୍ପୟ

ହେ ବୃନ୍ଦେ ! ହେ ତୁଲସି ! ଶ୍ୟାମକୋ ପତୋ ବତାଓ ।
କହୁଁ ଛିପାୟେ ଶ୍ୟାମ ବହୁନ ଟୁକ ତନିକ ଦିଖାଓ ॥
ଦୁତବଗିନ ହମ ଭଇଂ ତ୍ୟାଗି ହମ ହରିନେ ଦୀହ୍ନାଂ ।
ରମନ ସଙ୍ଗ ଶ୍ରୀପ୍ରିୟା ଗଇଂ ତୁମନେ କା ଚୀହ୍ନାଂ ॥
ପୌଧ ସମର୍ଥି ଅଗେ ବଢ଼ୀଂ ପତୋ ସବନ ପୂଛନ ଲଗୀଂ ।
ଲଲିତ ଲତା ପୁଷ୍ପିତ ଲଖୀଂ, ସମୁଝୀ ସବ ସଜନୀ ସଗୀଂ ॥



# ଲତା ଆଦିଙ୍କୁ ପ୍ରଭୁଙ୍କ ଠିକଣା ପଚାରିବା

ମାଲତ୍ୟଦର୍ଶି ବଃ କଚ୍ଚିନ୍ମଲ୍ଲିକେ ଜାତି ଯୂଥିକେ ।
ପ୍ରୀତିଂ ବୋ ଜନୟନ୍ୟାତଃ କରସ୍ପର୍ଶେନ ମାଧବଃ ॥
(ଶ୍ରୀ ଭା ୧୦ସ୍କ ୩୦ଅ, ୮ ଶ୍ଳୋକ)

## ଛପ୍ପୟ

ହେ ମାଲତି ! ତୁମ ସଦା ବସୋ ଶ୍ରୀଜୀ କେଶନମହଁ ।
ସ୍ୱର୍ଣ୍ଣମାଲତୀ ରଙ୍ଗ ବସୈ ପ୍ୟାରୀ ଅଗନ ମହଁ ॥

ମାଧବ ଲଭ୍ୟେ ଛପାଯ୍ୟ ମାଧବୀ କହାଁ ବତାଓ ।
ଅରୀ ମଲ୍ଲିକେ ! ଜାଡ ! ଯୂଥିକେ ! ଶ୍ୟାମ ଦେଖାଓ ॥
ପ୍ରେମ ପରମ ବନ୍ଦ ହେ ହି ନହିଂ ମନ ପ୍ରମୋଦ ଅରୁ ପୁଲକ ଅଙ୍ଗ ।
ଶ୍ୟାମ ଅବର୍ନି କରତେଂ ପରସି ନକସେ ଇତତେଂ ପ୍ରିୟା ସଙ୍ଗ ॥

ହେ ଭଗବାନ୍ ! ଯଦି ତୁମର ଆମକୁ ବୁଦ୍ଧି ଦେବାର ଥାଏ, ତେବେ ଏଭଳି ବୁଦ୍ଧି ଦିଅ ଯେପରି ନନ୍ଦନନ୍ଦନଙ୍କ ଶ୍ରୀଚରଣରେ ଆମେ ଧାଡ଼ି ପ୍ରବାହ ଭଳି କରନ୍ତର ଲାଗି ରହିଥିବୁ । ଯଦି ଆମକୁ ବୁଦ୍ଧିହୀନ ଓ ପାଗଳ କରିବାର ଥାଏ, ତେବେ ପ୍ରଭୁଙ୍କ ପ୍ରେମରେ ପାଗଳ କରିଦିଅ । ପ୍ରଭୁ ପ୍ରେମରେ ପାଗଳ ହେବାରେ କେତେ ସୁଖ ଅଛି, କେତେ ଆନନ୍ଦ ଅଛି ! ଏହାକୁ ସାଂସାରିକ ସୁଖ-ଆନନ୍ଦରେ ମାତିଥିବା ଓ ଦୁଃଖ-ଚକ୍ରରେ ଦୋଳାୟିତ ଥିବା ଲୋକ ଜାଣିବ ବା କପରି ଅନୁଭବ କରି ପାରିବ ? ଆହା ! ଯେତେବେଳେ ସକଳ ଜଡ଼ ଚେତନଠାରେ ମଣିଷ କେବଳ ଇଷ୍ଟଙ୍କୁ ହିଁ ଦେଖିପାରେ, ଏବଂ ଚର, ଅଚର, ସ୍ଥାବର, ଜଙ୍ଗମ, ତଥା ସଜୀବ ଓ ନିର୍ଜୀବ ମଧ୍ୟରେ ଥିବା ଭେଦଭାବ ଦୂର ହୋଇଯାଏ, ସେତେବେଳେ ତାହାର ସ୍ଥିତି ହୋଇଉଠେ ଦିବ୍ୟାତିତ । ଏଭଳି ସ୍ଥିତିରେ କପରି ରସର ଅନୁଭୂତି ହୁଏ, ତାହା ଆମେ ଶୀରସ ହୃଦୟ ଥିବା ଅନୁଭବହୀନ ଲୋକମାନେ ବା କପରି ବୁଝିପାରିବା ? ଏହାତ ରସର କଥା । ରସିକ ଲୋକ ହିଁ ଏହାକୁ ବୁଝି ପାରନ୍ତି ।

ସୂତ କହୁଛନ୍ତି—"ହେ ମୁନିମାନେ ! ସେହି ବ୍ରଜାଙ୍ଗନାମାନେ ପ୍ରେମରେ ପାଗଳିନୀ ହୋଇ ବ୍ରଜବଲ୍ଲଭଙ୍କୁ ଖୋଜୁଥିବା ଅବସ୍ଥାରେ ଗଛମାନଙ୍କୁ ସେ କେଉଁଠି ଅଛନ୍ତି ବୋଲି ପଚାରିବାକୁ ଲାଗିଲେ । ଗଛମାନେ ପରମହଂସଶ୍ରେଷ୍ଠ ପ୍ରାଣପତିଙ୍କ ଠିକଣା ବତାଇ ନ ପାରିବାରୁ ସେମାନେ ତୁଳସୀ ଦେବୀଙ୍କ ପାଖକୁ ଗଲେ ଏବଂ କହିଲେ, 'ଆଗୋ କଲ୍ୟାଣୀ ତୁଳସୀ ! ଦେଖ, ତୁମକୁ ହରିଙ୍କ ପ୍ରିୟା ବୋଲି କୁହାଯାଇଥାଏ । ପ୍ରିୟତମ ତମକୁ ଖୁବ୍ ବେଶି ଭଲ ପାଉଥାନ୍ତି । ତୁମେ ତ ନିରନ୍ତର ତାଙ୍କ ପାଦ-ତଳେ ପଡ଼ି ରହିଥାଅ, ତାଙ୍କ କଣ୍ଠରେ ଲାଗି ରହିଥାଅ । ଶ୍ୟାମସୁନ୍ଦର ଯେଉଁଠି ଲୁଚି ଥାଆନ୍ତୁ ନା କାହିଁକି, ତାଙ୍କ ରହିବା ଜାଗାଟି ତୁମକୁ ନିଶ୍ଚୟ ଜଣାଥିବ । ଦେଖ, ତୁମେ ଆମ ସହିତ ଛଳନା କର ନାହିଁ । ସେ କେଉଁଠି ଅଛନ୍ତି ଆମକୁ କହିଦିଅ । ଆମକୁ ଖାଲି ଥରେମାତ୍ର ତାଙ୍କ ଦର୍ଶନ କରାଇ ଦିଅ । ସେ ନିଜକୁ ସେବାଇ ନଥିନ୍ତି ତାଙ୍କ ପାଦତଳ ହେଉଛି ତୁମର ପ୍ରିୟ । ତୁମେ ଆମପ୍ରତି ସଉତୁଣୀ-ଭାବ ଦେଖାଇ ଆମକୁ ହିଂସା କରନାହିଁ । ଆମେ ତୁମର ଜାଗାଟିକୁ ଛଡ଼ାଇ ନେବାଲାଗି ଚାହୁଁ ନାହୁଁ । ଆମେ ତ ଖାଲି ତାଙ୍କ ଦର୍ଶନ ଲାଗି ବ୍ୟାକୁଳ ରହିଛୁ । ସେ ତୁମକୁ କଣ୍ଠରେ ଧାରଣ କରି ବନମାଳାର ଦିବ୍ୟାମୃତର ଲୋଭରେ ସୁଗନ୍ଧରେ ଗୁଣୁଗୁଣୁ କରୁଥିବା ମଧୁମାଛିମାନଙ୍କୁ ହାତରେ ଘଉଡ଼ାଇ ଦେଉଥିବା ଅବସ୍ଥାରେ ଏଇ ଅଳ୍ପ ସମୟ ତଳେ ଏଠାରୁ ନିଶ୍ଚୟ ବାହାରି ଯାଇଥିବେ ।'

କଳା ତୁଳସୀ ଗଛଟି ଅକାରରେ ଥିଲା ଶ୍ରେଷ୍ଠ । ସେ କିଛି ହେଲେ ଉତ୍ତର ଦେଲା ନାହିଁ । ସେଥିରେ ଗୋପୀମାନେ ନିଜ ନିଜ ମଧ୍ୟରେ ବୁଝାବୁଝି ହେବାକୁ ଲଗିଲେ, 'ଭଉଣୀମାନେ ! ଏହି ଶ୍ରେଷ୍ଠସ୍ତ୍ରୀଟି ଭାରି ଦୁଷ୍ଟା । ସେ ବି ଶ୍ୟାମଙ୍କର ପ୍ରିୟତମା ଶ୍ୟାମା । ସେ ବି ନିଜ ପ୍ରିୟତମ କୃଷ୍ଣଙ୍କ ଭଳି କଠୋର । ସ୍ତ୍ରୀ ଜାତିଠାରେ ଯେତେ ଭଲ ଗୁଣ ଥାଉ ନା କାହିଁକି, ସେମାନଙ୍କଠାରେ ଗୋଟାଏ ବଡ଼ ଖରାପ ଗୁଣ ଅଛି । ତାହା ହେଲା ସପତ୍ନୀ ପ୍ରତି ହିଂସା-ଭାବ । ଏମାନଙ୍କର ସବୁବେଳେ ଇଚ୍ଛା ଥାଏ କି ମୋ ନିଜଙ୍କ ପ୍ରିୟତମ ଅନ୍ୟ କାହାକୁ ପ୍ରେମ ନ ଦିଅନ୍ତୁ, ଅନ୍ୟ କାହାକୁ ମିଠା ମିଠା କଥା ନ କହନ୍ତୁ । ଏହି ତୁଳସୀକୁ ତ ଶ୍ୟାମ ମୁଣ୍ଡ ଉପରେ ନେଇ ବସାଇଛନ୍ତି । ସେ ଏହାକୁ ଏତେ ଆଦର କରିଥାନ୍ତି ଯେ ଛପନ ପ୍ରକାର ଭୋଗ ଥିଲେ ମଧ୍ୟ ତୁଳସୀ ବିନା ଶ୍ୟାମ ଗ୍ରହଣ କରିବେ ନାହିଁ । ଯେଉଁଠି ତୁଳସୀର ଉପବନ ଥାଏ, ସେଠି ନନ୍ଦନନ୍ଦନ ସବୁବେଳେ ରହୁଥାନ୍ତି । ତେଣୁ ସେ ନିଶ୍ଚୟ ଏଇଠି କେଉଁଠି ତୁଳସୀ-ଉପବନରେ ରହୁଥିବେ । ଏଇଠି କେଉଁଠି ବୃନ୍ଦାବନର କୁଞ୍ଜରେ ସେ ଲୁଚି କରି ରହୁଥିବେ । କିନ୍ତୁ ଏହି ତୁଳସୀଠାରୁ ତାଙ୍କ ଖବର ପାଇବା କଠିଣ କଥା । ଏହା ଅସମ୍ଭବ । ଚାଲ, ଆମେ ଆଗେଇ ତାଇ ଫୁଲ ଓ ଫଳରେ ଭରପୂର ଥିବା ଏହି ଲତାମାନଙ୍କୁ ପଚାରିବା । କାରଣ ଏମାନେ ସମସ୍ତେ ଭାରି ଖୁସିଥିବା ଅବସ୍ଥାରେ ଅଛନ୍ତି ଏବଂ ଆନନ୍ଦରେ ବିଭୋର ହୋଇ ଫୁଲ ଉଠୁଛନ୍ତି । ପ୍ରଭୁଙ୍କ ସ୍ପର୍ଶ ସୁଖ ଆଣି ଦେଇଥାଏ । ସେହି ସ୍ପର୍ଶ ବିନା ପ୍ରାଣୀ ମନରେ ପ୍ରସନ୍ନତା ଆସି ନଥାଏ' । ଏହିସବୁ କଥା ଭାବି ସେମାନେ ଫୁଲଭରା ଲତାମାନଙ୍କ ପାଖକୁ ଗଲେ ।

ସବା ଆଗ ସେମାନେ ଯୁଟେମଲ୍ଲୀ ପାଖକୁ ଗଲେ ଏବଂ ତା'କୁ କହିଲେ—"ଆଗୋ ଭଉଣୀ ଯୁଟେମଲ୍ଲୀ ! ତୁମେ ତ କୌଣସି ସ୍ତ୍ରୀଠାରେ ଭେଦ-ଭାବ ଦେଖି ନଥାଅ । ତୁମେ ସମସ୍ତଙ୍କ ମୁଣ୍ଡ-ବାଳର ଶୋଭାକୁ ବଢ଼ାଉଥାଅ । ସବୁ ସ୍ତ୍ରୀ ତୁମକୁ ଆଦର କରିଥାନ୍ତି ଏବଂ ମୁଣ୍ଡ ଉପରେ ବସାଇଥାନ୍ତି । ନିଜର କୁଞ୍ଚ-ଲୁଞ୍ଚ ବାଳରେ ଓ ଖୋସାରେ ତୁମକୁ ସେମାନେ ଖୋସିଥାନ୍ତି ଏବଂ ତୁମକୁ କଣ୍ଠର ହାର କରିଥାନ୍ତି । ଶ୍ୟାମସୁନ୍ଦରଙ୍କ ନିଜ ପ୍ରିୟତମାଙ୍କର ତୁମେ ହୋଇଛ ପ୍ରିୟ । ଏ କଥା ଜାଣି ସେ ତୁମକୁ ବି ଭଲ ପାଇଥାନ୍ତି । ତୁମେ ଆମକୁ ଏକଥା କହୁଛ ତ, ଆମକୁ ଏକୁଟିଆ ବିକଳ ଅବସ୍ଥାରେ ଛାଡ଼ି ଦେଇ ଶ୍ୟାମସୁନ୍ଦର କ'ଣ ତାଙ୍କ ପ୍ରିୟତମାଙ୍କୁ ଏକାକୀ ଧରି ଏଠାରୁ ଚାଲିଗଲେ ?'

ଧଳା ରଙ୍ଗର ଯୁଟେମଲ୍ଲୀ ଫୁଲଟି କିଛି ହିଁ ଉତ୍ତର ଦେଲା ନାହିଁ । ତେଣୁ ସେମାନେ ସୁନେଲି ରଙ୍ଗର ଯୁଟେମଲ୍ଲୀ ଫୁଲ ପାଖକୁ ଗଲେ ଏବଂ କହିଲେ—"ଆଗୋ ସୁବର୍ଣ୍ଣ ଯୁଟେମଲ୍ଲୀ ! ତୁମ ରଙ୍ଗ ସର୍ବଦା ଲକ୍ଷ୍ମୀଠାକୁରାଣୀଙ୍କ ଦେହର ରଙ୍ଗ ଭଳି ହୋଇଥାଏ । ଶ୍ୟାମସୁନ୍ଦରଙ୍କ ପ୍ରିୟତମମାନଙ୍କ ରଙ୍ଗ ସହିତ ତୁମ ରଙ୍ଗର ମେଳ ଅଛି । ସେଥିପାଇଁ ତ ସେ (ଶ୍ୟାମସୁନ୍ଦର) ତୁମକୁ ସମସ୍ତଙ୍କଠାରୁ ବେଶି ଭଲ ପାଇଥାନ୍ତି । ସେ ବଡ଼ ଉଲ୍ଲାସର ସହିତ

ତୁମ ହାରକୁ କଣ୍ଠରେ ପିନ୍ଧିଥା'ନ୍ତି । ସତେ ଯେମିତି ତୁମେ ତାଙ୍କ ପ୍ରିୟତମାଙ୍କର ସଖୀ ଭଳି ! ତୁମର କାହାପ୍ରତି ପକ୍ଷପାତ-ବତ୍ସର ନଥାଏ । ସୌଭାଗ୍ୟ ନେଇ ଆମଠାରେ ମଦ-ଭାବ ଅଭିମାନ ଆସିଲା । ସେହି କାରଣରୁ ଶ୍ୟାମସୁନ୍ଦର ଆମ ଉପରେ ରାଗିକରି ଆମକୁ ଅନାଥ ଓ ନିରାଶ୍ରୟ କରି ଦେଇ ଚାଲିଗଲେ । ସେ କୁଆଡ଼େ ଚାଲିଗଲେ, ଏପର୍ଯ୍ୟନ୍ତ ସେ କଥା ଆମକୁ କେହି କହିପାରୁ ନାହାନ୍ତି । ତୁମେ ଯଦି ତାହା ଜାଣିଛ, ତେବେ ଆମକୁ କହିଦିଅ ।'

ସୁଶ୍ରୀ ଗୋପମାନେ ମଧ୍ୟ ମନ୍ଦାର ଉଦ୍ଭିଦାରୁ ଏବଂ ମେହେନ କେଉଁଠି ଅଛନ୍ତି କିଛି ନ କହିବାରୁ ସେମାନେ ପୁଣି ମାଧବୀ ଲତାଗୁଳ୍ମଙ୍କର କୁଞ୍ଜକୁ ଗଲେ । ସେମାନେ ମାଧବୀକୁ ଡାକି କହିବାକୁ ଲାଗିଲେ—"ଆଗୋ ମାଧବୀ ! ତୁମେ ହେଉଛ ମାଧବଙ୍କର ଖୁବ୍ ପ୍ରିୟ । ସେଥିପାଇଁ ତ ତୁମ ନାଁ ହୋଇଛି ମାଧବୀ । ତୁମ କୁଞ୍ଜରେ କେଳି କରିବାକୁ ଶ୍ରୀକୃଷ୍ଣଙ୍କୁ ଖୁବ ଭଲ ଲାଗିଥାଏ । ଯଦିଓ ତୁମେ ମାଧବଙ୍କର ପ୍ରିୟ ମାଧବୀ ଲତା, ତଥାପି ଆମର ତୁମ ଉପରେ ବିଶ୍ୱାସ ଆସୁ ନାହିଁ, କାରଣ ତୁମେ ସବୁବେଳେ ରଙ୍ଗ ବଦଳାଉଥାଅ । ତୁମ ଫୁଲ ଫୁଟିବା ସମୟରେ ବାଳୁତ ଅବସ୍ଥାରେ ପରିଷ୍କାର ଧଳା ହୋଇଥାଏ । କିନ୍ତୁ ତୁମଠାରେ ଯୌବନର ମଦ ଭରି ଉଠିଲେ, ତାହା ନାଲ୍ ହୋଇଥାଏ । ଯେ ପରିବର୍ତ୍ତନଶୀଳ ଯାହାଠାରେ ସ୍ଥିରତା ନାହିଁ, ତା' କଥାକୁ ବା କିପରି ବିଶ୍ୱାସ କରିହେବ ?' ଏହା ଭାବି ଭାବି ସେମାନେ ଆଗକୁ ବଢ଼ିଲେ ଏବଂ ଧଳା ଫୁଲ ଲଦି ହୋଇଥିବା ମଲ୍ଲୀ ଲତାକୁ ଦେଖିଲେ । ସେମାନେ ତାହାଙ୍କୁ କହିଲେ, 'ଆଗୋ ମଲ୍ଲୀ ! ତୁମେ ସାପମାନଙ୍କୁ ବି ଶରଣ ଦେଇଥାଅ । ଭଅଁରମାନେ ବି ତୁମ ପାଖକୁ ଆସିବାରେ ସୁଖୀ ହୋଇଥାନ୍ତି । ଆମେ ଆଶ୍ରୟହୀନା ହୋଇ ବୁଲୁଛୁ । ତୁମେ ଆମ ଉପରେ ଦୟା କର । ନନ୍ଦନନ୍ଦନ କେଉଁଠି ଅଛନ୍ତି ଆମକୁ ଟିକିଏ କହିଦିଅ ।"

ମଲ୍ଲୀଠାରୁ ବି କିଛି ଉତ୍ତର ନ ପାଇ ସେମାନେ ଚମ୍ପା ପାଖକୁ ଗଲେ ଏବଂ କହିଲେ— "ଆଗୋ ଚମ୍ପା ! ତୁମର ତ ଜଳା ରଙ୍ଗ ପ୍ରତି ଘୃଣା ଥାଏ । ସେଥିପାଇଁ ଭଅଁର ତୁମ ପାଖକୁ ଆସେ ନାହିଁ । ତେଣୁ କୃଷ୍ଣ କେଉଁଠି ଅଛନ୍ତି, ସେ କଥା ତୁମେ ଅବଶ୍ୟ ଆମକୁ କହିଦେବ । ତୁମେ ଜମା ପକ୍ଷପାତ କରିବ ନାହିଁ । କୃଷ୍ଣପ୍ରିୟାଙ୍କ ଶ୍ରୀଅଙ୍ଗ ଦେହର ରଙ୍ଗ ହେଉଛି ହଳଦିଆ ଚମ୍ପା ଫୁଲ ଭଳି । ନାଲି ଚମ୍ପାର ରଙ୍ଗଭଳି ହେଉଛି ତାଙ୍କ ଶାଢ଼ୀର ରଙ୍ଗ । ଶ୍ୟାମସୁନ୍ଦର ତାଙ୍କୁ ଏକାକୀ ବଣରେ କେଉଁଠାକୁ ନେଇ ଯାଇଛନ୍ତି । ନିଜ ପ୍ରିୟତମାଙ୍କୁ ଖୁସି କରାଇବା ଲାଗି ସେ ତୁମର ଫୁଲ-ତୋଡ଼ା ନେଇଥିବେ । ସେ କଥା ଆମକୁ କହିଦିଅ । ସେହି ରାସ୍ତାଟି ଆମକୁ ଦେଖାଇଦିଅ ।'

ଚମ୍ପା କିଛି ଉତ୍ତର ନ ଦେବାରୁ ସେମାନେ ଜାଇ ଲତା ପାଖକୁ ଗଲେ ଏବଂ କହିବାକୁ ଲାଗିଲେ, 'ଭଉଣୀ ଜାଇ ! ଆମର ଓ ତୁମର ଜାତି ହେଉଛି ଗୋଟିଏ । ଆମେ

ସ୍ତ୍ରୀ ଜାତି ଆଉ ତୁମେ ବି ସ୍ତ୍ରୀ ଜାତି । ଖାଲି ଫରକ ଏତିକି ଯେ ତୁମେ ଫୁଲି ଉଠିଛ ଏବଂ ଆମେ ଝାଉଁଳି ପଡ଼ୁଛୁ । ଯଦି ଆମକୁ ମଦନମୋହନ ମିଳିଯିବେ, ତା'ହେଲେ ଆମେ ବି ଫୁଲି ଉଠିବୁ । ଥରେ ମାତ୍ର ସେ ଯଦି ଆମକୁ ଭୁଜରେ ଜାକି ଧରନ୍ତେ, ସେଥିରେ ଆମେ କୃତାର୍ଥ ହୋଇଯିବୁ । ପ୍ରିୟତମଙ୍କ ପ୍ରେମଭରା ଆଲିଙ୍ଗନରେ ଯେଉଁ ସୁଖ ଜୀବନରେ ମିଳେ ସେତେ ସୁଖ ଅନ୍ୟ କୌଣସି ଜିନିଷରେ ବି ନାହିଁ । ତୁମେ ଯେଉଁ ଫୁଲି ହେଉଛ, ତାହାର ଗୋଟିଏ କାରଣ ଆମକୁ ଜଣା ପଡ଼ୁଛି । ଏଠାରୁ ବାହାରିଗଲାବେଳେ ଶ୍ୟାମସୁନ୍ଦର ତୁମକୁ ଛୁଇଁ ଦେଇଛନ୍ତି । ପ୍ରିୟତମଙ୍କ ହାତର ପରଶ ସୁଖ ଆଣି ଦେଇଥାଏ । ତାହା ପାଇଲେ ଦେହରେ ରୋମାଞ୍ଚ ଜନ୍ମିଥାଏ ଏବଂ ଦେହ ଥରି ଉଠିଥାଏ । ତୁମଗୁଡ଼ିକ ଟାଙ୍କର ଉଠି ସିଧା ସିଧା ଠିଆ ହୋଇ ଯାଇଥାଏ ଏବଂ ହୃଦୟରେ ଆନନ୍ଦର ଲହରୀ ଉଚ୍ଛୁଳି ଉଠିବାକୁ ଲାଗିଥାଏ । ତୁମଠାରେ ଏହିସବୁ ଲକ୍ଷଣ ଥିବାର ଆମେ ଦେଖିପାରୁଛୁ । ଅବଶ୍ୟ ନିଜ ପ୍ରିୟତମାଙ୍କ ରୂପ ସଜାଇବା ଲାଗି ସେ ତୁମକୁ ଫୁଲ ମାଗିଥିବେ, ତୁମେ ହସି ହସି ସେଥିରେ ଝୁଙ୍କି ପଡ଼ିଥିବ । ଏହାଦ୍ୱାରା ତୁମେ ନିଜ ଦେହରେ ତାଙ୍କ କଅଁଳିଆ ହାତର ପରଶ ପାଇଥିବ ।'

ଜାଇ ବି କିଛି ଉତ୍ତର ଦେଲି ନାହିଁ । ସେଥିପାଇଁ ସେମାନେ ଯୂଇ ଲତା ପାଖକୁ ଗଲେ ଏବଂ କହିଲେ, 'ଆଗୋ ଯୂଇ ! ଜଣେ ପୁରୁଷଙ୍କୁ ପ୍ରେମ କରୁଥିବା ଦୁଇ ଜଣ ସ୍ତ୍ରୀ ପରସ୍ପର ସହିତ ଗୁଡ଼ିଙ୍କୁ ଗୁଡ଼ି ମିଳାଇ ରହିପାରନ୍ତି ନାହିଁ ବୋଲି ଆମେ ଦେଖିଥାଉଁ । କିନ୍ତୁ ଆମେ ତୁମଠାରେ ଏହାର ବିପରୀତ ଭାବ ଦେଖିବାକୁ ପାଉଛୁ । ତୁମ ଲତାଗୁଡ଼ିକ ଏପରି ପରସ୍ପର ସହିତ ଲାଗିକରି ରହିଛନ୍ତି ଯେ ଏଗୁଡ଼ିକୁ କେହି ଅଲଗା କରିବାପାଇଁ ଚାହିଁଲେ ହଠାତ୍ ତାହା କରିପାରିବ ନାହିଁ; ବରଂ ଏଗୁଡ଼ିକ ମଝିରୁ ଭାଙ୍ଗିଯିବ । ତୁମ ଗନ୍ଧ ଉତ୍କଟ ନୁହେଁ, କଡ଼ା ବି ନୁହେଁ । ଏହା ମିଠା ମିଠା ଓ ଅଳ୍ପ ଅଳ୍ପ ସୁଗନ୍ଧରେ ଭରପୁର । ତୁମ ମାଳାରେ ଗୁନ୍ଥିତ ହୋଇଥିବା ଗଜରା ପ୍ରିୟତମମାନଙ୍କର ଖୁବ ପ୍ରିୟ । ତୁମେ ପ୍ରାୟ ସବୁବେଳେ ଫୁଲଭରା ହୋଇ ରହିଥାଅ । ତୁମଠାରୁ କେବେହେଲେ ପତ୍ର ଝଡ଼ି ଯିବାର ଆମେ ଦେଖୁ ନାହିଁ । ତୁମେ ସବୁବେଳେ ସବୁଜ ରହିଥାଅ । ତୁମ ଲତା ସୁନ୍ଦର, ଘଞ୍ଚ ଓ ଶୀତଳ । ଏହା ସୁଖ ଦେଇଥାଏ । ନିଜ ସଖୀଙ୍କ ସହିତ ଶ୍ୟାମସୁନ୍ଦର ତୁମ ତଳେ ବିଶ୍ରାମ ନେଇ ନାହାନ୍ତି ତ ?'

ଯେତେବେଳେ ଯୂଇ ବି ମଉନ ରହିଗଲା, ସେତେବେଳେ ଗୋପୀମାନେ କରୁଣ କଣ୍ଠରେ ସବୁସ୍ତ୍ରୀ-ପୁରୁଷ ବାଚକ, ଲତା, ବୃଦା ଆଦିଙ୍କୁ ଡାକି ଡାକି କହିଲେ, 'ହେ ଯମୁନା କୂଳର ଶ୍ରେଷ୍ଠ ଗଛମାନେ ! ହେ ପରୋପକାର ଲାଗି ଜୀବନ ଧାରଣ କରୁଥିବା ଗଛମାନେ ! ହେ ଖରା, ଶୀତ ଓ ବର୍ଷାର କଷ୍ଟରୁ ରକ୍ଷା କରୁଥିବା ଗଛମାନେ ! ଆମେ ହେଉଛୁ ଅବଳା । ଆମର କେହି ଅଶ୍ରା ନାହାନ୍ତି । ପ୍ରିୟତମ ଆମକୁ ଛାଡ଼ି ଚାଲି ଯାଇଛନ୍ତି । ଆପଣଙ୍କ ମଧ୍ୟରୁ

କେହି ଜଣେ ହେଲେ ଆମ ଉପରେ ଦୟା କରନ୍ତୁ, କୃପା କରନ୍ତୁ, ଅନୁଗ୍ରହ କରନ୍ତୁ । ଆମେ ସମସ୍ତେ ଚେତା ହରାଇ କାନ୍ଦୁଛୁ । ଆମକୁ କେହି ଜଣେ ଶ୍ୟାମସୁନ୍ଦରଙ୍କୁ ଥରଟିଏ ପାଇଁ ହେଲେ ଦେଖାଇ ଦଅନ୍ତୁ, ଆମକୁ ତାଙ୍କ ସହିତ ମୁହୂର୍ତ୍ତିଟିଏ ପାଇଁ ହେଲେ ମିଳାଇ ଦଅନ୍ତୁ । ତା' ନ ହେଲେ ସେ ଯେଉଁବାଟେ ବାହାରି ଯାଇଛନ୍ତି, ସେହି ବାଟଟି ହେଲେ ବତାଇ ଦିଅନ୍ତୁ ।"

ସୂତ କହୁଛନ୍ତି, "ଲତା-ଗଛମାନଙ୍କଠାରୁ ଭଗବାନଙ୍କର କିଛି ହେଲେ ଠିକଣା ନ ପାଇ ସେହି ଗୋପୀମାନେ କରୁଣ ହୋଇ ଉଠିଲେ । ସେଇଠୁ ସେମାନେ ପୃଥିବୀକୁ ପଚାରିବାକୁ ଆରମ୍ଭ କଲେ । ସେମାନେ ପୃଥିବୀକୁ ଡାକି କହିଲେ, 'ଆଗୋ ଭଉଣୀ ବସୁନ୍ଧରା ! ତୁମେ ହିଁ ସକଳ ଧନକୁ ଧାରଣ କରି ରଖିଛ । ସେଥିପାଇଁ ତୁମ ନାଁ ହୋଇଛି ବସୁନ୍ଧରା । ତୁମେ ଯେତେବେଳେ ପାତାଳ ଭିତରକୁ ଚାଲି ଯାଇଥିଲ, ସେତେବେଳେ ଶ୍ୟାମସୁନ୍ଦର ବରାହରୂପ ଧରି ତୁମକୁ ନିଜ ପିଠିରେ ବସାଇ ନେଇ ଆସିଥିଲେ । ସେତେବେଳେ ତୁମେ ଉତ୍ତମରି ତାଙ୍କୁ ଗାଢ଼ ଭାବରେ ଆଲିଙ୍ଗନ କରିଥିଲ । ତୁମେ ତ ଜାଣିଛ ପ୍ରିୟତମଙ୍କୁ ଆଲିଙ୍ଗନ କରିବାରେ କେତେ ଆନନ୍ଦ ମିଳିଥାଏ ! ବାମନାବତାରରେ ବି ସେ ଗୋଟିଏ ପାଦରେ ତୁମର ସାରା ଦେହକୁ ଛୁଇଁ ଦେଇଥିଲେ । ତୁମେ ତ ହେଉଛ ତାଙ୍କର ପ୍ରିୟତମା । ତୁମ କଠିଣ ଗୁଡ଼ ଉପରେ ନିଜର ଅରୁଣ ରଙ୍ଗର କୋମଳ ପାଦ ଦୁଇଟିକୁ ସେ ବଡ଼ ସଙ୍କୋଚରେ ରଖି ଦେଇଥାନ୍ତି ଏବଂ ତୁମେ ସେହି ଦୁଇଟିକୁ କୃପଣର ଧନ ଭଳି ଲୁଚାଇ ରଖିଥାଅ । ତାଙ୍କ ପାଦ-ପଦ୍ମର ପବିତ୍ର ପରଶରେ ତୁମେ ନିଜକୁ ଧନ୍ୟ କରି ଦେଇଥାଅ । ଆମକୁ ତୁମେ ଧନ୍ୟ କରାଇ ଦିଅ, ଏବଂ ପ୍ରିୟତମ କେଉଁଠି ଅଛନ୍ତି ତାହା କହିଦିଅ । ସେ ଏକାକୀ ନାହାନ୍ତି । ସେ ନିଜ ପ୍ରିୟତମାଙ୍କୁ ସାଥିରେ ଧରି ଯାଇଛନ୍ତି ।'

ପୃଥିବୀଠାରୁ କିଛି ହେଲେ ଉତ୍ତର ନ ପାଇ ସେମାନେ ଏଣେ ତେଣେ ଦେଖିବାକୁ ଲାଗିଲେ । ଏହି ସମୟରେ ଚଞ୍ଚଳନୟନା ହରିଣୀମାନଙ୍କୁ ନିଜ ସ୍ୱାମୀ ହରିଣ ସହିତ ଆସୁଥିବାର ସେମାନେ ଦେଖିଲେ । ସେହି ହରିଣୀମାନଙ୍କୁ ଦେଖି ସେମାନେ କହିବାକୁ ଲାଗିଲେ, 'ଭଉଣୀମାନେ ! ସ୍ତ୍ରୀ ଜାତିରେ ଜନ୍ମ ନେଇ ତୁମ୍ଭେମାନେ ହିଁ କୃତାର୍ଥ । ତୁମ୍ଭେମାନେ ସବୁବେଳେ ନିଜ ପତିଙ୍କ ସାଥିରେ ଲାଗିରହି ରହୁଛ । ତୁମ୍ଭମାନଙ୍କ ପତି ତୁମ୍ଭମାନଙ୍କୁ କେବେହେଲେ ଛାଡ଼ନ୍ତି ନାହିଁ । ଏଇ ଦେଖ, ଆମ ପ୍ରାଣପତି ଶ୍ୟାମସୁନ୍ଦର ତ ଆମକୁ ଛାଡ଼ି କରି ଚାଲିଗଲେ । ତୁମ୍ଭମାନଙ୍କ ଆଖିଗୁଡ଼ିକରୁ ଅନୁରାଗ ଝରି ଝରି ହୋଇ ଝରି ପଡ଼ୁଛି । ଏଥିରୁ ଜଣା ପଡ଼ୁଛି ତୁମ୍ଭେମାନେ ଶ୍ୟାମସୁନ୍ଦରଙ୍କୁ ନିଜ ପ୍ରିୟତମାଙ୍କ ସହିତ ଏଠାରୁ ଯାଇଥିବାର ଅବଶ୍ୟ ହିଁ ଦେଖିଥିବ । ତାଙ୍କ ପ୍ରାଣପ୍ରିୟାଙ୍କ ଆଖି ଦୁଇଟି ପଦ୍ମଫୁଲ ଭଳି । ସେହି ଦୁଇଟିର ତୁମ୍ଭମାନଙ୍କ ଆଖି ସହିତ ଭାରି ମେଳ ଅଛି । ସେ ଏଠାକୁ ଆସିଥିବା

ବିଷୟରେ ଆମ ମନରେ କିଛି ହେଲେ ସନ୍ଦେହ ନାହିଁ ; କାରଣ ନିଜ ପ୍ରାଣପ୍ରିୟାଙ୍କ ସହିତ ଅଙ୍ଗମିଳନ ହେବାରେ କୁଚ-କୁଙ୍କୁମରେ ରଞ୍ଜିତ ହୋଇଥିବା କୁନ୍ଦ କଳିର ମାଳାର ମନମତାଣିଆ ଗନ୍ଧ ଏଠାକୁ ଆସୁଛି । ଅବଶ୍ୟ ହିଁ ଏହି ଗନ୍ଧ କୁଳପତି କୃଷ୍ଣଙ୍କ କଣ୍ଠ-ମାଳାର ଗନ୍ଧ । ତୁମ୍ଭେମାନେ ଆମ୍ଭ ଉପରେ ଦୟାକରି ସେ କେଉଁଠି ଅଛନ୍ତି ତାହା କହିଦିଅ ।"

ଏହାଶୁଣି ଶୌନକ ପଚାରିଲେ—"ସୂତ ମହାଶୟ ! ଏହି ରାଧିକାଦେବୀ କିଏ ? ସେ କାହାର ଝିଅ ? ଶ୍ରୀକୃଷ୍ଣଙ୍କ ସହିତ ସେ଼ଙ୍କର କି ସମ୍ପର୍କ ? ଏପର୍ଯ୍ୟନ୍ତ ଆପଣ ଏ କଥା କାହିଁକି କହିଲେ ନାହିଁ ? ଭଗବାନ ବ୍ୟାସ ଶ୍ରୀମଦ୍‌ଭାଗବତରେ ସେଙ୍କ ନାଁଟି ପରିଷ୍କାର ଭାବରେ କାହିଁକି ନେଲେ ନାହିଁ, ଦୟା କରି ପ୍ରଥମେ ଆମର ଏହି ପ୍ରଶ୍ନର ଉତ୍ତର ଦିଅନ୍ତୁ । ତାହାପରେ ଯାଇ ଆଗର କଥା କୁହନ୍ତୁ ।"

ଏହାଶୁଣି ସୂତ ଗମ୍ଭୀର ହୋଇ ଉଠିଲେ ଏବଂ କହିଲେ—"ହେ ପ୍ରଭୁ ! ରାଧା ତତ୍ତ୍ୱ ଖୁବ୍ ଗମ୍ଭୀର କଥା । ଏହାର ବର୍ଣ୍ଣନା ଶୁକ, ସନକାଦି, ଶେଷ, ଶାରଦା ତଥା ନାରଦ, ବ୍ରହ୍ମାଦି ମଧ୍ୟ କରି ପାରିବେ ନାହିଁ । ଏହାସବୁ ହେଉଛି ଖୁବ୍ ରହସ୍ୟର କଥା । ସମସ୍ତଙ୍କ ଆଗରେ ଏହାକୁ ପ୍ରକାଶ କରିବାର କଥା ନୁହେଁ । ଶାସ୍ତ୍ରକାରମାନେ ବଡ଼ କୌଶଳର ସହିତ ପରୋକ୍ଷଭାବରେ ଏହି କଥାଗୁଡ଼ିକର ବର୍ଣ୍ଣନା କରିଛନ୍ତି । ମୋ'ର ଯେତିକି ବୁଦ୍ଧି ଅଛି, ଯେତିକି ଶକ୍ତି ଅଛି, ସେହି ଅନୁସାରେ ମୁଁ ଆପଣଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେବି । ଆପଣ ମନ-ଧ୍ୟାନ ଦେଇ ତାହା ଶୁଣନ୍ତୁ ।"

## ଛପ୍ପୟ

ହେ ଧରଣୀ ! ତୁ ଧନ୍ୟ ପାଦ ପ୍ରଭୁଙ୍କେ ଧାରଣ କିତ ।
ଲଟ୍ୟେ ଲଡ଼ଲୀ ସଙ୍ଗ ଲାଲ ଗିରଧର ନିରଖେ ଇତ ॥
ହେ ମୃଗବଧୂବର ! ନୟନ ନେହମହଁ ଭୀଜେ ତୁମରେ ।
ବହନା ! ଦେଉ ବତାଇ ଗଏ ଇତ ପ୍ରିୟତମ ହମରେ ॥
ରାଧା କନ୍ଧା କର ଧରେ, କ୍ରୀଡ଼ା କମଲ ଘୁମାଓତେ ।
ନିରଖେ ନନ୍ଦନନ୍ଦନ ନୟନ ଖଗ ମୃଗ କୁଲ ସରସାଓତେ ॥



## ଶ୍ରୀରାଧା

ଅତେପ୍ୟଣପତ୍ନ୍ୟ ପଗତଃ ପ୍ରିୟୟେହ ଗାତ୍ରୈ—
ସ୍ତନ୍ୟନ୍ଧଶାଂ ସଖି ସୁନିର୍ବୃତମଚ୍ୟତୋବଃ ।
କାନ୍ତାଙ୍ଗସଙ୍ଗକୁଚକୁଙ୍କୁମ ରଞ୍ଜିତାୟାଃ
କୁନ୍ଦସ୍ରଜଃ କୁଳପତେରିହ ବାତି ଗନ୍ଧଃ ॥

(ଶ୍ରୀଭା ୧୦ ସ୍କ ୩୦ ଅ ୧୧ ଶ୍ଳୋକ)

### ଛପ୍‌ପୟ

ଶୌନକ ପୁଚ୍ଛେଁ—ସୂତ ! କୌନ ରାଧା ହ୍ୟୈ ପ୍ୟାରୀ ।
ସୂତ କହେଁ—ମୁନ ! ଶକ୍ତି ସ୍ରୋତ ସୁଖ ଭରେଓ୍ୱାରୀ ॥
ଶ୍ରୀବୃଷ ଭାନୁ କୁମାର କୀର୍ତ୍ତି ପତ୍ରୀ ସୁକୁମାରୀ ।
ବରସାନେକୀ ଲଲୀ କିଶୋରୀ ଖେରୀ ଖରୀ ॥
ଗୋପୀ, କାନ୍ତା ରାଧିକା, ପ୍ରିୟା ପ୍ରେୟସୀ, କାମିନୀ ।
ନିତ୍ୟକିଶୋରୀ ଲଡ଼ଲୀ, ମନମୋହନ ମନ ସ୍ୱାମିନୀ ॥

ପ୍ରେମ-ମାର୍ଗରେ ଅତି ରହସ୍ୟର କଥାକୁ ସଂକେତରେ ବୁଝାଇ ଦିଆଯାଇଥାଏ । ଦେବତାମାନେ ବି ପରୋକ୍ଷପ୍ରିୟ ହୋଇଥାନ୍ତି । ପୁଣି ପ୍ରେମ ତ ହେଉଛି ହୃଦୟର ବସ୍ତୁ । ଆମେ ଧରନ୍ତୁ କାହାକୁ ପ୍ରେମ କରୁଛୁ । ଯେପର୍ଯ୍ୟନ୍ତ ତାହା ଦଚକଣ ରହିଥାଏ, ଗୋପନ ହୋଇ ରହିଥାଏ, ସେପର୍ଯ୍ୟନ୍ତ ତହିଁରେ ଅଧିକ ସୁନ୍ଦରତା ଓ ସରସତା ଥାଏ । ଯେତେ-ବେଳେ କଥାଦ୍ୱାରା ତାହା ପ୍ରକାଶିତ ହୋଇଯାଏ, ସେତେବେଳେ ସେହି ସୁନ୍ଦରତା ଓ ସରସତା ସ୍ୱଳ୍ପ ଯାଇଥାଏ । ପ୍ରେମ କେଶ୍ୟ କହିବାର ବସ୍ତୁ ନୁହେଁ । ଏହା ହେଉଛି ଅନୁଭବର ବସ୍ତୁ । ପ୍ରେମ ବୋଲି ଯେଉଁ ବସ୍ତୁଟି ତାହାକୁ କଥାରେ ବୁଝାଇପାରିବ ନାହିଁ । ପ୍ରେମ ତ ହେଉଛି ଗୋଟିଏ ଖୁବ୍ ବଡ଼ ବସ୍ତୁ । କାହାକୁ ତା'ର ଧନ ସମ୍ପର୍କରେ ପଚାରିଲେ, ସେ ନିଜ ଧନର ପୁରା ଖବର ଜଣାଇବ ନାହିଁ । ସେ ବରଂ କୌଣସି ପ୍ରକାର ପେଟଭରା ମୁଠିଏ ଖାଇବାକୁ ପାଉଛି ବୋଲି କହିଦେବ । ମଣିଷ ଯଦି ନିଜ ତୁଚ୍ଛ ଲୌକିକ ଧନ ବିଷୟରେ କହୁନାହିଁ, ତେବେ ସେ ପ୍ରେମ ବିଷୟରେ କପରି ବା କହିବ ? ମୁଁ ସ୍ୱାଙ୍କୁ ଭଲପାଏ

ବୋଲି ସେ କପଟ ବା କହିବ ? ଲୋକମାନେ ଏ ସମ୍ପର୍କରେ ବାହାରର ଚାଲି-ଚଳନ ଦେଖି କହନ୍ତି ଯାହା ଅନୁମାନ କରି ନେଇଥାନ୍ତି । ତାହାର ଅନୁମାନ କେତେ ସତ ହୋଇଥାଏ ଏବଂ ଆଉ କେତେ ମିଛ ଅନୁମାନ ପଛରେ ପଡ଼ିଯାଇଥାଏ । କାରଣ ଅନୁମାନ ତ ହେଉଛି କେବଳ ଅନୁମାନ । ଯାହା ଅତି ଦାମିକା ଧନ, ତାହା ସମ୍ପର୍କରେ ସମସ୍ତଙ୍କ ଆଗରେ ଲୁହାଯାଇ ନଥାଏ । ତାହାଠାରୁ ଅଳ୍ପ ଦାମର ଜିନିଷଟିଏ ରଖି ସଙ୍କେତରେ ଲୁହାଯାଇଥାଏ, ଯେ ଏହାଠାରୁ ତାହା ହେଉଛି ବେଶି ଦାମିକା । ସେହି ବସ୍ତୁଟି ଯେ କ'ଣ ଏହା ହୋଇଥାଏ, ତାହାର ସଙ୍କେତ ମାତ୍ର । ରାସ-ବିଳାସର ଲୀଳାରେ ସବୁଠାରୁ ପ୍ରଧାନ ହେଉଛନ୍ତି ଶ୍ରୀକୃଷ୍ଣଚନ୍ଦ୍ର । ଶ୍ରୀକୃଷ୍ଣଚନ୍ଦ୍ର ରାସ-ରଚନା କରିଥିଲେ ବୋଲି ସବୁଠି ପ୍ରସିଦ୍ଧି ଅଛି । ପ୍ରସିଦ୍ଧି ତ ହେଉଛି ଶ୍ରୀକୃଷ୍ଣଚନ୍ଦ୍ରଙ୍କର । କିନ୍ତୁ ସେ କ'ଣ ଏକାକୀ ରମଣ କରି ପାରନ୍ତି ? ରାସେଶ୍ୱରୀଙ୍କ ବିନା ରାସ ବା କପରି ହୋଇପାରିବ ? ସେ ଯେତେବେଳେ ବାହାରକୁ ଯାଆନ୍ତି, ସେ ତାହାଙ୍କ ପୁଅ ବୋଲି ଲୋକେ ପଚାରନ୍ତି । ସମସ୍ତେ ତାଙ୍କ ବାପାଙ୍କ ନାଁ ନିଅନ୍ତି । ଯେଉଁଠି ବା ଲେଖାଯିବ, ବାପାଙ୍କ ନାଁ ଲେଖାଯିବ । ବାପାଙ୍କ ନାଁକୁ ଅବଶ୍ୟ ସମସ୍ତେ ଜାଣିଯିବେ । କିନ୍ତୁ ବାପା କ'ଣ ଏକୁଟିଆ ପୁଅ ଜନ୍ମ କରି ପାରନ୍ତି ? ପୁଅ-ଜନ୍ମରେ ବାପା ଓ ମାଆ ଦୁହେଁ ଆବଶ୍ୟକ । ମାଆଙ୍କ ଗୌରବ ବାପାଙ୍କଠାରୁ ବଳି କରି । କିନ୍ତୁ ମାଆଙ୍କ ନାଁ ଗୁପ୍ତ ରହିଥାଏ । କେହି କେହି ତାହା ଜାଣିଥାନ୍ତି; କିନ୍ତୁ ଲେଖିଲାବାଲା ବାପାଙ୍କ ନାଁ ହିଁ ଲେଖିଥାନ୍ତି । ମାଆଙ୍କ ବିଷୟରେ ସମସ୍ତେ ଅନୁମାନ ହିଁ କରିଥାନ୍ତି । -

ସୂତ କହୁଥାନ୍ତି—"ହେ ମୁନିମାନେ ! ଆପଣମାନେ ମତେ ଶ୍ରୀରାଧାଙ୍କ ସମ୍ପର୍କରେ ପ୍ରଶ୍ନ ପଚାରିଛନ୍ତି । ବ୍ୟାସଦେବ ସାରା ଶ୍ରୀମଦ୍‌ଭାଗବତରେ ଶ୍ରୀରାଧାଙ୍କର ନାଁଟି ପରିଷ୍କାର ଭାବରେ କେଉଁଠି ହେଲେ ଲେଖି ନାହାନ୍ତି । ସେ କେବଳ ସଙ୍କେତରେ ହିଁ ସେ କଥା ବର୍ଣ୍ଣନା କରିଛନ୍ତି । ମୋ'ର ଗୁରୁଦେବ ଭଗବାନ ଶୁକଦେବ ମଧ୍ୟ ଶ୍ରୀମତୀ ରାଧିକାଙ୍କ କଥା ସ୍ପଷ୍ଟ ଭାବରେ କହି ନାହାନ୍ତି ।"

ଶୌନକ ପଚାରିଲେ—"ହଁ ସୂତ ମହାଶୟ ! ଏହି ବିଷୟରେ ତ ଆମ ମନରେ ସନ୍ଦେହ ଆସୁଛି ଯେ ଆପଣ ଯାହାଙ୍କୁ ରାସେଶ୍ୱରୀ ବୋଲି କହୁଛନ୍ତି, ଯାହାଙ୍କ ସଙ୍କେତରେ ଶ୍ୟାମସୁନ୍ଦର ନାଚିଥାନ୍ତି, ତାଙ୍କ ନାଁଟି ବ୍ୟାସ କାହିଁକି ପରିଷ୍କାର ଭାବରେ କହିଲେ ନାହିଁ ?"

ସୂତ କହିଲେ—"ମହାରାଜ ! ମୁଁ ଏହି କଥା କେତେଥର କହି ସାରିଛି ଯେ ପ୍ରେମରେ ଯେତେଦୂର ଭାବକୁ ଗୋପନ ରଖା ଯାଇଥାଏ, ଏଥିରେ ରସ ସେତେ ବଢ଼ିଥାଏ । କୌଣସି ଜଣେ ସ୍ତ୍ରୀ' ବୋଲି କହି ବ୍ୟାସଦେବ ସଙ୍କେତ କରି ଦେଲେ । ଆମର ନିଜ ନିଜର କହିବା ଢଙ୍ଗ ଅଲଗା ଅଲଗା ହୋଇଥାଏ । ଖାଲି ତ ଶ୍ରୀରାଧିକା ନୁହନ୍ତି, ବ୍ୟାସ ମହାଶୟ ଲଳିତା, ବିଶାଖା ଆଦି କୌଣସି ସଖୀଙ୍କ ନାଁ ମଧ୍ୟ ନେଲେ

ନାହିଁ । ସେ ସମସ୍ତଙ୍କର ବର୍ଣ୍ଣନା 'କୌଣସି ଜଣେ ସ୍ତ୍ରୀ' ବୋଲି କହି କରିଛନ୍ତି । ପ୍ରିୟା, ପ୍ରେୟସୀ ଆଦି କହି କରି ହିଁ ସେ ଶ୍ରୀରାଧାଙ୍କ ଉଲ୍ଲେଖ କରିଛନ୍ତି ।"

ଶୌନକ କହିଲେ, "ତା'ହେଲେ ଆମେ ପ୍ରିୟା, ପ୍ରେୟସୀ ବୋଲି ରାଧାଦେବୀଙ୍କୁ କାହିଁକି ବା ଗ୍ରହଣ କରିବା ? ପ୍ରେୟସୀ, ପ୍ରିୟା ତ ଯେ କୌଣସି ଗୋପୀ ବି ହୋଇପାରେ ।"

ସୂତ କହିଲେ—"ମହାରାଜ ! ଯେ କୌଣସି ସ୍ତ୍ରୀ କିପରି ବା ହୋଇପାରିବ ? ପଙ୍କଜ ଶବ୍ଦର ଅର୍ଥ ହେଲା ପଙ୍କରୁ ଯେ ଜନ୍ମିଥାଏ । ପଙ୍କରୁ ତ ଶିଉଳି ହୋଇଥାଏ, ଜୋକମାନେ ବି ଜନ୍ମିଥାନ୍ତି । ଏମାନଙ୍କୁ ସମସ୍ତଙ୍କୁ ତ ଆମେ ପଙ୍କଜ କହି ନଥାଉଁ । ଯାହା ଯାହା ଉଦ୍ଦେଶ୍ୟରେ ବ୍ୟବହୃତ ହେବ, ତାହାଦ୍ୱାରା ତାହାର ଅର୍ଥ ବୋଧ ହେବ । ଶ୍ରୀରାଧିକୋପନିଷଦରେ ରାଧିକାଙ୍କର ସର୍ବପ୍ରଧାନ ସତେଇଶଟି ନାଁ ବିଷୟରେ କୁହାଯାଇଛି । ତହିଁରେ ତାଙ୍କର ଗୋଟିଏ ନାଁ ଗୋପୀ ବୋଲି ବି ଅଛି । * ଏହାଛଡ଼ା 'ରାଧା ଦିବ୍ୟ ସହସ୍ର ନାମ'ରେ ପ୍ରେୟସୀ, ପ୍ରେମକାମିନୀ, ଏହି ନାଁମାନ ମଧ୍ୟ ଶ୍ରୀ ରାଧାଙ୍କର ଅଛି । † ଏହି ନାଁ ମାନଙ୍କର ଉଲ୍ଲେଖ ହିଁ ତ ଶ୍ରୀମଦ୍‌ଭାଗବତରେ ଅଛି ।

ଏହା ଛଡ଼ା ଭଗବାନ ବ୍ୟାସଙ୍କ ରଚିତ ତ କେବଳ ଶ୍ରୀମଦ୍‌ଭାଗବତ ହିଁ ନୁହେଁ । ବାକି ସତରଟି ପୁରାଣ, ଉପପୁରାଣ ଏବଂ ଆହୁରି ଅନେକ ପୁରାଣ ମଧ୍ୟ ସ୍ୱାଙ୍କଦ୍ୱାରା ରଚିତ । ପ୍ରାୟ ଏହି ସମସ୍ତ ପୁରାଣରେ ଶ୍ରୀରାଧାଙ୍କ ଚରିତ ବିସ୍ତୃତ ଭାବରେ ବର୍ଣ୍ଣିତ । ଗର୍ଗ ସଂହିତା, ବ୍ରହ୍ମ ବୈବର୍ତ୍ତ୍ୟ ପୁରାଣ, ପଦ୍ମ ପୁରାଣ, ସ୍କନ୍ଦ ପୁରାଣ ତଥା ଅନ୍ୟାନ୍ୟ ସବୁ ଶ୍ରେଷ୍ଠ ବଡ଼ ପୁରାଣଗୁଡ଼ିକରେ କେଉଁଠି ସଂକ୍ଷେପରେ ତ ଆଉ କେଉଁଠି ବିସ୍ତାରିତ ଭାବରେ ଶ୍ରୀରାଧାଙ୍କ ଚରିତର ବର୍ଣ୍ଣନା କରାଯାଇଛି । ଶ୍ରୀମଦ୍‌ଭାଗବତରେ ସେହି ଧନକୁ ଏ ଭଳି ଭାବରେ ଗୁପ୍ତ ରଖାଯାଇଛି । ସମସ୍ତେ ତ ପଢ଼ିବା କଥାଟି ପଢ଼ିଯିବେ । କିନ୍ତୁ ଏହାର ଗୂଢ଼ ରହସ୍ୟକୁ କେବଳ ଜଣେ ବିରଳ ଜ୍ଞାନୀ ଭଗବଦ୍‌ଭକ୍ତ ହିଁ ବୁଝିପାରିବେ । ଅନ୍ୟ ପୁରାଣଗୁଡ଼ିକରେ ତ ବର୍ଣ୍ଣନା ପରିଷ୍କାର ଭାବରେ କରାଯାଇଛି । କିନ୍ତୁ ଏଠାରେ (ଭାଗବତରେ) ତାହାକୁ ବୀଜ ରୂପରେ ଗୋପନ କରି ରଖାଯାଇଛି । ସେହି ବୀଜଟିକୁ ତ ସମସ୍ତେ ପଢ଼ିଥାନ୍ତି । କିନ୍ତୁ ତାହାର ରହସ୍ୟ ବୁଝି ନପାରି ସେମାନେ ସେହି ସୁଖରୁ ବଞ୍ଚିତ ହୋଇ ରହିଥାନ୍ତି । କେହି କେହି ଉପାସକ ଅଛନ୍ତି ଯେ ହେଉଛନ୍ତି ଅନନ୍ୟ । ସେ ଯଦି ସେମାନଙ୍କୁ ଏହା ବୁଝାଇ ଦିଅନ୍ତି, ତେବେ ସେମାନେ ତାହାର ରସଟି ଚାଖି ପାରିଥାନ୍ତି ।"

---

* ବୃଷଭାନୁସୁତା ଗୋପୀ ମୂଳ ପ୍ରକୃତିରୀଶ୍ୱରୀ ।
ଗାନ୍ଧର୍ବା ରାଧିକା ରମ୍ଭା ରୁକ୍ମିଣୀ ପରମେଶ୍ୱରୀ ॥ (ରାଧିକୋପନିଷଦ)

† ପ୍ରେମକଳା ପରା ଭଦ୍ରା ପ୍ରେୟସୀ ପ୍ରେମକାମିନୀ ।
ପ୍ରଭାବତୀ ଚ ପ୍ରେମାଙ୍ଗୀ ପରା ଚ ପରଦେବତା ॥ (ଶ୍ରୀରାଧା ଦିବ୍ୟ ସହସ୍ର ନାମ ସ୍ତୋତ୍ର)

ଶୌନକ ପଚାରିଲେ—"ସୂତ ମହାଶୟ ! ଗୁପ୍ତ ବୀଜଟି କ'ଣ ? ଏହି ବିଷୟଟିକୁ ଭଲଭାବରେ ଆପଣ ବୁଝାଇ ଦିଅନ୍ତୁ ।"

ସୂତ କହିଲେ—"ମହାରାଜ ! ଏହି ଯେଉଁ ପୁରାଣମାନେ ଅଛନ୍ତି, ସେମାନଙ୍କର ଏଠି ତିନୋଟି ବହି ହେଉଛି ପ୍ରଧାନ । ଗୋଟିଏ ହେଲା ରୋକଡ଼ ବହି, ଗୋଟିଏ ଖାତା ବହି ଏବଂ ଆଉ ଗୋଟିଏ ବୀଜ ବହି । ରୋକଡ଼ ବହିରେ ଜମାଖର୍ଚ୍ଚ ଖର୍ଚ୍ଚର ହିସାବ ଲେଖା ଯାଇଥାଏ । ଯାହା ନାଁରେ କେତେଟଙ୍କା ବା କେତେ ଆସିଲା ତାହା ଖାତା ବହିରେ ଅଲଗା ଅଲଗା ଖାତା କରି ଲେଖାଯାଇଥାଏ । ଯାହାର ଆୟ-ବ୍ୟୟର ହିସାବ ଦେଖିବା କଥା, ସମୁଦାୟ ରୋକଡ଼ ବହିକୁ ଓଲଟାଇବା ତା'ର ଦରକାର ନାହିଁ । ଖାତା ବହିରେ ତା'ର ଖାତା କାଢ଼ି ସେ ଦେଖି ନେଇଥାଏ । କିନ୍ତୁ ବୀଜ ବହିଟିକୁ ସେହି ଲୋକ ବୁଝି ପାରିବ ଯେ ନିଜେ ଆୟ-ବ୍ୟୟ କରିଛି ଏବଂ ଯେ ସେହି ବହିର ମରମ କଥାଟି ଜାଣିଛି । ନ ଜାଣିବା ଲୋକ ଆଗରେ ବୀଜ ବହିଟିକୁ ରଖିଦେଲେ, ସେ କିଛି ହିଁ ବୁଝିପାରିବ ନାହିଁ । ଏହି ବିଷୟଟିକୁ ମୁଁ ଗୋଟିଏ ଉଦାହରଣ ଦେଇ ପରିଷ୍କାର କରି ଦେଉଛି ।

କୌଣସି ଜଣେ ବଡ଼ କୋଟିପତି ଧନୀଲୋକ ଥିଲେ । ସେ ଥିଲେ ଭଗବାନଙ୍କର ଭକ୍ତ । ସେ ଦଶ-କୋଡ଼ିଏ ଲକ୍ଷ ଟଙ୍କାର ସୁନା ମୋହର ଗୋଟିଏ ସୁନା କଳସରେ ପୂରାଇ ତାହାକୁ ମାଟିତଳେ ପୋତି ଦେଇଥିଲେ । ସେ ତମ୍ବା ପଟାରେ ତାହାର ବୀଜ ସଙ୍କେତଟିଏ ଲେଖାଇ ଦେଇ ଆଖି ବୁଜିବା ସମୟରେ ପୁଅ-ନାତିମାନଙ୍କୁ କହିଗଲେ, "ମୁଁ କିଛି ଧନ ଭୂଇଁତଳେ ପୋତିଦେଇଛି । ଏହା ହେଉଛି ତାହାର ବୀଜ ସଙ୍କେତ । ଯେତେବେଳେ ତୁମ୍ଭମାନଙ୍କର ଧନର ଖୁବ୍ ଆବଶ୍ୟକତା ପଡ଼ିବ ଏବଂ ଭଗବାନଙ୍କର ପୂଜା ଭଲଭାବରେ ହୋଇପାରୁ ନଥିବ, ସେତେବେଳେ ତୁମ୍ଭେମାନେ ତାହାକୁ ଖୋଳିବ ।" ଏହା କହି ଧନୀଲୋକ ଜଣକ ପରଲୋକକୁ ଚାଲିଗଲେ । ତାଙ୍କ ପୁଅ ଖୁବ୍ ଧନୀ ଥିଲେ । ତେଣୁ ସେ ସେହି ବୀଜ-ସଙ୍କେତପତ୍ର ଜମା ଦୃଷ୍ଟି ଦେଲେ ନାହିଁ । ସେ ଜାଣିଥିଲେ, ଧନ ମନ୍ଦିର ଭିତରେ କେଉଁଠି ପୋତା ହୋଇଥିବ । କାଳକ୍ରମେ ସେହି ଲୋକମାନେ ଗରିବ ହୋଇଗଲେ । ଏବେ ଭଗବାନଙ୍କର ଯେଉଁ ମନ୍ଦିରଟି ଥିଲା ସେଠି ତାଙ୍କର ପୂଜାବିଧି ଅନୁସାରେ ହୋଇପାରିଲା ନାହିଁ । ସେତେବେଳେ ସେହି ବୀଜ ସଙ୍କେତ କଥା ସେମାନଙ୍କର ମନେ ପଡ଼ିଲା । ତମ୍ବା ପଟାରେ ଲେଖା ହୋଇଥିବା ସେହି ବୀଜ ସଂକେତକୁ ସେମାନେ ବାହାର କଲେ । ସେଥିରେ ଲେଖାଥିଲା, 'ଚାରିଟି ସୁନାର କଳସ, ମନ୍ଦିରର ଚୂଳ, ରାମନବମୀ ଠିକ୍ ମଧ୍ୟାହ୍ନ ସମୟ ଦିନ ବାରଟା । ବୀଜ ସଂକେତ ସେମାନେ ତାହା ପଢ଼ିଲେ ଏବଂ ମନ୍ଦିର-ଚୂଳର ଏଠୁ ସେଠୁ ଇଟା ବାହାର କରାଇ ଖୋଜା-ଖୋଜି କରାଇଲେ । ସୁନାର କଳସ ଚାରୋଟି କେଉଁଠି ହେଲେ ମିଳିଲା ନାହିଁ । ସେମାନେ ମନ୍ଦିରକୁ ଖୋଳାଇଲେ । କିନ୍ତୁ କେଉଁଠି ହେଲେ କିଛି ମିଳିଲା ନାହିଁ । ସେମାନେ

ବଡ଼ ନିରାଶ ହୋଇଗଲେ । ଗାଁର ଲୋକମାନେ ସମସ୍ତେ ତାହାକୁ ପଢ଼ିଲେ । କିନ୍ତୁ କାହାର ମୁଣ୍ଡରେ କିଛି ବୁଝି ପଶିଲା ନାହିଁ । ଧର୍ମ ଲୋକଙ୍କ ପୁଅ-ନାତିମାନେ ନିରାଶ ହୋଇଗଲେ । ସେମାନଙ୍କର ଏହି କଥାଟି ଉପରେ ଅବଶ୍ୟ ବିଶ୍ୱାସ ଥିଲା ଯେ ସେମାନଙ୍କର ବାପା କୌଣସି କେଉଁଠି ନିଶ୍ଚୟ ଧନ ପୋତି କରି ରଖିଛନ୍ତି । ତାହାର ସାଙ୍କେତିକ ମଧ୍ୟ ଅଛି । କିନ୍ତୁ ତାହା ଏଭଳି ରହସ୍ୟମୟ ଯେ ସେମାନେ ତାହା ବୁଝିପାରୁ ନାହାନ୍ତି । ସେମାନେ ବିଚରା ଦୁଃଖରେ ଦିନ କଟାଇବାକୁ ଲାଗିଲେ ।

ସଂଯୋଗବଶତଃ କୌଣସି ଜଣେ ମହାତ୍ମା ସେଠାକୁ ଦିନେ ଆସିଲେ । ମନ୍ଦିରର ଏଭଳି ଖରାପ ଅବସ୍ଥା ଦେଖି ସେ ପଚାରିଲେ, 'ଭାଇ ! ଏହି କାହାର ମନ୍ଦିର ?'

ଲୋକମାନେ କହିଲେ, 'ଏହି ଅମୁକ ଧର୍ମଲୋକଙ୍କ । ତାଙ୍କ ବଂଶର ଲୋକମାନେ ଏବେ ଗରିବ ହୋଇ ଯାଇଛନ୍ତି । ସେମାନେ ପୂଜାର ବ୍ୟବସ୍ଥା କରିବାରେ ଅସମର୍ଥ ହୋଇ ଉଠିଛନ୍ତି ।'

ମହାତ୍ମା ଜଣକ ଧର୍ମଲୋକଙ୍କ ପୁଅ-ନାତିମାନଙ୍କୁ ଡକାଇ ପଚାରିଲେ, 'ଭାଇ ! ତୁମ୍ଭେମାନେ ଭଗବାନଙ୍କର ପୂଜା ଠିକ୍ ଭାବରେ କରୁନାହଁ କାହିଁକି ?'

ସେମାନେ କହିଲେ, 'ମହାରାଜ ! ଆମେ କ'ଣ ବା କହିବୁ ? ଆମ ପେଟକୁ ପୂରୁ ନାହିଁ । ଆମେ ସୁନାକୁ ଉଠାଇଲେ ତାହା ମାଟି ହୋଇଯାଉଛି । ଏହା କାଳର କରାମତି ! ଆମ ପୂର୍ବଜ କିଛି ଧନ ପୋତି ଦେଇ ଯାଇଥିଲେ । ତାହାର ସାଙ୍କେତିକଟି ଆମ ପାଖରେ ଅଛି । କିନ୍ତୁ ସେହି ଧନ କେଉଁଠି ଅଛି, ଆମେ ତାହାର ସନ୍ଧାନ ପାଇପାରୁ ନାହୁଁ ।'

ମହାତ୍ମା କହିଲେ, 'ଅଚ୍ଛା, ସେହି ସାଙ୍କେତିକଟିକୁ ଏଠାକୁ ଆଣ ତ ।'

ମହାତ୍ମାଙ୍କ କହିବା ଅନୁସାରେ ସେମାନେ ସାଙ୍କେତିକଟିକୁ ସେମାନେ ଘରୁ ନେଇ ଆସିଲେ । ମହାତ୍ମା ତାହାକୁ ପଢ଼ିଲେ ଏବଂ ପଢ଼ିକରି ସବୁ ରହସ୍ୟ ବୁଝିଗଲେ । ସେ କହିଲେ, 'ଯଦି ତୁମ୍ଭେମାନେ ଏହି ଧନର ଚାରିଭାଗରୁ ଭାଗେ ଭଗବାନଙ୍କ ସେବାରେ ଲଗାଇବା ପାଇଁ କଥା ଦେବ, ତା'ହେଲେ ମୁଁ ତୁମମାନଙ୍କୁ ଧନ କଥା ବତାଇ ଦେବି ।'

ସେମାନଙ୍କ ମଧ୍ୟରୁ ସବା ବଡ଼ ଜଣକ କହିଲା, 'ମହାରାଜ ! ଚାରି ଭାଗରୁ ଭାଗେ କାହିଁକି ? ସବୁ ଧନତକ ଭଗବାନଙ୍କ ସେବାରେ ହିଁ ଲାଗୁ । ମାଟିତଳେ ପୋତା ହୋଇଥିବାର ଭଲ ଉଦ୍ଦେଶ୍ୟଟି ହେଲା ତାହା ଭଗବାନଙ୍କ ସେବାରେ ଲାଗିବ । ଆମ୍ଭେମାନେ ତ ନିଜ ପ୍ରାରବ୍ଧ ଭୋଗକୁ ହିଁ ଉପଭୋଗ କରିବୁ । ଆମ୍ଭମାନଙ୍କ ପ୍ରାରବ୍ଧରେ ଯଦି ଧନ ଥାଆନ୍ତା, ତା'ହେଲେ ଏତେ ଧନ କିପରି ବା ନଷ୍ଟ ହୋଇ ଯାଉଥାନ୍ତା ?'

ଗାଁର ପଞ୍ଚମାନେ ସମସ୍ତେ ସେଠି ଏକଜୁଟ ହୋଇଥିଲେ । ସେମାନେ କଥାଟି ଏହିଭଳି ବୁଝାଇଲେ । ଯାହା ଧନ ମିଳିବ, ସେଥିରୁ ଅଧେ ଧନୀବାଲକଙ୍କ ପରିବାରର ଲୋକମାନେ ନେଇ ବେପାର କରିବେ ଏବଂ ଆଉ ଅଧକ ସେମାନେ ଭଗବାନଙ୍କ ସେବାରେ ଲଗାଇବେ । ଏହା ଠିକଣା ହେବାପରେ ମହାତ୍ମା କହିଲେ, 'ଆମେ ଏବେ ବତାଇବୁ ନାହିଁ । ତୁମ୍ଭେମାନେ ସମସ୍ତେ ମିଶି ଛଅମାସ ଧରି ଭଗବାନଙ୍କର ପ୍ରେମପୂର୍ବକ ଆରାଧନା କର । ଛଅମାସ ପରେ ଆମେ ଆସିବୁ ଏବଂ ସେତେବେଳେ ବତାଇବୁ ।'

ମହାତ୍ମା ଥିଲେ ସୌମ୍ୟ ପୁରୁଷ । ସେ ତେଜସ୍ୱୀ ଓ ସତ୍ୟବାଦୀ ବୋଲି ଜଣା ପଡୁଥିଲେ । ସମସ୍ତେ ତାଙ୍କୁ ବିଶ୍ୱାସ କଲେ । ସେ ସେଠୁ ଚାଲିଗଲେ । ଲୋକମାନେ ସମସ୍ତେ ଖୁବ୍ ଉତ୍ସୁକ ହୋଇ ଛଅମାସ କାଳ ତାଙ୍କୁ ପ୍ରତୀକ୍ଷା କରିବାକୁ ଲାଗିଲେ । ମହାତ୍ମା ଯେତେବେଳେ ଆସିଥିଲେ ତାହା ଥିଲା କାର୍ତ୍ତିକମାସ । ଛଅ ମାସପରେ ଚୈତ୍ରମାସରେ ସେ ପୁଣି ଆସି ପହଞ୍ଚିଲେ । କଥାଟି ବହୁତ ଦୂର ପର୍ଯ୍ୟନ୍ତ ପ୍ରଘଟ ହୋଇଯାଇଥିଲା । ମହାତ୍ମାଙ୍କ ଦର୍ଶନଲାଗି ଏବଂ ଧନ ସମ୍ପର୍କରେ ଥିବା କୌତୁହଳ କାରଣରୁ ସେଠି ବହୁତ ଲୋକ ଆସି ଜମା ହୋଇ ଯାଇଥିଲେ । ମନ୍ଦିରରେ ରାମନବମୀର ଉତ୍ସବ ଖୁବ୍ ଆଡ଼ମ୍ବର ସହିତ ପାଳିତ ହେଲା । ଘଣ୍ଟାରେ ଯେତେବେଳେ ବାର ବାଜିଲା, ସେତେବେଳେ ମହାତ୍ମା ବାହାରକୁ ଆସିଲେ । ଯେଉଁଠି ମନ୍ଦିରର ଗୁମ୍ବୁଜଟିର ଛାଇ ଆସି ପହଞ୍ଚୁଥିଲା ସେଠାରେ ସେ ମନ-ଧ୍ୟାନ ଦେଇ ଦେଖିଲେ ଯେ ଗୋଟିଏ ସ୍ୱାଭାବିକ ଚକ୍ର ତିଆରି ହୋଇଛି । ମହାତ୍ମା କହିଲେ, 'ଏହିଠାରେ ଖୋଳ ।' ସେଠାରେ ତୁରନ୍ତ ଖୋଳାଗଲା । ସୁନା ମୋହରରେ ଭରପୂର ଥିବା ସୁନାର କଳସ ସାତୋଟି ସେଠୁ ବାହାରିଲା । ସମସ୍ତଙ୍କର ଆନନ୍ଦର ଆଉ ସୀମା ରହିଲା ନାହିଁ । ସମସ୍ତେ ମହାତ୍ମାଙ୍କୁ ସିଦ୍ଧ ଅନ୍ତର୍ଯାମୀ ପୁରୁଷ ବୋଲି କହିବାକୁ ଲାଗିଲେ ।

ମହାତ୍ମା କହିଲେ, 'ମୁଁ କୌଣସି ସିଦ୍ଧ ପୁରୁଷ ନୁହେଁ କିମ୍ବା ଅନ୍ତର୍ଯାମୀ ନୁହେଁ । ମୁଁ କିଛି ନୂଆ କଥା କହି ନାହିଁ । ଏହି ଯେଉଁ ଶିଳା ଫଳକଟି ଅଛି, ବିଷୟ ଅନୁସାରେ ମୁଁ ତାହାର ବ୍ୟାଖ୍ୟା କରି ଦେଇଛି । ଏଥିରେ ଲେଖାଥିଲା, ସାତଟି ସୁନା କଳସ ମନ୍ଦିରର ଗୁମ୍ବୁଜ, ରାମନବମୀ, ଠିକ୍ ଦିନ ଦ୍ୱିପହରର ବାରଟା ସମୟ । ସାତଟି ସୁନାର କଳସକୁ ପରିଷ୍କାର ଜଣାପଡୁଛି ଯେ ସାତଟି ସୁନାର କଳସରେ ଧନ ଅଛି । ମନ୍ଦିରର ଗୁମ୍ବୁଜର ଅର୍ଥକୁ ଧରିଲେ ଜଣାଯିବ ଯେ ମନ୍ଦିରର ଗୁମ୍ବୁଜରେ ତ ସାତଗୋଟି କଳସ ଦେଖାଯାଉ ନାହିଁ । ଏହାର ଅର୍ଥ ନିଶ୍ଚୟ ହେଉଛି, ମନ୍ଦିରର ଗୁମ୍ବୁଜର ଛାଇ ଯେଉଁଠି ପହଞ୍ଚେ ସେହି ଜାଗା । ରାମନବମୀ ଠିକ୍ ଦିନ ଦ୍ୱିପହର ବାରଟା ବାଜିବା ସମୟରେ ଯଦି ଧନ ପୋତା ହୋଇଥାନ୍ତା, ତା'ହେଲେ ସେଥିରେ ଅନ୍ଧାରର ଆଶଙ୍କା ଅବଶ୍ୟ ରହିଥାନ୍ତା । କେବଳ ରାମନବମୀ ଓ ଦିନ ଦ୍ୱିପହର ଲେଖିବାର ଉଦ୍ଦେଶ୍ୟ ହେଲା, ରାମନବମୀର ଦିନ ଦ୍ୱିପହରରେ

ମନ୍ଦିରର କୁରୁଜର ଛାଇ ଯେଉଁଠି ପଡୁଅଛି ଧନ ସେଇଠି ରହିଛି । ମୁଁ ଦେଖିଲି ଯେ ଦିନ ଦିପହରେ ଯେଉଁଠି ଛାଇ ପଡୁଅଛି ସେଠି ଖୁଣ୍ଡିକରି ତାହା ମିଳିଗଲା । ଧନ ତ ତୁମ୍ଭମାନଙ୍କ ପୂର୍ବଜ ହିଁ ପୋତିଛନ୍ତି । ବୀଜ ସଂକେତରେ ସେହି ବିଷୟ ଲେଖା ହୋଇଛି ସତ; କିନ୍ତୁ ତାହା ଗୁପ୍ତ ଭାବରେ ଲେଖା ହୋଇଛି । ମୁଁ ଗୁରୁ-କୃପା ଫଳରେ ତାହାକୁ ବୁଝି ତୁମ୍ଭମାନଙ୍କୁ ବତାଇ ଦେଲି । ଏଥିରେ ତ ମୁଁ କିଛି ନୂଆ କଥା କହି ନାହିଁ ।' ଏହା କହି ମହନ୍ତ ଚାଲିଗଲେ । ଧର୍ମଲୋକଙ୍କ ପୁଅମାନେ ଅଧା ଧନ ଭଗବାନଙ୍କ ସେବାରେ ଖର୍ଚ୍ଚ କଲେ ଏବଂ ବାକି ଅର୍ଦ୍ଧକରେ ବେପାର କଲେ । ସେମାନେ ପୂର୍ବ ଭଳି ପୁଣି ଧନୀ ହୋଇ ଉଠିଲେ ।''

ସୂତ କହୁଛନ୍ତି—''ହେ ମୁନିମାନେ ! ସମସ୍ତ ବେଦ, ପୁରାଣ ହେଉଛି ବ୍ୟାସଙ୍କର ଧନ । ସେଥିପାଇଁ ସାରା ଜଗତକୁ ବ୍ୟାସଙ୍କ ଅଇଁଠା ବୋଲି କୁହାଯାଇଥାଏ । ଶ୍ରୀମଦ୍‌ଭାଗବତ ହେଉଛି ସମସ୍ତ ଶାସ୍ତ୍ରର ବୀଜ ସଂକେତ । ଯେ ସକଳ ପୁରାଣ ଓ ଶାସ୍ତ୍ର ସଂପର୍କରେ ଜ୍ଞାନ ପାଇ ନାହିଁ, ଅଥବା ଏଭଳି ଜ୍ଞାନୀମାନଙ୍କର ସତ୍ସଙ୍ଗ କରିନାହିଁ, ସେ ଏହାର ଯଥାର୍ଥ ରହସ୍ୟଟିକୁ ବୁଝିପାରିବ ନାହିଁ । ଏଥିରେ ଅନେକ କଥା ତ ଖୁବ୍ ଗୁପ୍ତ ଭାବରେ କୁହାଯାଇଛି । ସେଥି ମଧ୍ୟରୁ ଗୋଟିଏ ହେଉଛି ଶ୍ରୀରାଧା-ତତ୍ତ୍ୱ । ଏଭଳି ମଧ୍ୟ ଯେଉଁଠି ଶ୍ରୀରାଧାଙ୍କର ନାମ ସ୍ପଷ୍ଟ ଭାବରେ ଉଲ୍ଲେଖ କରାନଯାଇ ସମସ୍ତ ରହସ୍ୟମୟ ଲୀଳାର ସଂକେତ କରି ଦିଆଯାଇଛି ।''

ଏହା ଉପରେ ମନ୍ତବ୍ୟ ଦେଇ ଶୌନକ କହିଲେ—''ସୂତ ମହାଶୟ ! ଆପଣଙ୍କ ବାପା ହେଉଛନ୍ତି ଶ୍ରୀଲୋମହର୍ଷଣ ମହାଶୟ ! ବ୍ୟାସଦେବଙ୍କ ଦୟାରୁ ସେ ସବୁ ପୁରାଣ ପଢ଼ିଛନ୍ତି । ପୈତୃକ ଧନ ଭଳି ସେହି ସମସ୍ତ ଜ୍ଞାନ ଋଷିମାନଙ୍କର ଓ ସଙ୍କର୍ଷଣାବତାର ନେଇଥିବା ଭଗବାନ ବଳଦେବଙ୍କ ଦୟାରୁ ଆପଣଙ୍କୁ ମିଳିଛି । ଦୟା କରି ଆପଣ ଅନ୍ୟ ପୁରାଣଗୁଡ଼ିକର ଆଶ୍ରୟ ନେଇ ଆମକୁ ଶ୍ରୀରାଧା-ତତ୍ତ୍ୱ ବିଷୟରେ ଟିକିନିଖି ଭାବରେ ବୁଝାଇ ଦିଅନ୍ତୁ ।''

ଏହା ଶୁଣି ସୂତ ହସି ହସି କହିଲେ—''ଅହେ ମହାରାଜ ! ଶ୍ରୀରାଧାଙ୍କ ତତ୍ତ୍ୱକୁ ଟିକିନିଖି ଭାବରେ କିଏ ବା ବର୍ଣ୍ଣନା କରିପାରିବ ? ଶ୍ରୀକୃଷ୍ଣଙ୍କ ଚରଣକୁ ପାଇ ହୋଇ ହେବ । ଶ୍ରୀକୃଷ୍ଣଙ୍କୁ ବି ପାଇହେବ । କିନ୍ତୁ ଶ୍ରୀରାଧାଙ୍କ ଚରଣକୁ ନିଜେ ଶ୍ରୀକୃଷ୍ଣ ବି ପାରି ହୋଇପାରିବେ ନାହିଁ । ସମସ୍ତ ବେଦ, ପୁରାଣରେ ଶ୍ରୀରାଧାଙ୍କ ତତ୍ତ୍ୱର ବର୍ଣ୍ଣନା ଅଛି । ବ୍ରଜର ରସିକ ଭକ୍ତମାନେ ଶ୍ରୀରାଧାକୃଷ୍ଣ-କେଳି ଓ ନିକୁଞ୍ଜ-ବିହାର ସମ୍ପର୍କରେ ଏତେ ବେଶି ଲେଖିଛନ୍ତି ଯେ ଅନ୍ୟ କୌଣସି ବିଷୟ ଉପରେ ଏତେ ପରିମାଣର ସାହିତ୍ୟ ମିଳିବା ସମ୍ଭବପର ନୁହେଁ । ଏହି ରହସ୍ୟମୟ ଲୀଳାଗୁଡ଼ିକୁ ଏତେ ସରସ ଭାବରେ ବର୍ଣ୍ଣନା କରାଯାଇଛି ଯେ ସମସ୍ତେ ବି ତାହାକୁ ଶୁଣିବାର ଅଧିକାରୀ ହୋଇ ନଥାନ୍ତି । ମୋ'ର

ଯେତିକି ବୁଦ୍ଧି ଏବଂ ଯେତିକି ଶକ୍ତି, ସେହି ଅନୁସାରେ ମୁଁ ପୁରାଣଗୁଡ଼ିକରୁ ଓ ସନ୍ଥମାନଙ୍କ ବାଣୀରୁ ଅତି ସଂକ୍ଷେପରେ ସାର ସଂଗ୍ରହ କରି କହୁଛି । ଆପଣମାନେ ସମସ୍ତେ ମନଦେଇ ତାହା ଶୁଣନ୍ତୁ ।

"ହେ ମୁନିମାନେ ! ରମଣ ଏକାକୀ ହୋଇପାରେ ନାହିଁ । ଆଉ ମଧ୍ୟ ଶୀଳ-ସ୍ୱଭାବ ସମାନ ନଥିବା ଲୋକଙ୍କ ମଧ୍ୟରେ ତାହା ହୁଏ ନାହିଁ । ତେଣୁ ଭଗବାନଙ୍କର ଯେତେବେଳେ ଲୀଳା କରିବାପାଇଁ ଇଚ୍ଛା ହୁଏ, ସେତେବେଳେ ସେ ଏକରୁ ଦୁଇ ହୋଇଯା'ନ୍ତି । କାରଣ ଶକ୍ତିର ବିନା ସାହାଯ୍ୟରେ କେବେହେଲେ କୌଣସି କାମ ହୋଇପାରେ ନାହିଁ । ଶକ୍ତିହୀନର ହିଁ ନାଁ ହେଉଛି ଶବ । ଶକ୍ତିଯୁକ୍ତ ହୋଇ ହିଁ ଶିବ ଶିବ ହୋଇଥାନ୍ତି । ଯେ ଯେଉଁପରି ହୋଇଥାଏ, ତା'ର ଶକ୍ତି ବି ଠିକ୍ ସେହିପରି ହୋଇଥାଏ । ଯଦିଓ ହାତୀ ଓ ପିମ୍ପୁଡ଼ି ମଧ୍ୟରେ ଏକ ହିଁ ଜୀବାତ୍ମା ରହିଛନ୍ତି, ତଥାପି ଦେହକୁ ଚାହିଁ ହାତୀର ଶକ୍ତି ପିମ୍ପୁଡ଼ିର ଶକ୍ତିଠାରୁ ଅଲଗା ହୋଇଥାଏ । ଭଗବାନଙ୍କ ଶକ୍ତିର ନାମ ହିଁ ହେଉଛି ରାଧା । ତାଙ୍କୁ ରାଧା କୁହ, ଦୁର୍ଗା କୁହ, ଲକ୍ଷ୍ମୀ କୁହ, ସରସ୍ୱତୀ କୁହ, ପାର୍ବତୀ କୁହ, ସବୁ ହେଲା ଗୋଟିଏ କଥା । ଭିନ୍ନ ଭିନ୍ନ ରୂପରେ ଭଗବାନଙ୍କ ଭିନ୍ନ ଭିନ୍ନ ଶକ୍ତି ରହନ୍ତି । କେହି ଏହାକୁ ପ୍ରକୃତି ନାଁରେ ଡାକିଲାବେଳେ ଆଉ କେହି ମାୟା ବୋଲି କହିଥାଏ । ଭିନ୍ନ ଭିନ୍ନ ଲୀଳାଗୁଡ଼ିକରେ ଏହାର ଭିନ୍ନ ଭିନ୍ନ ନାମ-ରୂପ ହୋଇଯାଇଥାଏ । ସାଧାରଣ ଭାବରେ ଯେ ଯେପରି ଶକ୍ତିମାନ ହୋଇଥାଏ, ତା'ର ଶକ୍ତି ବି ସେହିପରି ହୋଇଥାଏ । ଭଗବାନଙ୍କ ରୂପ ଜଗତକୁ ମୋହି ଦେଇଥାଏ । ତେଣୁ ତାଙ୍କ ଶକ୍ତି ବି ହେଉଛି ଜଗନ୍ମୋହିନୀ । ଭଗବାନ ରାସେଶ୍ୱର ହେଲେ ତାଙ୍କ ଶକ୍ତି ହେଉଛି ରାସେଶ୍ୱରୀ । ଭଗବାନ ଯେଉଁ ଲୀଳା କରିଥାନ୍ତି, ସେ ବିଷୟରେ କେହି ଚିନ୍ତା କରିପାରିବ ନାହିଁ । ତେଣୁ ଶ୍ରୀରାଧାଙ୍କ ମହିମା ବିଷୟରେ ବି କେହି ଚିନ୍ତା କରିପାରିବ ନାହିଁ । ଭଗବାନ ହେଉଛନ୍ତି ଆନନ୍ଦ-ସ୍ୱରୂପ । ତେଣୁ ସେ (ରାଧା) ବି ଆନନ୍ଦର ବର୍ଷା କରାଇଥାନ୍ତି । ଏହିପରି ଭାବରେ ସଂସାରରେ ଯେତେ ଯେତେ ଲୀଳା ଅଛି, ସବୁ ହେଉଛି ଶ୍ରୀରାଧାଙ୍କର ହିଁ ଲୀଳାବିଳାସ । ସେ ଶ୍ରୀକୃଷ୍ଣଙ୍କଠାରୁ ଭିନ୍ନ ନୁହନ୍ତି; କେବଳ ରସ ଚାଖିବା ଲାଗି ଦୁଇ ହୋଇ ପୁଣି ଏକାଠି ହୋଇଯାନ୍ତି । ଏହା ହୁଏତ ହୋଇପାରେ ଯେ ଗୋଲୋକରେ ଯେତେବେଳେ ଶ୍ରୀକୃଷ୍ଣଙ୍କର ରାସ କରିବାଲାଗି ଇଚ୍ଛା ହେଲା, ସେହି ଇଚ୍ଛା ସାକାର ହୋଇ କିଶୋରୀ ରୂପରେ ତାଙ୍କ ବାମ ପଟରେ ପ୍ରକଟିତ ହୋଇଗଲା । ରାସରେ ଜନ୍ମ ନେଇ ସେ ନିଜର ଶକ୍ତିମାନଙ୍କ ସେବା ନିମିତ୍ତ ପ୍ରାରମ୍ଭିକ ଅର୍ଘ୍ୟ ଦେବା ଉଦ୍ଦେଶ୍ୟରେ ଦଉଡ଼ା ଦଉଡ଼ି କରିଥାନ୍ତି । ସେଥିପାଇଁ ତାଙ୍କ ନାଁ ବୋଧହୁଏ ହୋଇଛି ରାଧା । ଅଥବା ଶ୍ରୀକୃଷ୍ଣ ଯାଙ୍କୁ ଆରାଧନା କରନ୍ତି ଏବଂ ଯେ ବି ଶ୍ରୀକୃଷ୍ଣଙ୍କୁ ଆରାଧନା କରନ୍ତି । ଏହି ଯୋଗରୁ ହିଁ ଯାଙ୍କୁ ରାଧା ବୋଲି କୁହାଯାଇଥାଏ । ଯାଙ୍କୁ ରାଧା କୁହ, ରାଧିକା କୁହ କିମ୍ବା ରାଧସ କୁହ, ସବୁ ହିଁ ହେଉଛି ଏକା କଥା । ଯାଙ୍କର ପ୍ରକାଶ

ରାସବିଳାସ ଲାଗି ହିଁ ହୋଇଛି; ତେଣୁ ସେ ହେଉଛନ୍ତି ରାସେଶ୍ୱରୀ । ସ୍ୱାଙ୍କର ଜନ୍ମ କ୍ରୀଡ଼ାପାଇଁ ହୋଇଥିବାରୁ ସେ ହେଉଛନ୍ତି କ୍ରୀଡ଼ାପ୍ରିୟା । ସେ ନିତିଦିନ ନୂଆ ଲୀଳାମାନ ନିଜ ଶକ୍ତିମାନଙ୍କ ସାଥିରେ କରିଥାନ୍ତି । ପ୍ରଧାନ ଶକ୍ତିମାନଙ୍କର ପ୍ରଧାନ ଶକ୍ତିଦ୍ୱାରା ହିଁ ସମସ୍ତ ଶକ୍ତିଗୁଡ଼ିକର ବିକାଶ ଘଟିଥାଏ । ଶ୍ରୀରାଧାଙ୍କ ଲୋମ-କୂପରୁ ଅଳ୍ପଶକ୍ତିରୁ ହିଁ ଅସଂଖ୍ୟ ଗୋପୀମାନଙ୍କ ଜନ୍ମ । ସେମାନେ ଏହିସବୁ ଲୀଳାରେ ହିଁ ଆସିଥାନ୍ତି ଓ ଚାଲିଯାଇଥାନ୍ତି । କିନ୍ତୁ ବାସ୍ତବରେ ଶକ୍ତି ଓ ପରସ୍ପରଠାରୁ ଅଭିନ୍ନ ଥାଆନ୍ତି, ଶାଶ୍ୱତ ଥାଆନ୍ତି, ନିତ୍ୟ ଥାଆନ୍ତି । ସେମାନଙ୍କର ଜନ୍ମ ନାହିଁ କିମ୍ବା ମୃତ୍ୟୁ ନାହିଁ । ସେମାନଙ୍କର ଉତ୍ପତ୍ତି ନାହିଁ କିମ୍ବା ବିନାଶ ନାହିଁ । ସେମାନଙ୍କର ହ୍ରାସ ନାହିଁ କିମ୍ବା ଉଲ୍ଲାସ ନାହିଁ । ସମସ୍ତେ ଜାଣନ୍ତି ଯେ ବିନ୍ଦୁ ବିନ୍ଦୁ କରି ଜଳକୁ ନେଇ ଶ୍ରେଷ୍ଠ ଶ୍ରେଷ୍ଠ ଜଳଭଣ୍ଡାରମାନ ତିଆରି ହୋଇଥାଏ । ଖାଲ-ଖମା, କୂଅ, ପୋଖରୀ ଓ ନଈ, ସବୁଥିରେ ପାଣିଥାଏ । ସବୁର ପାଣିରେ ଶୋଷ ମେଣ୍ଟିଥାଏ । ସବୁ ପାଣି ହେଉଛି ପ୍ରାଣୀମାନଙ୍କର ଜୀବନ । ସାରା ପାଣିର ମହାଭଣ୍ଡାର ହେଉଛି ସମୁଦ୍ର । ସବୁ ପାଣି ସେହି ସମୁଦ୍ରରୁ ହିଁ ଆସିଥାଏ ଏବଂ ଶେଷରେ କୌଣସି ନା କୌଣସି ବାଟଦେଇ ସେଠାକୁ ଚାଲିଯାଇଥାଏ । ଏହିପରି ଭାବରେ ସଂସାରରେ ଆମପାଇଁ ଏହି ଯେଉଁ ଆନନ୍ଦରସ ଅଥବା ପ୍ରେମ ଦେଖା ଦେଇଥାଏ, ଏହାସବୁ ଶ୍ରୀରାଧାକୃଷ୍ଣ ରୂପୀ ମହାସମୁଦ୍ରର କିଛି କଣା ମାତ୍ର । ସେହି ଯେଉଁ ଦିବ୍ୟ ଆନନ୍ଦ ତାହା ଦିବ୍ୟ ଲୋକରେ ନିରନ୍ତର ଉଚ୍ଛୁଳି ଉଠୁଥାଏ । ତାହାର ଆଦି ନାହିଁ, ଅନ୍ତ ନାହିଁ, ଅବସାନ ନାହିଁ । ଏମିତି ହିଁ ନିରନ୍ତର ତାହାର ଲହରୀ ଉଚ୍ଛୁଳି ଉଠୁଥାଏ ।"

"ଦିବ୍ୟଲୋକରେ ରାସ-ବିଳାସ କରୁଥିବା ସମୟରେ ରାଧାଙ୍କ ମନରେ ପୁଅଟିଏ ଜନ୍ମ କରିବାପାଇଁ ଇଚ୍ଛା ହେଲା । ଆପଣ ହୁଏତ ପଚାରିବେ, 'ଶ୍ରୀରାଧିକା ତ ସମସ୍ତ ଇଚ୍ଛାରେ ପରିପୂର୍ଣ୍ଣ । ତାଙ୍କ ମନରେ ପୁଣି ଇଚ୍ଛା କାହିଁକି ଆସିଲା ?' ଆପଣ କାହିଁକି ଆସିଲା ବୋଲି ପ୍ରଶ୍ନ କରନ୍ତୁ ନାହିଁ । ଖେଳ କେବଳ ଆନନ୍ଦ ଦେବା ଉଦ୍ଦେଶ୍ୟରେ ହିଁ ହୋଇଥାଏ । ଏହାର ଅନ୍ୟ କୌଣସି ଉଦ୍ଦେଶ୍ୟ ନଥାଏ । ଖେଳରେ ତାଙ୍କର ଇଚ୍ଛା ହୋଇଗଲା । ଇଚ୍ଛା ହେବାମାତ୍ରେ ହିଁ ପୁଅଟିଏ ଜନ୍ମ ହେଲା । ପରମା ସୁନ୍ଦରୀଙ୍କ ପୁଅ ବି ହେଲା ପରମ ସୁନ୍ଦର । ଦିନେ ସେ ହାଇ ମାରୁଥିଲା । ତା'ର ପେଟରେ ପଞ୍ଚଭୂତ, ଆକାଶ, ପାତାଳ, ବନ ପର୍ବତ, ବୃକ୍ଷ, ମହତ୍ତ୍ୱ, ଅହଙ୍କାର, ପ୍ରକୃତି, ପୁରୁଷ ଆଦି ସବୁ ଦେଖାଗଲେ । ରାଧା ଥିଲେ ସୁକୁମାରୀ । ତା'ର ମୁହଁରେ ଏଭଳି ଜିନିଷମାନ ଦେଖି ଭାରି ଖରାପ ଲାଗିଲା । ମନେ ମନେ ଭାବିଲେ, 'ପିଲାଟି କେଡ଼େ ବଡ଼ ହୋଇଛି ସତେ ।' ସେ ତାକୁ ନେଇ ନାଳ ପାଣି ଭିତରେ ରଖିଦେଲେ । ସେ ଏକ ବିରାଟ ପୁରୁଷ ହୋଇଗଲା । ତା'ଠାରୁ ସାରା ବ୍ରହ୍ମାଣ୍ଡ ଜନ୍ମ ନେଇଛି । ଶ୍ରୀକୃଷ୍ଣ ରାଧାଙ୍କୁ ଅଭିଶାପ ଦେଇ କହିଲେ, 'ଆଜି ଏଣିକି ତୁମର ପିଲା ହେବନାହିଁ । ତୁମେ ସନ୍ତାନହୀନା ହୋଇ ରହିବ ।

ସେହିଦିନଠାରୁ ରାଧିକାଙ୍କର ନାଁ କୃଶୋଦରୀ ହୋଇଗଲା । ତାଙ୍କ ପେଟ କେବେହେଲେ ବଢ଼େ ନାହିଁ । ଦିନେ ଶ୍ରୀରାଧା ଶ୍ରୀକୃଷ୍ଣଙ୍କୁ ରୁଷି ବସିଲେ ।"

ଶୌନକ ପଚାରିଲେ—"ରୁଷିଲେ କାହିଁକି ?"

ସୂତ କହିଲେ—"ପୁଣି ସେହି କାହିଁକି କାହିଁକି ବୋଲି କଥା କହୁଛନ୍ତି ! ଆହେ ! ରୁଷିବା ବି ଗୋଟିଏ ଲୀଳା । ପ୍ରେମର ଆଉ ରୁଷାରେ ଭାରି ଆନନ୍ଦ ମିଳିଥାଏ । ଶ୍ରୀକୃଷ୍ଣ ତାଙ୍କ ପାଦଧରି ମାନ ଭାଙ୍ଗିବାକୁ ଲାଗିଲେ । କିନ୍ତୁ ସେ ଜମା ମାନିଲେ ନାହିଁ, ସେତେବେଳେ ସୁଦାମ ଗୋପ ରାଧାଙ୍କୁ ବୁଝାଇ କହିଲେ, 'ତୁମେ କାହିଁକି ଏଭଳି ଜିଦ୍ ଧରି ବସୁଛ । ଯାହା ହେବାର ତ ହୋଇଗଲା । ଏବେ କୃଷ୍ଣଙ୍କ କଥାକୁ ମାନିଯାଅ ।' ରାଧା ସୁଦାମଙ୍କୁ ଅଭିଶାପ ଦେଇ କହିଲେ, 'ତୁ ଭାରତ-ଖଣ୍ଡରେ ଯାଇ ଅସୁର ହୋଇ ଜନ୍ମ ନେ ।' ତାହା ବଦଳରେ ସୁଦାମ ବି କହିଲେ, 'ତୁମେ ପୃଥିବୀରେ ଗଉଡ଼ ଝିଅ ହୋଇଯାଅ ।' ସେଇଠୁ ଶ୍ରୀରାଧିକା ଏଠାରେ ବୃଷଭାନୁ ଗଉଡ଼ଙ୍କର ଓ କୀର୍ତ୍ତି ରାଣୀଙ୍କର କନ୍ୟା ଭାବରେ ଜନ୍ମ ନେଲେ ।"

ଶ୍ରୀକୃଷ୍ଣଙ୍କ ଜନ୍ମର ଏକବର୍ଷ ପନ୍ଦର ଦିନ ପୂର୍ବରୁ ଭାଦ୍ର ଶୁକ୍ଳ ଅଷ୍ଟମୀ ତିଥିରେ ଗୋକୁଳ ନିକଟସ୍ଥ ଗୋଟିଏ ଘରେ ବୃଷଭାନୁଙ୍କ ଝିଅଙ୍କର ଜନ୍ମ ହେଲା । ରାଧାଙ୍କ ବିନା ଶ୍ରୀକୃଷ୍ଣ ତ ଅଧା ବି ନୁହନ୍ତି । ଦେବର୍ଷି ନାରଦ ଯେତେବେଳେ ଶ୍ରୀକୃଷ୍ଣ-ଜନ୍ମ ଅବସରରେ ଭଗବାନଙ୍କୁ ଦର୍ଶନ କରିବାପାଇଁ ଆସିଥିଲେ, ସେତେବେଳେ ସେ ମନେ ଭାବିବାକୁ ଲାଗିଲେ, 'ଯେତେବେଳେ ବ୍ରଜରେ ଗୋଲୋକବିହାରୀଙ୍କର ଜନ୍ମ ହୋଇ ଯାଇଛି, ସେତେବେଳେ ତାଙ୍କର ଶକ୍ତି ଗୋଲୋକବିହାରିଣୀ ନିଶ୍ଚୟ ଏଇଠି କେଉଁଠି ଜନ୍ମ ନେଇଥିବେ ।' ସେ ତେଣୁ ବୃଷଭାନୁଙ୍କ ଘରକୁ ଗଲେ ।' ସେଠାରେ ଶ୍ରୀରାଧିକାଙ୍କୁ ଗୋଲୋକବିହାରିଣୀ ବୋଲି ଚିହ୍ନିପାରି ସେ ତାଙ୍କର ସ୍ତୁତି କଲେ । ସେତେବେଳେ ସେ ତାଙ୍କର ନିତ୍ୟ କିଶୋରୀ ରୂପରେ ତାଙ୍କୁ ଦର୍ଶନ ଦେଲେ । ସେ ଚଉଦ ବର୍ଷର ଜଣେ ସୁକୁମାରୀ ଦେବୀ ହୋଇଗଲେ । ତାଙ୍କ ଶୋଭା ଥିଲା ଅଲୌକିକ । ଏଥିରୁ ଏହି କଥା ପ୍ରମାଣିତ ହେଉଛି ଯେ ଏମାନଙ୍କର ଜନ୍ମ ନେବା ଓ ପିଲା-ଖେଳ ଖେଳିବା ହେଉଛି କେବଳ ଲୋକମାନଙ୍କ ଆଗରେ ପରଦା ମାତ୍ର । ଏମାନଙ୍କର କ୍ଷୟ ନାହିଁ କି ବୃଦ୍ଧି ନାହିଁ । ଦୁହେଁ ଚିରଦିନ କିଶୋର ଅବସ୍ଥାରେ ହିଁ ରହିଥାନ୍ତି । ନିରନ୍ତର ରାସ-ବିଳାସରେ ବୁଡ଼ିରହିବା ହେଉଛି ଏମାନଙ୍କର କାମ । ସୃଷ୍ଟି, ସ୍ଥିତି, ତଥା ସଂହାର ଆଦି କାମ ତିନି ଦେବତା କରି ଚାଲିଥାନ୍ତି । ଅସୁର ଆଦିଙ୍କୁ ମାରିବା ବି ହେଉଛି ବିଷ୍ଣୁଙ୍କ କାମ । ଶ୍ରୀକୃଷ୍ଣଙ୍କର ତ ଏକମାତ୍ର କାମ ହେଉଛି ନିଜ ଶକ୍ତି ସହିତ ନିରନ୍ତର କ୍ରୀଡ଼ାରତ ରହିବା । କେବେ କେବେ ସେହି ଦିବ୍ୟଲୋକର ଲୀଳା ଏହି ମର୍ତ୍ତ୍ୟଲୋକରେ ହେବାକୁ ଲାଗିଥାଏ । ସେହି ଲୋକ ଠିକ୍ ଅବିକଳ ଭାବରେ ଏଠାରେ ପ୍ରକଟିତ ହୋଇ-

ଯାଇଥାଏ । ସେହି ପ୍ରକଟିତ ଲୀଳା ବି ହେଉଛି ଦୁଇ ପ୍ରକାର, ବାହ୍ୟ ଏବଂ ଆନ୍ତରିକ । ବାହ୍ୟ ଲୀଳାରେ ବି ତିନୋଟି ଭେଦ ଅଛି । ସେଗୁଡ଼ିକ ହେଲା ଗୋଷ୍ଠଲୀଳା, ବନଲୀଳା ଏବଂ କୁଞ୍ଜଲୀଳା । ନିକୁଞ୍ଜଲୀଳା ହେଉଛି ଆନ୍ତରିକ ଲୀଳା । ସେଥିରେ ସବୁ ସଖୀଙ୍କର ପ୍ରବେଶଲାଗି ଅଧିକାର ନାହିଁ । ସେଥିରେ କେତେକ ଅତି ଅନ୍ତରଙ୍ଗ ସଖୀ ହିଁ ସମ୍ମିଳିତ ହୋଇପାରନ୍ତି । ଅବଶିଷ୍ଟ ଗୋପ-ଲୀଳା ଓ ବନ-ଲୀଳାରେ ସବୁ ଗୋପୀଙ୍କ ପ୍ରବେଶର ଅଧିକାର ଅଛି । ତାହା ଜଗତର ଆନନ୍ଦକୁ ବଢ଼ାଇ ଦେଇଥାଏ । ଯେଉଁଠି ବର୍ଣ୍ଣନା ହେବ, ସେଠି ବାହ୍ୟ ଲୀଳାଗୁଡ଼ିକରହିଁ ବର୍ଣ୍ଣନା ହେବ । ଅନ୍ତରିକ ଲୀଳାଗୁଡ଼ିକର ବର୍ଣ୍ଣନା ଅଳ୍ପ କେହି ଲୋକ ଯଦି ଖୁବ୍ କର୍ଣ୍ଣନା କରିପାରନ୍ତି, ତା'ହେଲେ ତାହା ଭିତରକୁ ପଶିବାଦ୍ୱାରା ହିଁ ସମ୍ଭବ ହୋଇଥାଏ ।

ବ୍ରହ୍ମ ବୈବର୍ତ୍ତ ପୁରାଣରେ ଏହିଭଳି କୁହାଯାଇଛି । ଥରେ ନନ୍ଦ ଶ୍ୟାମସୁନ୍ଦରଙ୍କୁ ବଣକୁ ନେଇଥିଲେ । ସେତେବେଳେ ଶ୍ରୀରାଧା ତାଙ୍କ ପାଖକୁ ଆସିଲେ । ନନ୍ଦ ଦିବ୍ୟ ଦୃଷ୍ଟିରେ ସବୁ ବୁଝିନେଲେ ଯେ ସେ ହେଉଛନ୍ତି ସ୍ୱାଙ୍କର ନିତ୍ୟାଶକ୍ତି । ତେଣୁ ବାଳକୃଷ୍ଣଙ୍କୁ ସେ ରାଧାଙ୍କ କୋଳକୁ ଟେକିଦେଲେ । ରାଧା ତାଙ୍କୁ ନେଇ ବଣକୁ ଗଲେ । ସେତେବେଳେ ଭଗବାନ ବାଳକ ରୂପ ଛାଡ଼ି ତରୁଣକିଶୋର ରୂପ ଧାରଣ କଲେ । ବ୍ରହ୍ମା ଆସି ଦୁହିଙ୍କୁ ବୈଦିକ ବିଧିରେ ବାହା କରାଇଦେଲେ । ପୁଣି ଭଗବାନ ପିଲାଟିଏ ହୋଇଗଲେ ଏବଂ ଶ୍ରୀରାଧା ତାଙ୍କୁ ନେଇ ନନ୍ଦଙ୍କୁ ଦେଲେ । ଏହିସବୁ କଥାରୁ ଜଣାଯାଏ ଯେ ଏ ଦୁହେଁ ହେଉଛନ୍ତି ନିତ୍ୟକିଶୋର ଏବଂ ଜଣେ ଆଉ ଆଉ ଜଣଙ୍କର ପ୍ରାଣ । ଏ ଦୁହେଁ କେବେ-ହେଲେ ପରସ୍ପରଠାରୁ ଅଲଗା ହୋଇ ପାରନ୍ତି ନାହିଁ । କିନ୍ତୁ କିଛି ସମୟ ପାଇଁ ଏ ଦୁହେଁ ସେହି କଥାକୁ ଭୁଲିଯାଇଥିଲେ । ଆପଣମାନେ ପ୍ରଶ୍ନ କରିପାରନ୍ତି, 'ଏ ଦୁହେଁ ତ ଥିଲେ ସର୍ବ-ଶକ୍ତିର ଭଣ୍ଡାର । ତାହା ହୋଇକରି ବି ଭୁଲିଗଲେ କେମିତି ?' ଏ ଦୁହେଁ ନିଜ ଶକ୍ତିକୁ ବି ଭୁଲିଗଲେ । ଭୁଲିଯିବାଟା ହିଁ ସେ ଦୁହିଁଙ୍କର ଶକ୍ତି । ତାହାର ବି ତ ଉପଯୋଗ ହେବା ଉଚିତ । ସେ ଦୁହେଁ ଯୋଗମାୟାଙ୍କୁ ଦୁହିଙ୍କ ମଝିରେ ଛିଡ଼ା କରାଇ ରଖିଥିଲେ । ସେ ଦୁହେଁ ଯାହା କିଛି ବା ଲୀଳା କରନ୍ତି, ତାହା ଯୋଗମାୟାଙ୍କ ଆଶ୍ରୟ ନେଇକରି ହିଁ କରନ୍ତି । ଏହିଭଳି ଭାବରେ ନନ୍ଦନନ୍ଦନ ଆନନ୍ଦକନ୍ଦ କୃଷ୍ଣଚନ୍ଦ୍ର ନନ୍ଦଙ୍କ ଘରେ ବଢ଼ିବାକୁ ଲାଗିଲେ । ଶ୍ରୀରାଧା ହେଉଛନ୍ତି ସର୍ବେଶ୍ୱରୀ ଓ ବୃଷଭାନୁଙ୍କ ଝିଅ । ସେ ମଧ୍ୟ ବୃଷଭାନୁଙ୍କ ଘରକୁ ଆଲୁଅରେ ଝଲସାଇ ଦେଇ ସମସ୍ତଙ୍କୁ ସୁଖ ଦେବାକୁ ଲାଗିଲେ । ଏହିପରି ଭାବରେ ପାଞ୍ଚଛଅ ବର୍ଷ ବିତିଗଲା ଏବଂ ଶ୍ୟାମସୁନ୍ଦର ଚାରି-ପାଞ୍ଚ ବର୍ଷର ହୋଇଗଲେ ।

## ପ୍ରଥମ ମିଳନ

ଶ୍ରୀକୃଷ୍ଣ ଥାଆନ୍ତି ବଡ଼ ଚଞ୍ଚଳ । ସେ ଲହୁଣୀ ଚୋରାଇ ଖାଆନ୍ତି ଏବଂ ଗୋପୀମାନଙ୍କ ଅଗରେ ବାଟ ଅଗୁଳି ଠିଆ ହୁଅନ୍ତି । ଏହି କଥା ବ୍ରଜର ଚାରିଆଡ଼େ ପ୍ରଚାର ହୋଇଗଲା ।

ଶ୍ରୀରାଧା ବି ଏହିସବୁ କଥା ଶୁଣନ୍ତି । ସେ ଜାଣିପାରନ୍ତି ନାହିଁ କାହିଁକି ଶ୍ରୀକୃଷ୍ଣଙ୍କ ନାଁ ଶୁଣିବା ମାତ୍ରେ ହିଁ ତାଙ୍କର ସାରା ଦେହ ରୋମାଞ୍ଚିତ ହୋଇଉଠେ । ସେହି ନାଁଟି ତାଙ୍କୁ ଖାଲି ଭଲ ଲାଗେ । ଶ୍ରୀକୃଷ୍ଣଙ୍କ ବିଷୟରେ ଯେଉଁଠି ଆଲୋଚନା ହେଉଥାଏ, ସେଠି ମନ୍ତ୍ରମୁଗ୍ଧ ଭଳି ତାଙ୍କ କାନ ଦିଓଟି ଲାଗିରହିଥାଏ । କୃଷ୍ଣ ଆଉ କୃଷ୍ଣ । ଏହି ନାଁଟି ସତେ କେତେ ସୁନ୍ଦର, କେତେ ମଧୁମୟ । ଏହା କେତେ ଶ୍ରୁତିପ୍ରିୟ, କେତେ ସୁଖଦ ! କେବେ କେବେ ସେ କଦମ୍ବଗଛ ଉପରୁ ଆସୁଥିବା ମଧୁର ବଂଶୀନାଦ ଶୁଣନ୍ତି । ତାଙ୍କୁ ଶୁଣାଇ ଶୁଣାଇ ଗୋପୀମାନେ କହନ୍ତି, "ନେଁ ନନ୍ଦଙ୍କ ପୁଅ ବଂଶୀ ବଜାଉଛନ୍ତି ।"

ଶ୍ରୀରାଧାଙ୍କ ଆନନ୍ଦର ସୀମା ରହେ ନାହିଁ । ସେ ମନେ ମନେ ଭାବୁଥାନ୍ତି, "ଆହା ! ଯାହାଙ୍କ ନାଁ ଏତେ ସୁନ୍ଦର ଓ ମିଠାରେ ଭରପୂର, ସେଇ କ'ଣ ଏତେ ସୁନ୍ଦର ଭାବରେ ବଂଶୀ ବି ବଜାଇ ପାରନ୍ତି ?" ଏହିଭଳି ଭାବରେ ଶ୍ରୀକୃଷ୍ଣଙ୍କ ବଂଶୀନାଦ ଶୁଣି ତାଙ୍କ ପ୍ରେମ ଆହୁରି ଅଧିକ ବଢ଼ିଉଠେ । ସ୍ୱାଭାବିକ ପ୍ରେମରେ ଅବଗୁଣ ଦେଖାଦେଉ ନଥାଏ । ମୋଟାମୋଟି ଭାବରେ ପ୍ରେମର ଏହା ହେଉଛି ପ୍ରକୃତ ପରିଚୟ । ଯେଉଁଠି ଅବଗୁଣ ଦେଖାଦିଏ, ସେଠି ପ୍ରେମର ଅଭାବ ଅଛି ବୋଲି ବୁଝିବାକୁ ହେବ । ଗୁଣଗ୍ରାହକର କଥା ଆଉ କ'ଣ ବା କହିବା ? କୌଣସି କୃଷ୍ଣ ଭକ୍ତ କୌଣସି ଜଣେ ରାମଭକ୍ତଙ୍କୁ କହିଲେ, "ଆପଣ କାହିଁକି ଶ୍ରୀକୃଷ୍ଣଙ୍କ ଉପାସନା କରୁନାହାନ୍ତି ?" ଶ୍ରୀକୃଷ୍ଣ ତ ଷୋହଳ କଳାର ପରିପୂର୍ଣ୍ଣ ଅବତାର । ଶ୍ରୀରାମଚନ୍ଦ୍ର ତ ହେଉଛନ୍ତି ବାରକଳାର ଅବତାର ।" ଏହା ଶୁଣି ସେହି ସାଧୁ ପୁରୁଷ ଜଣକ ଚମକି ପଡ଼ି କହିଲେ, "ଆପଣ କ'ଣ କହିଲେ ? ଶ୍ରୀରାମଚନ୍ଦ୍ର ବାର କଳାର ଅବତାର ନା କ'ଣ ? ଆମେ ତ ଏପର୍ଯ୍ୟନ୍ତ ତାଙ୍କୁ କୌଶଲ୍ୟା କଶୋର ଦଶରଥନନ୍ଦନ ବୋଲି ଭାବ ଭକ୍ତି କରୁଥିଲୁ ଏବେ ଆପଣଙ୍କ ମୁହଁରୁ ଅବତାର କଥା ଶୁଣି ଆମ ଭକ୍ତି ଆହୁରି ବି ଦୃଢ଼ ହୋଇଗଲା ।" ସାର କଥା ହେଉଛି ଏଇଆ । ମଦନମୋହନ ମନମତାଣିଆ ବଂଶୀ ବଜାଉଛନ୍ତି ବୋଲି ଯେ ସେଥିପାଇଁ ଶ୍ରୀରାଧାଙ୍କ ମନ ତାଙ୍କ ଆଡ଼କୁ ଟାଣି ହୋଇଯାଉଛି ତାହା ନୁହେଁ । ତାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ସ୍ୱାଭାବିକ ସ୍ନେହ ହୋଇ ଯାଇଥିଲା । ତାଙ୍କ ନାଁଟି ଶୁଣିବାରେ ଏହା ହୋଇଯାଇଥିଲା ଏବଂ ବଂଶୀ-ଧ୍ୱନି ଶୁଣିବାଦ୍ୱାରା ଏହା ଚରମ ସ୍ଥାନରେ ପହଞ୍ଚି ଯାଇଥିଲା ।"

ଦିନେ ରାଧା ଯମୁନା-କୂଳକୁ ଯାଇଥିଲେ । ସେ ଥିଲେ ଆକାରରେ ଶ୍ରେଷ୍ଠ ଓ ହେଲା ପ୍ରକୃତିରେ ଜଣେ ବଡ଼ ସୁନ୍ଦରୀ ସ୍ତ୍ରୀ । ତାଙ୍କ ଚେହେରା ଥିଲା ଗୋରା । ଅଧାଫୁଟା କଢ଼ଟିଏ ଭଳି ସେ ଦିଶୁଥିଲେ । ସେ ନାଳ ରଙ୍ଗର ଶାଢ଼ୀଟିଏ ପିନ୍ଧିଥିଲେ । ସେ ଥିଲେ ଲାଜକୁଳୀ । ନିଜର ସାରା ଦେହରେ ଏହି ଶାଢ଼ୀଟିକୁ ଆବୃତ କରି ରଖିବାଦ୍ୱାରା ସେ ଖୁବ୍ ସୁନ୍ଦର ଦିଶୁଥିଲେ । ସଂଯୋଗର କଥା ହେଲା, ସେ ଥିଲେ ଏକାକିନୀ । ହଠାତ୍ ଶ୍ୟାମସୁନ୍ଦର ସେଠାକୁ ଆସିଗଲେ । ସେ ଥିଲେ ଚାରି-ପାଞ୍ଚ ବର୍ଷର ପିଲା । ପାଇକଛା ମାରି

ସେ ହଳଦିଆ ରଙ୍ଗର ଲୁଗାଟିଏ ପିନ୍ଧିଥାନ୍ତି । ମୁଣ୍ଡରେ ଥାଏ ମୟୂର-ଚୂଳ ଏବଂ ହାତରେ ବଂଶୀ । ଏଭଳି ରୂପରେ ସେ ବୃଷଭାନୁଙ୍କ ଝିଅଙ୍କ ଆଗରେ ଠିଆ ହୋଇଗଲେ । ଦୁହିଁଙ୍କର ଦୃଷ୍ଟି ହୁଲିଗଲା । ଶ୍ୟାମସୁନ୍ଦର ପଚାରିଲେ, "ଆଗୋ ! ତୁମେ କେଉଁଠି ରହୁଛ ?"

"ଆମେ ଏଇ ବରସାନା ଗାଁରେ ରହୁଥାଉଁ ।" ବୀଣାନିନ୍ଦିତ କଣ୍ଠରେ କଣୋରୀ ଉତ୍ତର ଦେଲେ ।

ଶ୍ୟାମସୁନ୍ଦର ପଚାରିଲେ, "ମୁଁ ତ ପୂର୍ବରୁ ତୁମକୁ କେମା କେଉଁଠି ଦେଖି ନାହିଁ । ତୁମ ବାପାଙ୍କ ନାଁ କ'ଣ ?"

ବୃଷଭାନୁ-ଜେମା ଲାଜେଇ ଯାଉଥିଲେ । ଚକିତ ଦୃଷ୍ଟିରେ ସେ ମଦନମୋହନଙ୍କ ମୁଖପଦ୍ମରୁ ଝରୁଥିବା ମଧୁକୁ ନିଜ ଆଖି ଦୁଇଟିରେ ସତେ ଅବା ପିଇଯାଉଥିଲେ ! ସେ କହିଲେ, "ମୁଁ ନିଜ ବାପାଙ୍କ ନାଁ କିପରି ବା ତୁଣ୍ଡରେ ଧରିବି ? ସେ ହେଉଛନ୍ତି ଏଠାକାର ରାଜା । ତାଙ୍କ ନାଁର ସଂପର୍କ ଅଛି ବଳଦ ଓ ସୂର୍ଯ୍ୟଙ୍କ ସହିତ ।"

ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ପ୍ରକାଶ କରି କହିଲେ—"ଓହୋ ! ତୁମେ ତା'ହେଲେ ହେଉଛ ବୃଷଭାନୁଙ୍କର ଝିଅ । ତୁମ ନାଆଁ ରାଧା ।"

ପିଲାଟି ସହିତ ଚନ୍ଦ୍ରା-ପରିଚୟ ନଥିଲା । ସେ କିନ୍ତୁ ଥିଲା ଆକର୍ଷଣୀୟ । ତା' ମୁହଁରୁ ନିଜ ନାଁଟି ଶୁଣି ରାଧାଙ୍କ ହୃଦୟ ପୁଲକିତ ହୋଇଉଠିଲା । ସେ ସଂଭ୍ରମର ସହିତ ତାକୁ କହିଲେ, "ତୁମେ କିଏ ? ମୋ' ନାଁ ତୁମେ କେମିତି ବା ଜାଣିଲ ?"

ଶ୍ୟାମସୁନ୍ଦରଙ୍କ ହୃଦୟ ତ ଖାଲି ଫୁଲିଉଠୁ ନଥିଲା, ତାଙ୍କ ପ୍ରତିଟି ଲୋମ-କୂପରେ ଆନନ୍ଦ ଭରି ଉଠୁଥିଲା । ତାଙ୍କ ମୁହଁଟି ଆନନ୍ଦ ହେତୁ ଫୁଲି ଫୁଲି ଉଜ୍ଜ୍ୱଳ ଉଠୁଥିଲା । ନିଜର ମୁରୁକି ମୁରୁକି ହସର କିରଣ ରାଶିକୁ ରାଧାଙ୍କ ଗାଲ ଦୁଇଟି ଉପରେ ପଡ଼ୁଥିବା କୁଣ୍ଡଳ ହଲକର ଆଭା ସହିତ ମିଶାଇଦେଇ ମଦନମୋହନ କହିଲେ, "ତୁମ ରୂପର ଖ୍ୟାତି ତ ସାରା ବ୍ରଜମଣ୍ଡଳରେ ପ୍ରଘଟ ହୋଇଯାଉଛି । ଏଭଳି କିଏ ବା ଭାଗ୍ୟହୀନ ଲୋକ ଅଛି, ଯେକି ତୁମ ନାଁ ଜାଣି ନଥିବ ? ମୋ' ନାଁ କୃଷ୍ଣ ! ମୁଁ ନନ୍ଦରାଜାଙ୍କ ପୁଅ ।"

ରାଧାଙ୍କ ହୃଦୟ ପୁଲକିତ ଲହରୀରେ ଉଚ୍ଛୁଳି ଉଠୁଥିଲା । ସେ ଗୋଟିଏ ହାତରେ ଛାତିକୁ ଖୁବ୍ ଜୋର୍‌ରେ ଚାପି ଧରିଥିଲେ । ନିଜ ଅନ୍ତରର ଭାବକୁ ଗୋପନ ରଖିବାଲାଗି ସେ ନିରନ୍ତର ଯତ୍ନ କରୁଥିଲେ । ସେ କିଛି ବିଚାର ନ କରି ନିଜେ କହି ଉଠିଲେ, "ଓହୋ ! ମୁଁ ବହୁତ ଶୁଣିଥିଲି ଯେ ଶ୍ୟାମସୁନ୍ଦର ଜଣେ ବଡ଼ ଚୋର ।"

ଶ୍ୟାମସୁନ୍ଦର ହସି ହସି କହିଲେ, "ତୁମର ଭଳି ମୁଁ କ'ଣ ଚୋରାଇ ନେଇଛି ? ବଡ଼ ଘରର ଝିଅ ହୋଇ ପୁଣି ତୁମେ ଏମିତି ଖରାପ କଥା ମୁହଁରେ ଧରୁଛ ? ମତେ ପୁଣି ଚୋର ବୋଲି କହୁଛ ?"

ସୁକୁମାରୀ ରାଜକୁମାରୀ ଥିଲେ ସରଳ ପ୍ରକୃତିର । ସେ ଏଥିରେ ଡରିଗଲେ । ସେ ଭୁଲ୍ ପାଇଁ ଅନୁତାପ କଲେ । ସେ ମନେ ମନେ ଭାବିବାକୁ ଲାଗିଲେ, "ହାୟ ! ମୋ' ମୁହଁରୁ ଏ କଥା କାହିଁକି ବାହାରି ପଡ଼ିଲାଟି ? ସେତ ନିଶ୍ଚିତ ଭାବରେ ଚୋର । ପ୍ରଥମ ଦେଖାରେ ହିଁ ସେ ମୋ' ମନକୁ ଚୋରାଇ ନେଇଛନ୍ତି । କିନ୍ତୁ ସେଇକଥା ଅପ୍ରିୟ ସତ୍ୟ, ତାହା କହିବା ଉଚିତ ନୁହେଁ ।" ସେ ହଠାତ୍ କିଛି କହି ପାରିଲେ ନାହିଁ । ଶେଷରେ ସେ କହିଲେ, "ମୁଁ ଯାଉଛି ।"

ଶ୍ୟାମସୁନ୍ଦର ଚମକି ଉଠିଲେ । ଆରେ, ଏହା ତ ରଙ୍ଗଭଙ୍ଗ ହୋଇଗଲା ! ସେ ସାରା ମମତାକୁ ଗୋଟାଇଆଣି ସ୍ନେହଭରା କଣ୍ଠରେ କହିଲେ, "ଚାଲି ଯାଉଛ କାହିଁକି ? ଟିକିଏ ହେଲେ ରହିଯାଅ । ମୋ' କଥାକୁ ଖରାପ ବୁଝିଲ କି ? ମୁଁ ପରା ଅଜାଣରେ ସେମିତି କହିଦେଲି ! ହଁ, ଲୋକମାନେ ସମସ୍ତେ ମତେ ଲହୁଣୀ-ଚୋର ବୋଲି କହନ୍ତି । ମୁଁ କିନ୍ତୁ କାହାର କିଛି ଚୋରିଏ କାହିଁ । କିନ୍ତୁ ଯାହାର ହେଲେ ତ ଜଣଙ୍କର ନାଁ ପାଟିରୁ ବାହାରିବା କଥା । ତୁମକୁ ବି ସେମିତି କିଏ କହି ଦେଇଥିବ । ଚାଲ, କିଛି ସମୟ ପାଇଁ ଯମୁନାକୂଳରେ ଆମେ ଦୁହେଁ ମିଳିମିଶି ଖେଳିବା ।"

ରାଧା ମନେ ମନେ ଭାବିଲେ, "ସେ ନନ୍ଦନନ୍ଦନଙ୍କଠାରେ ଆକର୍ଷଣ ଅଛି ଯେତିକି ଜିଦ୍ ବି ଅଛି ସେତିକି । ତାଙ୍କ କଥା ସତେ କେତେ ପ୍ରେମଭରା ! ଏଥିରେ କେତେ ମାଦକତା ଭରି ରହିଛି !" କିନ୍ତୁ ଲାଜେଇଯାଇ ସେ ଶ୍ୟାମଙ୍କ କଥାର ଉତ୍ତର ଦେଇ ପାରୁ ନଥିଲେ । ଶେଷରେ ସେ କହିଲେ, "ମୋ' ମାଆ ଗାଳିଦେବେ । ତେଣୁ ମତେ ଏବେ ଯିବାକୁ ଦିଅ । ମୁଁ ଆଉ ପୁଣି କେତେବେଳେ ଆସିବି ।"

ଶ୍ୟାମ ଏପଟ ସେପଟ କରି ଚାହିଁବା ଭଳିରୁ ତାଙ୍କ ନୀଳ ପାଟ ଶାଢ଼ୀର ପଣତକୁ ଧରି ପକାଇଲେ ଏବଂ କହିଲେ, "ମୋ' ରାଣ ପକାଇ କୁହ ଯେ ପୁଣି ଆସିବ ।"

ରାଧା ନିଜ ଶାଢ଼ୀଟି ଛଡ଼ାଇବାର ଯତ୍ନ କଲେ ନାହିଁ । ନିଜର ବଡ଼ ବଡ଼ କଜଳକଳା ଆଖି ଦିଓଟିରେ ସେ ଶଙ୍କିତ ଦୃଷ୍ଟିରେ ଏଣେତେଣେ ଚାହିଁ କହିଲେ, "ଛାଡ଼ିଦିଅ, ଛାଡ଼ିଦିଅ । ମୁଁ ନିଶ୍ଚୟ ଯିବି ।"

ଶ୍ୟାମ କଥା ଉପରେ ଜୋର୍ ଦେଇ କହିଲେ, "କାଲି ଠିକ୍ ଏହି ସମୟରେ ଆସିବ ।"

ଶଙ୍କିତ ଚିତ୍ତରେ ବୃଷଭାନୁଙ୍କ ଝିଅ କହିଲେ, "ଏବେ କାଲି କଥା ତ ମୁଁ କହିପାରିବି ନାହିଁ । ମୁଁ ତ ତୁମଭଳି ପୁଅ ପିଲା ନୁହେଁ । ମୁଁ ଝିଅ ପିଲା । ମାଆଙ୍କୁ ପଚାରି କାହାକୁ ସାଥିରେ ଧରି କିଛି ଗୋଟାଏ ବାହାନା ଦେଖାଇ ମତେ ଆସିବାକୁ ହେବ ।"

ଶ୍ୟାମସୁନ୍ଦର କହିଲେ, "ତୁମ ଗାଈ-ଗୋଠ ଓ ଆମ ଗାଈ-ଗୋଠ ତ ପାଖାପାଖି ହୋଇ ରହିଛି । ଗାଈ ଦୁହିଁବାପାଇଁ ଯାଉଛ ବୋଲି ତୁମେ ମାଆଙ୍କୁ କହିଦେବ ।"

ଶ୍ରୀରାଧାର ସହିତ କଶୋରୀ କହିଲେ, "ଏବେ ତୁମେ ମତେ ଛାଡ଼ିଦିଅ । ତୁମକୁ ଏହିସବୁ କଥା ମତେ ଶିଖାଇବାକୁ ପଡ଼ିବ ନାହିଁ । ମୁଁ ନିଜେ ନିଜେ କିଛି ଗୋଟାଏ ଯୁକ୍ତି ଖୋଜି ବାହାର କରିନେବ ।"

ଶ୍ୟାମ ଚଞ୍ଚଳ ତାଙ୍କ ନେଳି ଶାଢ଼ୀଟିକୁ ଟାଣିଦେଲେ । ସେଥିରେ ସେ ନାଗୁଣୀ ଭଳି ଫଣାଟେକି ଉଠିଲେ । ସେ ରାଗିଯାଇ କହିଲେ, "ତୁମେ ବଡ଼ ହଟିଆ ଲୋକ । ଏଭଳି ହଟ ଲଗାଇ ଟଣାଟଣି କଲେ ମୁଁ ଆଉ ଜମା ଆସିବି ନାହିଁ ।" ଶ୍ରୀକୃଷ୍ଣ ତରବରିଆ ଭାବରେ ହଠାତ୍ ଭୁଲ୍‌ଟିଏ କରି ବସିଲେ । ସେ ନିଜ ହଳଦିଆ ଲୁଗାଟିକୁ ରାଧାଙ୍କ ମୁଣ୍ଡରେ ନେଇ ଘୋଡ଼ାଇ ଦେଲେ । ରାଧା ଯଦିଓ ମୁହଁରେ ଏମିତି କଥା କହୁଥିଲେ, ତଥାପି ତାଙ୍କର ସାରା ତନୁ-ମନରେ ବୁଦ୍ଧି-ସୁଧି କିଛି ନଥିଲା । ତାଙ୍କୁ ଜଣାପଡ଼ି ନଥିଲା, ଏଇଟା ନେଳି ଶାଢ଼ୀ କି ହଳଦିଆ ଲୁଗା । ଇଆଡ଼େ ଶ୍ରୀକୃଷ୍ଣ ବି ଜାଣିଶୁଣି ଏମିତି କରି ନଥିଲେ । କଶୋରୀ ଲଣ୍ଡଭଣ୍ଡ ହୋଇ ଗୋଠ ଆଡ଼କୁ ଧାଇଁ ଚାଲିଗଲେ । ଲୁଚି ହୋଇଯାଇଥିବା ବେପାରୀ ଭଳି ଶ୍ୟାମସୁନ୍ଦର ଠିଆ ହୋଇ ତାଙ୍କ ଗୋଡ଼କୁ ଦେଖିବାକୁ ଲାଗିଲେ । ଯେତେବେଳେ ରାଧା ଆଖିରୁ ଅଦୃଶ୍ୟ ହୋଇଗଲେ, ସେତେବେଳେ ସବୁକିଛି ହରାଇ ବସିଥିବା ଜଣେ ବେପାରୀ ଭଳି କୃଷ୍ଣ ଘରକୁ ଆସିଲେ । ଆସିବାମାତ୍ରେ ହିଁ ମାଆ ପଚାରିଲେ, "ଆରେ କାହ୍ନୁ ! ତୁ ଏଇଟା କେଉଁ ଝିଅର ଓଢ଼ଣୀ ଘୋଡ଼ାଇ କରି ଆସିଛୁରେ ? ଆରେ ପାଗଳ । ତୁ ଏବେ ପୁଅରୁ ଝିଅ ହୋଇଗଲୁ ନା କ'ଣ ?"

ସୂତ କହୁଛନ୍ତି—"ହେ ମୁନିମାନେ ! ପୁରୁଷ ମନରେ ଯେତେବେଳେ ସ୍ତ୍ରୀ ବିଷୟରେ ଚିନ୍ତା ଆସେ, ସେତେବେଳେ ସେ ସେହି ସ୍ତ୍ରୀର ଆକାର-ରୂପ ଧାରଣ କରେ । ଠିକ୍ ସେମିତି ସ୍ତ୍ରୀ-ପୁରୁଷ ବିଷୟ ଯଦି ଚିନ୍ତା କରିବସେ, ତେବେ ସେ ପୁରୁଷ-ରୂପ ହୋଇଯାଇଥାଏ । ବିନା ଦେବତାରେ ଦେବ-ପୂଜା ହୋଇପାରେ ନାହିଁ । ମନୁଷ୍ୟ ଯାହାଙ୍କ ରୂପ ଚିନ୍ତା କରେ, ତାହାଙ୍କ ରୂପ ପାଇଯାଇଥାଏ । ସେଥିପାଇଁ ରାଧା ଶ୍ରୀକୃଷ୍ଣଙ୍କ ବିଷୟ ଚିନ୍ତା କରି କରି ନିଜକୁ ଶ୍ରୀକୃଷ୍ଣ ବୋଲି କହିବାକୁ ଲାଗିଲେ । ଶ୍ରୀକୃଷ୍ଣ ବି ରାଧାଙ୍କ ବିଷୟ ଚିନ୍ତା କରି କରି ତାଙ୍କ ଭାବଗୁଡ଼ିକୁ ଅନୁକରଣ କରିବାକୁ ଲାଗିଲେ । ନିଜ ଦେହରେ ରାଧାଙ୍କ ଶାଢ଼ୀ ଦେଖି ସେ ମାଆଙ୍କ ଆଗରେ ହରବରେଇ ଗଲେ । କଥାଟିକୁ ବୁଝାଇବାକୁ ଯାଇ ସେ କହିଲେ, 'ମାଆ ! ଆଜି ଗୋଟିଏ ବଡ଼ ଘଟଣା ଘଟିଯାଇଛି ।'

ମାଆ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ପୁଅ ! ଘଟଣା କ'ଣ ?"

ନିଜର ସରଳ ରୂପଟି ପ୍ରକାଶ କରି ଶ୍ରୀକୃଷ୍ଣ କହିଲେ—"ଦେଖ ମାଆ, ସେଇ ଯେଉଁ ମାରଣୀ ଓଟଲେଇ ଗାଈଟା ମ, ସେ ଆଜି ଢେର ଲଣ୍ଡଭଣ୍ଡ କରିଦେଲା । ମୁଁ ଗୋଟିଏ

ଝିଅର ଶାଢ଼ୀକୁ ଶିଙ୍ଗରେ ଧରି ଧାଇଁ ପଳାଇଲା । ଝିଅଟି ବସ୍ତ୍ର କାଢ଼ିବାକୁ ଲାଗିଲା । ମୁଁ ସେହିଠାରୁ ତାକୁ ମୋ' ହଳଦୀରଙ୍ଗର ଲୁଗାଟି ଦେଲି । ପରେ ମୁଁ ଗାଈଠାରୁ ତା'ର ଶାଢ଼ୀଟି ଛଡ଼ାଇ ଆଣିଛି । ଲୁଗା ବଦଳିବାର କୌଣସି ଭୟ ନାହିଁ । ମୁଁ ତାକୁ ଜାଣିଛି । କାଲି ହିଁ ମୁଁ ତା'ର ଶାଢ଼ୀଟି ତାକୁ ଦେଇଆସିବି ଏବଂ ମୋ' ନିଜ ହଳଦୀରଙ୍ଗର ଲୁଗାଟି ଫେରାଇ ଆଣିବି ।''

ମାଆ କହିଲେ—''ଭଲ କଲୁ ବାପା ! ଏବେ ତୁ ଝିଅର ପିନ୍ଧା ଲୁଗାଟା ନେଇ କ'ଣ ବା କରିବୁ ? ମୋର କ'ଣ ଏଠି ହଳଦିଆ ଲୁଗାର ଅଭାବ ଅଛି ? ତୋ'ପାଇଁ ମୁଁ ଅନ୍ୟ ନୂଆ ଲୁଗା କାଢ଼ି ଦେଉଛି ।'' ଏହା କହି ମାଆ ଅନ୍ୟ ହଳଦିଆ ଲୁଗା ଆଣି ଦେଲେ । ଶ୍ୟାମସୁନ୍ଦର ସେହି ଶାଢ଼ୀଟିକୁ କୃପଣର ଧନଭଳି ସୁରକ୍ଷିତ କରି ରଖିଲେ ।

ସେହିପରି ଡେରି ହୋଇଯାଇଥିବା କାରଣରୁ ଯେତେବେଳେ କୀର୍ତ୍ତିକଶୋରୀ ରାଧା ଡରି ଡରି ଘର ଭିତରେ ପାଦ ପକାଇଲେ, ସେତେବେଳେ ବହୁତ ସମୟ ଧରି ବାଟକୁ ଚାହିଁ ବସିଥିବା ମାଆ ଝିଙ୍କାସି କରି କହିଲେ—''କିଏ ରାଧା ନା ? ଏବେ ତ ତୁ ଭାରି ସ୍ୱାଧୀନ ହୋଇଗଲୁଣି ! ଲୋକଲଜ୍ଜା ଓ କୁଳଲଜ୍ଜା ସବୁ ତ ଛାଡ଼ି ବସିଲୁ । ତୁ ବଡ଼ ଘରର ଝିଅ । ତୋ' ପକ୍ଷରେ ଏକୁଟିଆ ଯମୁନାକୁ ଯିବା କଥା କି ? କିଏ କ'ଣ କହିବ ? ମୋର କ'ଣ ଏଠି ଚାକର ନାହାନ୍ତି ନା ଚାକରାଣୀ ନାହାନ୍ତି ? ତୁ କୁଆଡ଼େ ଯାଇଥିଲୁ ? ଏତେ ଡେରି ହୋଇଗଲାଣି । ଏପର୍ଯ୍ୟନ୍ତ ତୁ କିଛି ଖାଇନାହୁଁ ।'' ଏହିପରି ଭାବରେ ମାଆ କେଜାଣି କେତେ ପ୍ରକାର କଡ଼ା ଭାଷାରେ ବହୁତ ସମୟ ପର୍ଯ୍ୟନ୍ତ ବକିଯିବାକୁ ଲାଗିଲେ । ସେ ଯେତେବେଳେ ରାଧାଙ୍କ ମୁଣ୍ଡରେ ହଳଦିଆ ଲୁଗାର ଓଢ଼ଣାଟି ଦେଖିଲେ, ତାଙ୍କ ରାଗ ପଞ୍ଚମକୁ ବଢ଼ିବାକୁ ଲାଗିଲା ଏବଂ ସେ ଆହୁରି ଝିଙ୍କାସିବାକୁ ଲାଗିଲେ ।

ସେତେବେଳେ ବଡ଼ ବଡ଼ ଆଖି ଦୁଇଟିକୁ ଲୁହ ଝରାଇ କୀର୍ତ୍ତିନନ୍ଦନୀ ରାଧା କହିଲେ—''ମାଆ ! ତୁ ତ ମୋ' କଥା କିଛି ଶୁଣିବୁ ନାହିଁ । ଖାଲି ନିଜେ କହି ଯାଉଥିବୁ । ମତେ ଏକଥା ଜଣା ନଥିଲା ଯେ ବନ୍ଦୀ-ଶାଳାଟି ଭଳି ମତେ ଘର ଭିତରେ ସବୁବେଳେ ବନ୍ଦ ହୋଇ ରହିବାକୁ ପଡ଼ିବ । ଏବେ କିଛି ସମୟ ତଳେ ମୁଁ ଲଳିତା ସାଥିରେ ଗାଈଗୋଠ ଦେଖିବାକୁ ଯାଇଥିଲି । ମୁଁ ଦେଖିଲି ଯେ ସେଠି କେହି ଗାଈ ଦୁହୁ ନାହିଁ କମ୍ବା ଗୋବର ଉଠାଉ ନାହିଁ । ଗାଈମାନଙ୍କ ପାଦତଳେ କାଦୁଅ ପଚ-ପଚ ହେଉଛି । ସେଠାରୁ ମୁଁ ଯମୁନାକୂଳକୁ ଗଲି । ସେଠାରେ ଅନେକ ଗୋପୀ ଥିଲେ । କିଏ ଗାଧୋଉଥିଲା ତ ଅଉ କିଏ ମାଠିଆରେ ପାଣି ଭରୁଥିଲା । ମୁଁ ବି ଗାଧୋଇବାକୁ ଲାଗିଲି । ଗାଧୋଇ ସାରିବା ପରେ ମୁଁ ଯେତେବେଳେ ମୋ' ଶାଢ଼ୀ ପିନ୍ଧିବାକୁ ଲାଗିଲି, ସେତେବେଳେ ଗୋଟାଏ ମସ୍ତବଡ଼ କଳାସାପ ଆସିଲା । ଆସିବା ମାତ୍ରେ ହିଁ ସେ ମୋ'

ପାଖରେ ଥିବା ଜଣେ ଗୋପୀ ଉପରେ ଝାମ୍ପ ମାରିଲା । ମୁଁ ଡରକରି ଧାଇଁ ପଳାଇ ଆସିଲି । ମୁଁ ସାମାନ୍ୟ ଟିକକରେ ହିଁ ବଞ୍ଚିଗଲି । ତାହା ନ ହୋଇଥିଲେ ସେ ମତେ ବି ଦଂଶି ଦେଇଥାନ୍ତା । ଏହି ହରବର ଅବସ୍ଥାରେ ମୋର ଓଢ଼ଣୀଟି ଯମୁନାରେ ଭାସିଗଲା । ସେହି ଗୋପୀ ଜଣକ ମୂର୍ଚ୍ଛିତ ହୋଇ ଛଟପଟ ହେଲା ।'

ମାଆଙ୍କର ହବୁ ଭାଗ କର୍ପୂର ଭଳି ଉଡ଼ିଗଲା । ସେ କହିଲେ—"ହାୟ ! ଆଲୋ ଝିଅ ! ଭଗବାନ ହିଁ ତତେ ବଞ୍ଚାଇ ଦେଲେ । ସେହି ଗୋପୀ ମଲା ନା ବଞ୍ଚିଲା ?"

ମନେ ମନେ ଖୁସି ହୋଇ ଅଲ୍ପଅଳ୍ପ ଝିଅ ରାଧିକା କହିବାକୁ ଲାଗିଲେ—"ମାଆ ! ତୁମେ ଶୁଣ । ସେହି ସମୟରେ କଳାରଙ୍ଗର ପିଲାଟିଏ କେଉଁଠି ଥିବା ପହଞ୍ଚିଲା । ମୁଁ ତ ତାକୁ ଜାଣି ନଥିଲି । ସେ ବାପାଙ୍କ ନାଁ ନେଇ ମୋ' ମୁଣ୍ଡକୁ ଖୋଲା ଥିବାର ଦେଖି ହଳଦିଆ ରଙ୍ଗର ଲୁଗାଟି ଓଢ଼ଣୀ କରିବାପାଇଁ ମତେ ଦେଇଦେଲା । ମୁଁ ନମା ନେଇ ନଥିଲି; କିନ୍ତୁ ସମସ୍ତେ କହିଲେ ନେଇଯା, ନେଇଯା, ଏଥିରେ କିଛି ଅସୁବିଧା ନାହିଁ । ସେ ତ ନନ୍ଦଙ୍କ ପୁଅ । ମାଆ ! ସେହି ପିଲାଟି ପାଖରେ ଭାରି ଯାଦୁ-ବିଦ୍ୟା ଅଛି । ସେ ସେହି ଗୋପୀର କାନରେ କି ମନ୍ତ୍ର ଫୁଙ୍କିଲା କେଜାଣି, ସେ ବି ହଠାତ୍ ଉଠି ଠିଆ ହୋଇଗଲା ଏବଂ ହସିବାକୁ ଲାଗିଲା । ମୁଁ ତ ନାରାୟଣଙ୍କ କୃପାରୁ ହିଁ ବଞ୍ଚିଗଲି ।"

"ଏହାଶୁଣି ମାଆ ଶ୍ରୀରାଧାଙ୍କୁ ଧରି ଗ୍ରହରେ ଜଡ଼ାଇ ନେଲେ ଏବଂ ତାଙ୍କୁ କୋଳରେ ବସାଇ, ତାଙ୍କ ମୁଣ୍ଡ ଉପରେ ହାତରଖି କହିଲେ—"ଝିଅ ! ଭଗବାନ ଭାରି ଦୟା କଲେ । ତୁ କୁଆଡ଼େ ଗ୍ଲିଲଚଲୁ ବୋଲି ମୁଁ ତ ଡରଯାଇଥିଲି ।"

ରାଧା ଦେଖିଲେ ଯେ ମାଆ ଏବେ ପଟିଯାଇଛନ୍ତି । ତାହା ଦେଖି ସେ କହିଲେ—"ମାଆ ! ଏହି କଳା ପିଲାଟି କାହାର ପୁଅ ? ସେ ବାରମ୍ବାର ମତେ କହୁଥିଲା ତାଙ୍କ ଘରକୁ ଖେଳିବାକୁ ଯିବାପାଇଁ । ମୁଁ କିନ୍ତୁ କିଛି କହିଲି ନାହିଁ ।"

ମାଆ କହିଲେ—"ଆଲୋ ଝିଅ ! ସେ ହେଉଛି ନନ୍ଦ-ରାଜାଙ୍କ ପୁଅ । ତା ନାଁ ହେଉଛି କୃଷ୍ଣ । ସେ ଭାରି ହସିଆ ପିଲାଟାଏ । ଯଶୋଦା ରାଣୀଙ୍କ ସହିତ ମୋର ଭାଇଆଲି ସମ୍ପର୍କ ଅଛି । ତାଙ୍କ ଘରକୁ ଯିବାରେ କିଛି କଥା ନାହିଁ । ତାହା ତ ନିଜର ହିଁ ଘର । ଏବେ ଏହି ହଳଦିଆ ଲୁଗାଟିକୁ ତୁ ତ ଓଢ଼ଣୀ କରିଦେଲୁ । କାଲିକି ତାଙ୍କ ଘରେ ନୂଆ ଲୁଗାଟିଏ ନେଇ ଦେଇଆସିବୁ ।"

ସୂତ କହୁଛନ୍ତି—"ହେ ମୁନିମାନେ ! ଏହିଠାରୁ ଶ୍ରୀକୃଷ୍ଣଙ୍କ ପ୍ରେମ ଆରମ୍ଭ ହେଲା । ଏ ଦୁହିଁଙ୍କ ମଧ୍ୟରେ ଯେଉଁ ପ୍ରେମ ଅଛି, ତାହା ତ ସନାତନ । ତାହାର ଆରମ୍ଭ ନାହିଁ କି ଶେଷ ନାହିଁ; କିନ୍ତୁ ଲୌକିକ ଦୃଷ୍ଟିରେ ଏହାର ନାଁ ହେଉଛି ପୂର୍ବାନୁରାଗ ।"

ସୂତ କହି ଚାଲିଥାଆନ୍ତି —"ହେ ମୁନିମାନେ ! ଏବେ ଦୁଇପଟରୁ ନିବିଡ଼ ମିଳନ ଲାଗି ଉତ୍କଟ ଇଚ୍ଛା ହେବାକୁ ଲାଗିଲା । ଦୁହେଁ ହିଁ ସର୍ବଦା ମିଳନର ସୁଯୋଗ ଖୋଜିବାକୁ ଲାଗିଲେ । ଯେତେବେଳେ ସୁଯୋଗ ମିଳେ ସେତେବେଳେ କୌଣସି ଗୋଟିଏ ବାହାନା ଦେଖାଇ ଦୁହେଁ ମିଳିତ ହୁଅନ୍ତି । କେବେ ଶ୍ରୀକୃଷ୍ଣ ଅନେକ ରୂପ ଧରି ରାଧାଙ୍କ ଭିତର ମହଲକୁ ପଶିଯାଆନ୍ତି । ଆଉ କେତେବେଳେ ରାଧା ଅନେକ ରୂପ ଧରି ଶ୍ରୀକୃଷ୍ଣଙ୍କୁ ଭ୍ରମରେ ପକାଇ ଦିଅନ୍ତି । ସ୍ନେହ ବଢ଼ିବାକୁ ଲାଗିଲା । ତାହା କ୍ରମେ ମାନର ରୂପ ଧାରଣ କଲା ଏବଂ ଶେଷରେ ପ୍ରଣୟରେ ପରିଣତ ହୋଇଗଲା । ରାଗ, ଅନୁରାଗ, ଭାବ ଓ ମହାଭାବ ଏଗୁଡ଼ିକ ହେଉଛି କ୍ରମାନ୍ୱୟରେ ପ୍ରେମର ପାହାଚ । ରାଧା ହେଉଛନ୍ତି ଶ୍ରୀକୃଷ୍ଣଙ୍କ ପ୍ରାଣେଶ୍ୱରୀ ଓ ହୃଦୟେଶ୍ୱରୀ ! ତାଙ୍କ ବିନା ଶ୍ରୀକୃଷ୍ଣ ରହିପାରିବେ ନାହିଁ ।"

### ଛପ୍ପୟ

ଜବ୍ୟ ଲୋକତେଂ ଧରନ ଧାମପୈ ରାଧା ଆଈ ।
କଜ ପରିକର ପୂରି ଲଈ ଅବନକୁଁ ଦଈ ବଡ଼ାଈ ।।
ଧନ-ଧନ ଶ୍ରୀବୃଷଭାନୁ କୀର୍ତ୍ତି ଜନନୀହୁ ଧନ-ଧନ ।
ଜିନକୀ ଦୁହିତା ବନୀ ରାଧିକା ବହୁରେଂ ଭବନନ ।।
ଯୁଦ୍ଧ ଅବନୀ ପାବନ ବନୀ, ରାଧା ପଦରଜ ପରସିକେଂ ।
ଜିହି ରଜ ସୁରଗନ, ଇନ୍ଦ୍ର, ଅଜ, ଶିବ ସିର ଧାରହିଁ ହରଷିକେଂ ।।



## ଅନନ୍ୟସମା ରାଧିକା

ନମୋ ନମସ୍ତେଽସ୍ତ୍ୱୃଷଭାୟ ସାତ୍ୱତାମ
ବିଦୂରକାଷ୍ଠାୟ ମୁହୁଃ କୁଯୋଗିନାମ୍ ।
ନିରସ୍ତସାମ୍ୟାତିଶୟେନ ରାଧସା
ସ୍ୱଧାମନି ବ୍ରହ୍ମଣି ରଂସ୍ୟତେ ନମଃ ।।

( ଶ୍ରୀ.ଭା. ୨ସ୍କ, ୪ଅ, ୧୪ ଶ୍ଳୋ )

## ଛପ୍ପୟ

ରାଧା ରସକୀ ଖାନ ସରସତା ସୁଖକୀ ବେଲୀ ।
ନନ୍ଦନନ୍ଦନ ମୁଖଚନ୍ଦ୍ର ଚକୋରୀ ନିତ୍ୟ ନବେଲି ॥
ନିତ ନବ ନବ ରତି ଭାବ ରସିକ ହୃଦୟ ରସ ବରସାବେଁ ।
କେଲି କଲାମହଁ କୁଶଲ ଅଲୌକିକ ସୁଖ ସରସାବେଁ ॥
ଗୋରୀ ଭୋରୀ ସୁନ୍ଦରୀ, ସ୍ୱର୍ଣା ସୁଷମା ଶ୍ୟାମକୀ ।
ସତୀ ଶିରୋମଣି ସ୍ୱାମିନୀ, ଶ୍ରୀବୃନ୍ଦାବନ ଧାମକୀ ॥

ଯେ ଚରାଚର ବିଶ୍ୱର ଏକମାତ୍ର ସ୍ୱାମୀ, ଯାହାଙ୍କ ଆଖି ମିଟିକାରେ ସହସ୍ର ପ୍ରପଞ୍ଚ-ସଂସାରର ସୃଷ୍ଟି ହୋଇଛି, ତାଙ୍କ ପାଇଁକି କିଏ ନିଜର ଆଉ କିଏ ବା ପର ? ତାଙ୍କ ପାଇଁକି କେହି ହେଲେ ପର ନୁହେଁ, ସବୁ ହେଉଛନ୍ତି ନିଜର । ସେ ନିଜ ଧାମରେ ରହି କ୍ରୀଡ଼ା କରୁଛନ୍ତି, ରସ ବରଷାଉଛନ୍ତି ଏବଂ ସୁଖ ଓ ସରସତା ଆଣି ଦେଉଛନ୍ତି । ସେ ନିଜେ ହିଁ ତରଳ ହୋଇଯାଇ ରସରୂପ ଧରନ୍ତି ଏବଂ ତାହାକୁ ଚାଖନ୍ତି । ସତେ ଯେପରି ସେ ନିଜର ପ୍ରତିବିମ୍ବ ସହିତ ଖେଳ ଖେଳିବାପାଇଁ ନିଜେ ହିଁ ମୁଖଟିକୁ ସଜାନ୍ତି । ସେ ନିଜ ମୁଖର ସୌନ୍ଦର୍ଯ୍ୟକୁ ବଢ଼ାନ୍ତି ଏବଂ ଦର୍ପଣରେ ନିଜ ପ୍ରତିବିମ୍ବକୁ ଦେଖି ଶିହରି ଉଠନ୍ତି । ତାଙ୍କର କେହି ପରକୀୟା ନୁହନ୍ତି କି ସ୍ୱକୀୟା ବି ନୁହନ୍ତି । ସେ ହେଉଛନ୍ତି ପର-ଆପଣା, ଏହି ଦୁଇ ଭାବରୁ ରହିତ । ସେ ସଚ୍ଚିଦାନନ୍ଦ ରସରୂପ ଓ ଆନନ୍ଦର ସନ୍ୟାଦର । ସେ ସକଳ ଗୁଣର ସିନ୍ଧୁ । ଆଉ ମଧ୍ୟ ସେ ଭାବ-ରସର ସାଗର । କ୍ରୀଡ଼ା ଲାଗି ସେ ଯେତେ ଯେତେ ପ୍ରେମୀମାନଙ୍କୁ ସୃଷ୍ଟି କରିଅଛନ୍ତି ସେମାନେ ସମସ୍ତେ ହେଉଛନ୍ତି ସ୍ୱକୀୟା । ଧର୍ମର ଅବରୋଧୀ କାମରେ ସ୍ୱକୀୟା-ଭାବ ସବ ଶ୍ରେଷ୍ଠ । ଧର୍ମବିରୁଦ୍ଧ କାମରେ ପରକୀୟା-ଭାବକୁ ଅତି ଆକର୍ଷଣୀୟ ଓ ପରମ ସୁଖକର ବୋଲି କୁହାଯାଇଥାଏ । ଶ୍ରୀଭଗବାନଙ୍କର କ୍ରୀଡ଼ା ଧର୍ମ ଓ ଅଧର୍ମ, ଏହି ଦୁଇଟିକୁ ଅତିକ୍ରମ କରିଥାଏ । ତାହା ତ ବିଶୁଦ୍ଧ ଆନନ୍ଦ ରୂପୀ । ତାହା ଆନନ୍ଦ ବର୍ଷା କରାଉଥାଏ ଏବଂ ବିମଳ ପ୍ରେମର ଧାରା ରୂପେ ବହି ଯାଉଥାଏ । ଲୌକିକ ଜଗତର ତାଙ୍କର ସମତା ନାହିଁ, ଉପମା ନାହିଁ । ଅଥଚ ତାଙ୍କର ବର୍ଣ୍ଣନା ଲୌକିକ ଭାଷାରେ କରିବାକୁ ହୋଇଥାଏ । ସେଥିପାଇଁ ଲୌକିକ ଉଦାହରଣମାନ ଦେବାକୁ ପଡ଼ିଥାଏ ।

ସଂସାରରେ ଦେଖାଯାଏ ଯେ ଅତ୍ୟନ୍ତ ପ୍ରଗାଢ଼ା ହେତୁରୁ ପ୍ରେମକୁ ଯେତେ ରହସ୍ୟମୟ ଭାବରେ ଗୋପନରେ ରଖା ଯାଇଥାଏ, ତାହା ସେତେ ଆକର୍ଷଣୀୟ

ହୋଇଥାଏ ଏବଂ ତାଭିତରେ ସେତେ ଉଲ୍ଲାସ ଭରି ଦେଇଥାଏ । ଯେତେ ବାଧା-ବିଘ୍ନ ପରେ ମିଳନ ହେବ, ତାହାର ସ୍ୱାଦୁ ସେତେ ବଢ଼ିବ । ନିଜ ଘରର ପ୍ରେୟସୀ ତ ନିଜର । ତାଙ୍କୁ ପାଇବାପାଇଁ କିଛି ପ୍ରଯତ୍ନର ଆବଶ୍ୟକତା ନାହିଁ କିମ୍ବା କିଛି ଅସୁବିଧା ନାହିଁ । କିନ୍ତୁ ପରକୀୟା ସହିତ ପ୍ରେମ କରିବାରେ କେତେ ଯେ ପ୍ରତୀକ୍ଷା କରିବାକୁ ପଡ଼ିଥାଏ ଏବଂ ତାଭିତରେ କେତେ ଯେ ନବ ନବ ଉତ୍କଣ୍ଠା ଭରି ରହିଥାଏ, ଏହାର ଅନୁଭବ କେବଳ ପ୍ରେମିକ ହିଁ ଜାଣିପାରନ୍ତି । ପରକୀୟା-ଭାବରେ ଅତ୍ୟଧିକ ଆକର୍ଷଣ ଅଛି ବୋଲି ଦେଖାଇବା ପାଇଁ ହିଁ କେତେକ ବୈଷ୍ଣବ ରାଧାଙ୍କ ପ୍ରେମରେ ପରକୀୟା-ଭାବର କଳ୍ପନା କରିଥାନ୍ତି । ଏହି ବିଷୟରେ ଗୋଟିଏ ଉଦାହରଣ ଅଛି । କେହି ଜଣେ ଭଗବାନଙ୍କ ଭକ୍ତ ଥିଲେ । ତାଙ୍କ ପତ୍ନୀ ଥିଲେ ସତୀ, ସାଧ୍ୱୀ ଓ ପତିପରାୟଣା । ଦିନେ ସେ (ପତ୍ନୀ) ଯମୁନାକୂଳକୁ ପାଣି ଆଣିବାପାଇଁ ଯାଇଥିଲେ । ଦୈବଯୋଗବଶତଃ ତାଙ୍କ ସ୍ୱାମୀଙ୍କର ବ ସେହି ସମୟରେ କୌଣସି କାମରେ ଯମୁନା କୂଳକୁ ଯିବାକୁ ପଡ଼ିଥିଲା । ଆଜି ତାଙ୍କ ପତ୍ନୀ ବଡ଼ ଚମତ୍କାର ଭାବରେ ନିଜର ରୂପ-ସଜ୍ଜା କରିଥିଲେ । ଦୂରରୁ ଦେଖି ସେ ତାଙ୍କୁ ଚିହ୍ନି ପାରିଲେ ନାହିଁ । ତାଙ୍କ ମନରେ ସେହି ଅତ୍ୟନ୍ତ ରୂପ-ଲାବଣ୍ୟମୟୀ ଯୁବତୀଙ୍କୁ ଦେଖିବାପାଇଁ ଇଚ୍ଛା ପ୍ରବଳ ହୋଇଉଠିଲା । ସେ ତାଙ୍କୁ ଦେଖିବାପାଇଁ ଶୀଘ୍ର ଶୀଘ୍ର ଆଗକୁ ବଢ଼ି ଚାଲିଲେ । ଆଗକୁ ବଢ଼ି ସେ ଦେଖିଲେ ଯେ ସେ ହେଉଛନ୍ତି ନିଜର ଧର୍ମପତ୍ନୀ । ଏହା ଦେଖି ତାଙ୍କୁ ଭାରି ଲାଜ ମାଡ଼ିଲା । ସେ ମୁଣ୍ଡ ତଳକୁ କରି ଚାଲିଗଲେ ।

ଏବେ ଏଠାରେ ଏହି ଭାବ ଉପରେ ବିଚାର କରିବାର କଥା ଯେ ପରକୀୟାଠାରେ ଉତ୍କଣ୍ଠା ଅଧିକ ହୁଏ । ଏହି ଉତ୍କଣ୍ଠା ଧର୍ମର ଅନୁକୂଳ ବା ଅଧର୍ମର ଅନୁକୂଳ, ସେ ପ୍ରଶ୍ନ ଆମେ ପ୍ରାକୃତ ପ୍ରାଣୀମାନେ କରିବାର କଥା ଏବଂ ତାହା କରିବା ଉଚିତ ମଧ୍ୟ । ଯେଉଁ ଲୀଳା ପ୍ରକୃତିକୁ ଅତିକ୍ରମ କରି ଯାଇଛି, ସେଥିରେ ତ ପ୍ରେମ-ଧର୍ମ ଏକ ବିଲକ୍ଷଣ ଧର୍ମ । ଯେଉଁମାନେ ପରକୀୟା-ଭାବ ନେଇ ଶ୍ରୀ ରାଧାକୃଷ୍ଣ-ଲୀଳାର ରସକୁ ବୁଝିଥାନ୍ତି, ତାହାର ଏକମାତ୍ର ଅର୍ଥ ହେଉଛି ଅତି ଉତ୍କଣ୍ଠା ସହିତ ଆନନ୍ଦର ଅନୁଭୂତି ପାଇବା । ଭଗବାନ ବ୍ୟାସଙ୍କୁ ଯେତେବେଳେ ଅନ୍ୟ କୌଣସି ଅତି ଭଲ ଉଦାହରଣଟିଏ ମିଳିଲା ନାହିଁ, ସେତେବେଳେ ତାଙ୍କୁ ନ ଏହି କଥା କହିବାକୁ ପଡ଼ିଲା, 'ସ୍ତ୍ରିୟା ବଶାନାମିବ ସାଧୂବାର୍ତ୍ତା' । ଯେମିତି ଲମ୍ପଟମାନଙ୍କର ସ୍ତ୍ରୀମାନଙ୍କ ସମ୍ବନ୍ଧିତ ହେଉଥିବା କଥାବାର୍ତ୍ତା ଖୁବ୍ ରସପୂର୍ଣ୍ଣ ଓ ଅନ୍ତର୍ମର୍ମୀ ହୋଇଥାଏ, ଠିକ୍ ସେମିତି ଭଗବାନଙ୍କ ଭକ୍ତମାନଙ୍କ ପାଇଁ ତାଙ୍କ ଲୀଳାଗୁଡ଼ିକ ନିତିନିତି ନୂଆ ନୂଆ ବୋଧ ହେଉଥାଏ । ଅତ୍ୟନ୍ତ ଉତ୍କଣ୍ଠା ଓ ତନ୍ମୟତାର ହେତୁ ଏଠାରେ ପରକୀୟା ସହିତ ରତିସୁଖର ଅନୁଭୂତି ରହିଥାଏ । ନ ହେଲେ ଯେଉଁ ଶ୍ରୀହରି ହେଉଛନ୍ତି ଚରାଚର ସାରା ବିଶ୍ୱର ସ୍ୱାମୀ, ତାଙ୍କ ଉପରେ ଆଉ ବା କିଏ ରହି ପାରିବ ?

ସୂତ କହୁଛନ୍ତି—"ହେ ମୁନିମାନେ ! ଏବେ ଶ୍ରୀରାଧାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଏବଂ ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କ ପ୍ରତି ନିତିଦିନ ନୂଆ ନୂଆ ଅନୁରାଗ ବଢ଼ିବାକୁ ଲାଗିଲା । ଏହି ପ୍ରେମର ପ୍ରବାହଟି ଏଭଳି ଯେ ଏହା ନିତିଦିନ ବଢ଼ି ବଢ଼ି ଚାଲିଥାଏ; ଏହା କେବେହେଲେ କମିଯାଏ ନାହିଁ । କେଉଁ ପର୍ଯ୍ୟନ୍ତ ଏହା ବଢ଼େ, ତାହାର କିଛି ସୀମା ନଥାଏ । ଏହା ହେଉଛି ଅସୀମ, ଅନନ୍ତ, ଅପାର ଓ ଅଜ୍ଞେୟ । ଏହା ବଢ଼ି ବଢ଼ି ଚାଲିଥାଏ ; ହଁ ବଢ଼ି ବଢ଼ି ଚାଲିଥାଏ । ବଢ଼ି ବଢ଼ି ଚାଲିବା ହିଁ ଏହାର ସ୍ୱଭାବ ।

ହଳଦିଆ ରଙ୍ଗର ପାଟ ଲୁଗାଟିଏ ଧରି ସରଳା ରାଧା ଚକିତ ଚାହାଣିରେ ଏପଟେ ସେପଟେ ଦେଖି ଦେଖି ନନ୍ଦଙ୍କ ଘରର ଦୁଆର ମୁହଁରେ ଆସି ଠିଆ ହୋଇଗଲେ । ଏବେ ତାଙ୍କର ଦଶା ଥିଲା ବିଚିତ୍ର । ଲାଜ ତାଙ୍କୁ ଭିତରକୁ ଯିବାପାଇଁ ବାଧା ଦେଉଥିଲା; ଅଥଚ ମନ ବାରମ୍ବାର ଅଗ୍ରସର ହୋଇ କହୁଥିଲା—"ଚାଲ, ଭିତରକୁ ଚାଲ ।" ଶ୍ୟାମସୁନ୍ଦର ନିଜ ମାଆଙ୍କ ହାତରେ କିଛି ପ୍ରେମର କଳି କରୁଥିଲେ । କୌଣସି ଗୋଟାଏ କଥା ଉପରେ ସେ ରାଗି ଉଠୁଥିଲେ । ତାଙ୍କ ମଧୁଭରା କଥାଗୁଡ଼ିକ ବାହାରକୁ ଶୁଣା ଯାଉଥିଲା । ସେଥିରେ ବୃଷଭାନୁ ନନ୍ଦିନୀଙ୍କ ପାଦ ଲାଖିଗଲା ସେଠାରେ ଅଟକିଗଲା । ତାଙ୍କର ଲୋଭୀ କାନ ଦିଓଟି ତନ୍ମୟ ହୋଇ ତାଙ୍କ (ଶ୍ୟାମଙ୍କ) କଥାଗୁଡ଼ିକୁ ଶୁଣୁଥିଲା । ହଠାତ୍ ତାଙ୍କ ମୁହଁରୁ ଗୁଣୁଁ ଗୁଣୁଁ ବାହାରି ଆସିଲା, 'ଶ୍ୟାମସୁନ୍ଦର ! ଏଇ ତୁମର ହଳଦିଆ ଲୁଗା ।'

"ଶ୍ୟାମସୁନ୍ଦର ତ ଆଜି ସକାଳୁ ହିଁ ଉଚାଟ ଅବସ୍ଥାରେ ଥିଲେ । ଜଣା ନାହିଁ ସେ କେତେଥର ବାହାରକୁ ଗଲେ ଏବଂ ଭିତରକୁ ଆସିଲେ । ସେହି ଶବ୍ଦଟି ଥିଲା ଅଦ୍ଭୁତ ଏବଂ ତାହା କାନକୁ ଭାରି ମିଠା ମିଠା ଲାଗୁଥିଲା । ତାହା ଶୁଣିବାମାତ୍ରେ ସେ ସବୁ କିଛି ଭୁଲିଯାଇ ଦୁଆରମୁହଁ ଆଡ଼କୁ ଧାଇଁ ଆସିଲେ । ହଠାତ୍ ତାଙ୍କୁ ଦେଖି ଶ୍ରୀରାଧା ଅପ୍ରତିଭ ହୋଇ ଉଠିଲେ । ସେ କହିଲେ—"ଏଇ ତୁମ ହଳଦିଆ ଲୁଗାଟି ନିଅ । କାଲି ଭୁଲ୍‌ରେ ମୋ' ସହିତ ଚାଲି ଯାଇଥିଲା ।"

ରାଧାଙ୍କ ଅତ୍ୟନ୍ତ କୋମଳ ହାତ ଥିଲା ଠିକ୍ ହଳଦିଆ ଲୁଗା ରଙ୍ଗର । ଶ୍ୟାମସୁନ୍ଦର ତାହାକୁ ଧରି କହିଲେ—"ଏଇଟା ତ ମୋ'ର ହଳଦିଆ ଲୁଗା ନୁହେଁ ।"

ସୁକୁମାରୀ କୀର୍ତ୍ତିରାଣୀଙ୍କ ଝିଅ ରାଧା ଖୁବ୍ ଲାଜେଇ ଯାଇ କହିଲେ—"ମାଆ କହିଲେ ପୁରୁଣା ଲୁଗାଟା କ'ଣ ଦେବୁ, ଯା' ନୂଆ ଲୁଗାଟିଏ ଦେଇଆ ।"

ସଂଭ୍ରମର ସହିତ ଶ୍ୟାମସୁନ୍ଦର ପଚାରିଲେ—"ତୁମେ କାଲିକାର କଥା ମାଆଙ୍କ ଆଗରେ କହିଦେଲ ନା କ'ଣ ?"

ବିବଶଭାବରେ ସ୍ୱରରେ ରାଧା କହିଲେ—"ମୁଁ ବା କାହିଁକି କହୁଥାନ୍ତି ? ଭୁଲ୍‌ରେ ତୁମ ହଳଦିଆ ଲୁଗାଟି ମୋ' ସାଥିରେ ଚାଲି ଆସିଲା । ଯେତେବେଳେ ସେ ପଚାରିଲେ, ସେତେବେଳେ ମତେ ସତ କହିବାକୁ ପଡ଼ିଲା । ମୁଁ ମିଛ କାହିଁକି ବା କହିଥାନ୍ତି ?"

ଶ୍ୟାମସୁନ୍ଦର କହିଲେ—"ତା' ହେଲେ ତୁମେ ବି ମୋ' ମାଆଙ୍କ ପାଖକୁ ଚାଲ । ତୁମକୁ ବି ମୋ' ମାଆ ନୂଆ ଶାଢ଼ୀ ଆଣିଦେବେ ।"

ଅଗ୍ରହର ସହିତ ଶ୍ରୀରାଧା କହିଲେ—"ନା, ମୁଁ ଭିତରକୁ ଯିବି ନାହିଁ । ମତେ ବଡ଼ ଲାଜ ମାଡ଼ୁଛି । ଏବେ ମତେ ଯିବାକୁ ଦିଅ ।" ଏହାକହି ସେ ଶ୍ୟାମସୁନ୍ଦରଙ୍କ ଉପରକୁ ହଳଦିଆ ଲୁଗାଟିକୁ ଫିଙ୍ଗିଦେଇ ପଳାଇ ଯିବାକୁ ବସିଲେ । ଶ୍ୟାମସୁନ୍ଦର କିନ୍ତୁ ପୂରା ବଳ ଖଟାଇ ତାଙ୍କୁ ଧରିନେଲେ ଏବଂ ଅନୁନୟ ଦେଖାଇ କହିଲେ, 'ନାହିଁ, ତୁମକୁ ମୋ' ରାଣ, ତୁମେ ଏହା କର ନାହିଁ । ତୁମକୁ ମାଆଙ୍କ ପାଖକୁ ଯିବାକୁ ହିଁ ପଡ଼ିବ ।" ଅନ୍ୟର ଅଧୀନ ହୋଇ ଯାଇଥିବା ହରିଣୀଟି ଭଳି କୀର୍ତ୍ତିନନ୍ଦିନୀ କିଶୋରୀ ରାଧା ଠିଆ ହୋଇଗଲେ । ଲାଜ ହେତୁ ତାଙ୍କ ଲାଲ୍ ଲାଲ୍ ଗାଲ ଦୁଇଟି ଆହୁରି ଲାଲ୍ ହୋଇ ଉଠିଲା । ସେ ଭିତରକୁ ଯିବାପାଇଁ ଚାହୁଁ ନଥିଲେ କି ମନ୍ଦା ତାଙ୍କ ଚିତ୍ତ ଶ୍ୟାମଙ୍କୁ ଛାଡ଼ିବାପାଇଁ ଚାହୁଁ ନଥିଲା । ଶେଷରେ ସେ ଶ୍ୟାମଙ୍କ ଆଗ୍ରହକୁ ଟାଳିଦେଇ ପାରିଲେ ନାହିଁ । ଶ୍ୟାମ ହାତଧରି ତାଙ୍କୁ ଭିତରକୁ ନେଇଗଲେ । ସେ ଛୁଇଁଟିଏ ଭଳି ବିବଶ ହୋଇ ଚାଲିବାକୁ ଲାଗିଲେ ।

ଶ୍ୟାମସୁନ୍ଦର ଶୀଘ୍ର ଶୀଘ୍ର କହିଲେ—"ମାଆ ! ମାଆ ! ଏଇ ସେଇ ଝିଅଟି ଯେ କାଲି ମୋ'ର ହଳଦିଆ ଲୁଗାଟି ବେଡ଼ାଇ ହୋଇ ଯାଇଥିଲା । ଆଜି ଏହାର ମାଆ ମୋର ପୁରୁଣା ଲୁଗା ଜାଗାରେ ନୂଆ ସୁନ୍ଦର ହଳଦିଆ ଲୁଗାଟିଏ ପଠାଇ ଦେଇଛନ୍ତି । ଦେଖ ତ ସତେ କେତେ ସୁନ୍ଦର ହୋଇଛି ।" ଏହା କହି ଶ୍ୟାମସୁନ୍ଦର ହଳଦିଆ ଲୁଗାଟିକୁ ମାଆଙ୍କ କୋଳକୁ ଫିଙ୍ଗିଦେଲେ । ମାଆ ସେହି ହଳଦିଆ ଲୁଗାଟି ଆଡ଼େ ଚାହିଁଲେ ବି ନାହିଁ । ହଳଦିଆ ଲୁଗାଟିକୁ ଆଣିଥିବା ସୁନାର ଫୁଟନ୍ତା କଢ଼ ସମାନ ରାଧାଙ୍କ ମୁଖ-ପଦ୍ମ ଉପରେ ତାଙ୍କ ଆଖି ପଡ଼ି ଯାଇଥିଲା । ତାଙ୍କ ସୌନ୍ଦର୍ଯ୍ୟ ଥିଲା ମାଧୁର୍ଯ୍ୟରେ ଭରା । ତାହା ଦେଖି ସେ ମନ୍ତ୍ରମୁଗ୍ଧ ହୋଇଯାଇଥିଲେ । ମାଆ ପରିହାସମିଶା ସ୍ୱରରେ କହିଲେ—"ଆଲୋ ଝିଅ ! ମୁଁ ଜାଣେ ଯେ ତୋ' ମାଆ ହେଉଛନ୍ତି ରାଣୀ ଏବଂ ତାଙ୍କର ଖୁବ୍ ଧନ-ସମ୍ପତ୍ତି । ଭକ୍ତ ବତ୍ସଳ ଏ ଯେ ଭକ୍ତମାନେ ତା'କୁ । ଯଦି ତୋ' ମାଆଙ୍କର ଲୁଗା ପଠାଇବାର କଥା, ତା'ହେଲେ ସେ ଗାଡ଼ିଏ ଦୁଇଗାଡ଼ି ଲୁଗା ପଠାଇ ଦେଇଥାନ୍ତେ । ଗୋଟିଏ ହଳଦିଆ ଲୁଗାକୁ ନେଇ ଆମର କିବା ଧର୍ମ ବିଗିଡ଼ି ଯାଉଥିଲା ?"

ଶ୍ରୀରାଧା ମାଆଙ୍କ କଥା ଉପରେ କିଛି ଉତ୍ତର ଦେଲେ ନାହିଁ । ସେ ଲାଜେଇ ଯାଇ ଭୂମି ଉପରେ ଆଖିରଖି ଚୁପ୍ ହୋଇ ଠିଆ ହୋଇ ରହିଲେ । ମନିରେ ମନିରେ ଆଡ଼

ଆଖିରେ ସେ ବଡ଼ କୌଶଳର ସହିତ ମାଆଙ୍କ ଦୃଷ୍ଟିରୁ ନିଜକୁ ବଞ୍ଚାଇ ଶ୍ୟାମସୁନ୍ଦରଙ୍କୁ ଦେଖି ନେଉଥିଲେ । ମାଆ ଯେତେବେଳେ ଦେଖିଲେ ଯେ ଝିଅଟି ଶରମ ଭରି ଲଜେଇଯାଉଛି, ସେତେବେଳେ ସେ ଛୁଟିଯାଇ ତା'କୁ ଧରିନେଲେ ଏବଂ ନିଜ ଛାତିରେ ଜାକି ଧରିଲେ ! ସେ ତା'ର ମୁହଁରେ ଚୁମା ଦେଇ ତାଙ୍କୁ ନିଜ କୋଳରେ ବସାଇଲେ ଏବଂ କହିଲେ—"ତୋ' ମାଆ ମୋ' ପାଇଁ କିଛି ପଠାଇ ନାହାନ୍ତି ?"

ଶ୍ରୀରାଧା ମାଆଙ୍କ କୋଳରେ ମୁଣ୍ଡ ତଳକୁ କରି ବସି ରହିଲେ । ମାଆଙ୍କ ହାତଥିଲା ନାଲ୍ ନାଲ ଓ ନରମ । ତାହା ଚନ୍ଦନ ଭଳି ଥିଲା ଥଣ୍ଡାଳିଆ । ସେ ସେହି ହାତରେ ରାଧାଙ୍କ ଚିବୁକକୁ ଟେକି ଧରି କହିଲେ—"କହ ତୋର ନାଁ କ'ଣ ?"

ଶ୍ରୀରାଧା ଅତି ଥର ସ୍ୱରରେ ସଙ୍କୋଚର ସହିତ ଆସ୍ତେ କରି କହିଲେ—"ରାଧା ।"

ରାଧା, ରାଧା, କେଡ଼େ ସୁନ୍ଦର ନାଁଟିଏ ! କେଡ଼େ ସରଳିଆ ଝିଅଟିଏ !' ମାଆ ନିଜକୁ ନିଜେ ଏକଥା କହିଦେଲେ । ସେ କିଛି କହିବାପାଇଁ ଚାହୁଁଥିଲେ ; କିନ୍ତୁ କ'ଣ ବା କହିବେ ? ଏହିସବୁ କଥା ଭାବିବାଲାଗି ତାଙ୍କୁ ସମୟ ନଥିଲା । ମୁହଁକୁ ଯାହା ଆସିଗଲା, ବଡ଼ ବ୍ୟସ୍ତଭାବରେ ସେ ତାହା କହିବାକୁ ଲାଗିଲେ: 'କୀର୍ତ୍ତିରାଣୀ ମୋ' ପୁଅ ପାଇଁ ନୂଆ ହଳଦିଆ ରଙ୍ଗର ଲୁଗା ପଠାଇଛନ୍ତି । ତାହାକୁ ମୁଁ ଅବା ଫେରାଇ ଦିଅନ୍ତି ; କିନ୍ତୁ ତାହା ଖରାପ ଲକ୍ଷଣର ସୂଚନା ଦେବ । ଘରକୁ ଆସିଥିବା ଲକ୍ଷ୍ମୀଙ୍କୁ ଫେରାଇ ଦେବା ଠିକ୍ ନୁହେଁ । ସେ ପୁଣି ମନେ ମନେ ଭାବିବାକୁ ଲାଗିଲେ—"ଏଇ ଝିଅଟି ମୋ'ର ବୋହୂ ହେଲେ ମୋ' ଜୀବନର ସକଳ ସାଧ ମେଣ୍ଟି ଯାଆନ୍ତା । ଝିଅଟି କେତେ ଭଲ ! କେତେ ସରଳିଆ !" ସେ ପୁଣି ଶ୍ରୀରାଧାଙ୍କୁ କହିଲେ—"ତୋ' ମାଆ ସତେ କେଡ଼େ ନିର୍ବୋଧ ମ ! ଝିଅ, ସତ ନା ମିଛ ? ସେ ରାଣୀ; କିନ୍ତୁ କାମ ତାଙ୍କର କେତେ ଉପରଠାଉରିଆ ! ଦେଖ୍ତ, ତୋ' ବାଳକୁ ସେ ଭଲ ଭାବରେ ବାନ୍ଧି ନାହାନ୍ତି । ଆ ଝିଅ । ମୁଁ ତୋ'ର ମୁଣ୍ଡ ବାନ୍ଧି ବେଣୀ ପକାଇ ଦିଏଁ ।"

ଯଶୋଦା ମାଆ ତାଙ୍କ ବେଣୀ ପକାଇ ଦିଅନ୍ତୁ ବୋଲି ଶ୍ରୀରାଧା ଚାହୁଁ ନଥିଲେ । କିନ୍ତୁ ସେ କରିବେ ବା କ'ଣ ? ଝିଅମାନଙ୍କର ତ କିଛି କହିବାର ଅଧିକାର ହିଁ ନାହିଁ । ସେ 'ହଁ' କରିପାରୁଛନ୍ତି ନା ନାହିଁ କରିପାରୁଛନ୍ତି ? ତାଙ୍କ ଉତ୍ତରକୁ ଅପେକ୍ଷା ନ କରି ମାଆ ତାଙ୍କ ମୁଣ୍ଡରୁ ଓଢ଼ଣୀଟି କାଢ଼ି ଦେଲେ; ବନ୍ଧା ହୋଇଥିବା ବାଳକୁ ଖୋଲି ଦେଲେ; ତେଲ-ପାନିଆ ନେଇ ଆସିଲେ ଏବଂ ତାଙ୍କୁ ନିଜ କୋଳରେ ବସାଇ ତାଙ୍କ ବେଣୀ ପକାଇବାକୁ ଲାଗିଲେ । ମୋତି ହାର ସେ ତାଙ୍କ ମଥାର ମାଙ୍ଗକୁ ସଜାଇ ଦେଲେ ଏବଂ କପାଳରେ ସୁନ୍ଦର ଲାଲ୍ ସିନ୍ଦୂରର ଟୀକା ଲଗାଇ ଦେଲେ । ସେ ତାଙ୍କୁ ଖୁବ୍ ଧାମିକା

ଲୁଗା ଓ ଅଲଙ୍କାରମାନ ପିନ୍ଧାଇଲେ ଏବଂ ପୁଣି ହାତ ଯୋଡ଼ି ଭଗବାନଙ୍କୁ ପ୍ରାର୍ଥନା କରି କହିଲେ—"ହେ ପ୍ରଭୁ କାର୍ତ୍ତି ନନ୍ଦନୀ ରାଧା ଯେମିତି ମୋ କାହ୍ନୁର ସ୍ତ୍ରୀ ହୋଇଯାଏ ।" ଇତି ମଧ୍ୟରେ ଆହୁରି ଅନେକ ଗୋପୀ ସେଠାକୁ ଆସିଗଲେ । ନନ୍ଦରାଣୀଙ୍କୁ ଏଭଳି ପ୍ରାର୍ଥନା କରୁଥିବାର ଦେଖି ସେମାନେ ହସି ଉଠିଲେ ଏବଂ କହିଲେ—"ଆଗୋ ନନ୍ଦରାଣୀ ! ଏମିତି ଶୁଝିଲାଟାରେ ନବନ୍ଧ କରିଦେଲ ଯେ ।"

ନନ୍ଦରାଣୀ ହସି ହସି କହିଲେ—"ଆରେଲ ଭଉଣୀମାନେ ! ନବନ୍ଧ କୁଆଡ଼ୁ ମୁଁ କଲି ? ଆମର ଏତେ ବଡ଼ ଭାଗ୍ୟ କାହିଁ ? ସେ ଅଛି ତ ଲକ୍ଷ୍ମୀ ପ୍ରତିମା । ଯଦି ସେ ମୋର ବୋହୂ ହୁଅନ୍ତା, ତା' ହେଲେ ଏହି କାହ୍ନୁର ଭାଗ୍ୟ ଜାଣ ଫିଟିଯାଆନ୍ତା । ଏଭଳି କଳା ପିଲାଟା ପାଇଁ କିଏ ବା ବାହାଙ୍କ ନବନ୍ଧ କରି ଆସିବ ?"

ସେମାନଙ୍କ ମଧ୍ୟରୁ ଜଣେ କହିଲା—"ବୋହୂ ଟିକିଏ ବଡ଼ ହେବ ।"

ସେମାନଙ୍କ ମଧ୍ୟରେ ଅଉ ଜଣେ ଚଞ୍ଚଳ ପ୍ରକୃତିର ଗୋପୀ ଥିଲା । ସେ କହିଲା—"ଭଲ ହେଲା, ବୋହୂ ବଡ଼ ହେଲେ ଭାଗ୍ୟ ବଢ଼େ । ସେ କାହ୍ନୁଟା ତ ଭାରି ଚଞ୍ଚଳ ପ୍ରକୃତିର । ବୋହୂ ବଡ଼ ହେଲେ ସେ କାନମୋଡ଼ି ସ୍ୱାକୁ ଶାସନ କରିବ ।"

ଏହା ଶୁଣି ସମସ୍ତେ ଖିଲ୍ ଖିଲ୍ ହୋଇ ହସି ଉଠିଲେ । ଶ୍ୟାମସୁନ୍ଦର ଏଭଳି ସରଳିଆ ପିଲାଟି ଭଳି ବସିଥିଲେ ଯେ ଜଣା ଯାଉଥିଲା, ସତେ ଯେମିତି ସେ କିଛି ଜାଣିପାରୁନାହାନ୍ତି କି ବୁଝିପାରୁନାହାନ୍ତି । ଶ୍ରୀରାଧା ମାଆଙ୍କ କୋଳରେ ବିବଶ ହୋଇ ବସି ରହିଥିଲେ ।

ରାଧା କହିଲେ—"ମୋ ମାଆ ଖୁବ୍ ବଚିଡ଼ିବେ । ସେ ମନେ କହିଥିଲେ ତୁ ଝୁରନ୍ତି ହଳଦିଆ ଲୁଗାଟି ଦେଇ ଫେରି ଆସିବୁ ।" ଯଶୋଦା ମାଆ ଝିଅଟିର ବିବଶତାକୁ ସମସ୍ତ ଧରି ଅନୁଭବ କରି ଅପୂଥିଲେ । ସେ କହିଲେ—"ଝିଅ ! ତୁ କିଛି ଖାଇନେ ।"

"ସମ୍ପୂର୍ଣ୍ଣ ସାହସ ସଞ୍ଚୟ କରି ବୃଷଭାନୁ ନନ୍ଦନୀ କହିଲେ—"ନାଇଁ ମାଆ ! ମୁଁ କିଛି ଖାଇବ ନାହିଁ ।"

ମାଆ ବୁଝିଗଲେ ଯେ ଝିଅ କିଛି ଖାଇବ ନାହିଁ ; ତେଣୁ ସେ ସେଥିପାଇଁ ଆଉ ଅଧିକ ଆଗ୍ରହ ଦେଖାଇଲେ ନାହିଁ । ସେ ଖଜା ଓ ଗୁଡ଼ଲର ଲଡ଼ୁଗୁଡ଼ିଏ ଆଣି ତାଙ୍କ ଅଣ୍ଟିରେ ଭରିଦେଲେ । ଭରପୂର ଅଣ୍ଟି ଓ ଭରପୂର ହୃଦୟ ଧରି ସେ ସେଠାରୁ ଉଠିଲେ ଏବଂ ହୁଲିଯିବାକୁ ଲାଗିଲେ । ମାଆ କହିଲେ—"ପୁଣି ଆସିବୁ, ପୁଣି ଆସିବୁ । ଏଇଟା ତୋ ନିଜ ଘର ବୋଲି ଭାବିବୁ ? ତୁ ଏତେ ଲାଜ କାହିଁକି କରୁଛୁ ମ ? କୀର୍ତ୍ତିରାଣୀ ଯେମିତି ତୋର ମାଆ, ମତେ ବି ଠିକ୍ ସେହିଭଳି ତୁ ଭାବିବୁ । ତୋ' ମାଆ ନ କହୁ ବୋଲି । ବାପା

ତୋର ଏବେ ବ କେଣ୍ଡିଆ ଚୋଟି, ମାଆ କିନ୍ତୁ ବୁଢ଼ୀ ହୋଇଗଲେଣି । କହ ପୁଣି ଆସିବୁ ନା ?"

ଶ୍ରୀକୃଷ୍ଣର ସୂଚନା ଦେବାକୁ ଯାଇ ରାଧା ମୁଣ୍ଡ ହଲାଇଲେ ଏବଂ ତୁରନ୍ତ ସେଠାରୁ ଚାଲିଗଲେ । ତାଙ୍କୁ କ'ଣ କହିବାକୁ ହେବ ଶ୍ୟାମ ତାହା ଠିକ୍ କରିପାରିଲେ ନାହିଁ । ସେତେବେଳେ ମାଆ କହିଲେ—"ଆରେ କାହ୍ନୁ ! ଝିଅକୁ ବାଟ ଦେଖାଇଦେ ତ ଦେଖି, ଭୁଲ୍ ନଯାଉ ଯେମିତି ।"

ସତେ ଯେମିତି ଅନ୍ଧକୁ ବୁଲିଚିଯାକ ଆଖି ମିଳିଗଲା ! ଶ୍ୟାମସୁନ୍ଦର ରାଧାଙ୍କ ପଛେ ପଛେ ଗଲେ । ଦୁହିଁଙ୍କ ମଧ୍ୟରେ କ'ଣ କ'ଣ କଥାବାର୍ତ୍ତା ହେବାକୁ ଲାଗିଲା, ତାହା ତ କେବଳ ଭଗବାନଙ୍କୁ ଜଣା ; କିନ୍ତୁ ଶ୍ୟାମସୁନ୍ଦର ରାଧାଙ୍କୁ ତାଙ୍କ ଘରପର୍ଯ୍ୟନ୍ତ ନେଇ ଛାଡ଼ି ଆସିଲେ । ଏବେ ଏହି ମିଳନରେ ରାଗ ଦୁହିଁଙ୍କ ହୃଦୟରେ ଜନ୍ମ ନେଲା । ଦୁହିଁଙ୍କ ଲାଗି ଆଠ ପହରଯାକ ଖାଲି ଗୋଟିଏ କାମ ହିଁ ରହିଗଲା । ଶ୍ରୀରାଧା ଆଠପହର ଚଉଷଠି ଘଡ଼ି ଶ୍ୟାମଙ୍କ ସହିତ କେମିତି ଭେଟ ହେବ, ଏହି କଥା ହିଁ ଭାବୁଥାନ୍ତି । ଆଉ ମଧ୍ୟ ଶ୍ୟାମ ସବୁବେଳେ ମନେ ମନେ ନାନା ପ୍ରକାର ଯୁକ୍ତି କାଢ଼ି ଚିନ୍ତା କରୁଥାନ୍ତି, ପ୍ରିୟତମା ରାଧାଙ୍କର ଦର୍ଶନ କେମିତି ମିଳିବ । ଏହି ଦୁହିଁଙ୍କର ଏଭଳି ଭାବିବାରେ କେତେ ଯେ ଅଗଣିତ ଲୀଳା ଘଟିଗଲା, ଏହା ହେଉଛି ଅନୁରାଗର ଅସରନ୍ତି କାହାଣୀ । ଅଗଣିତ କବି ଏହାର ବର୍ଣ୍ଣନା ଅନେକ ପ୍ରକାର କରିଛନ୍ତି ; କିନ୍ତୁ ତାହା ସବୁ ଅସମ୍ପୂର୍ଣ୍ଣ ଓ ଅଳ୍ପ । ତାହା ସବୁ ମହାସମୁଦ୍ରର ଛିଟିକା ଭଳି ବିନ୍ଦୁ ମାତ୍ର !

ପ୍ରେମ ପଥରେ ସଙ୍କେତର ବଡ଼ ମହତ୍ତ୍ୱ ଅଛି । ପ୍ରେମର ଭାଷା ସଙ୍କେତ-ଲିପିରେ ଲେଖା ଯାଇଥାଏ ବୋଲି କୁହାଯାଇଛି । ସଙ୍କେତ ଦୁଇ ପ୍ରେମୀଙ୍କ ମଧ୍ୟରେ ଦ୍ୱିଭାଷୀର କାମ କରିଥାଏ । ସେଥିପାଇଁ ସଙ୍କେତ ବରଗଛଟି ଅଛି ନନ୍ଦ ଗାଁ ଓ ବରସାନା ଗାଁର ଠିକ୍ ମଝିଅମଝି ଜାଗାରେ । ଚରୁରତାର ସହିତ ସଙ୍କେତ ଦିଆଯାଇଥାଏ । ତହିଁରୁ ଉଭୟ ସ୍ୱୀକୃତ ଅସ୍ୱୀକୃତ ପ୍ରକାଶ ପାଇଥାଏ ; କିନ୍ତୁ ଆଖିର ଯେଉଁ ସଙ୍କେତ ତାହା ହୋଇଥାଏ ଅନୁରାଗର ଅଥବା କ୍ରୋଧର । ବଚନରେ ଯେଉଁ ସଙ୍କେତ ହୋଇଥାଏ ତାହା ଉଭୟ ଚାଲିବାପାଇଁ କି ଏବଂ ଅଟକିବା ପାଇଁ କି । ସଙ୍କେତ-ଶାସ୍ତ୍ର ହେଉଛି ବଡ଼ ଗହନ ଶାସ୍ତ୍ର । ଏହାର ବର୍ଣ୍ଣନା କରି ହେବନାହିଁ । ଏହା ତ ଅଧ୍ୟୟନ ଓ ଅନୁଭବର କଥା । ଏହି ତନୋଟିର ଗୋଟିଏ ଗୋଟିଏ ଉଦାହରଣ ଦେଇ ମୁଁ ଏହି ବିଷୟଟିକୁ ଶେଷ କରିବି । ଶ୍ୟାମସୁନ୍ଦର ଗଉଡ଼ ପିଲମାନଙ୍କ ଘେରରେ ବସିଛନ୍ତି । ଗୋପୀମାନେ ଦହି ବିକିବାପାଇଁ ଯାଉଛନ୍ତି । ଶ୍ୟାମସୁନ୍ଦର ସମସ୍ତଙ୍କଠାରୁ କର ହିସାବରେ ଦହି ଗ୍ରହଣ କରିଥାନ୍ତି । ସେ ନିଜର ଅନୁରାଗକୁ ସମସ୍ତଙ୍କ ଆଗରେ ପ୍ରକାଶ କରିବାପାଇଁ ଚାହୁଁ ନଥାନ୍ତି । ରାଧିକୁ

ଗୋପନ କରି ରଖିବା ହେଉଛି ପ୍ରେମର ଗୋଟିଏ ଘୋଡ଼େଇ ହେବା ଗୁଦର । ଶରୀରକୁ ଲୁଗାପଟା ଓ ଅଳଙ୍କାର ଆଦରେ ଘୋଡ଼ାଇ ରଖିଲେ ତାହା ଶୋଭା ପାଇଥାଏ । ଠିକ୍ ସେମିତି ପ୍ରେମକୁ ଘୋଡ଼େଇ କରି ରଖିଲେ, ଗୁପ୍ତ କରି ରଖିଲେ ହିଁ ତାହା ବଢ଼ିଥାଏ । ନିର୍ଲଜତା ହେତୁ ତହିଁରେ ଅଶ୍ଳୀଳତା ଆସିଯାଇଥାଏ । ସମସ୍ତଙ୍କ ସାଥିରେ ଶ୍ରୀରାଧା ବି ଦେହ ବଳକାକୁ ଆସିଥାନ୍ତି । ସେ କିଛି କଥା କହନ୍ତି ନାହିଁ କିମ୍ବା ଶ୍ୟାମଙ୍କ ଆଡ଼କୁ ଚାହାନ୍ତି ବି ନାହିଁ । ଶ୍ୟାମ ତାଙ୍କ ସାଥିରେ ଥିବା ଜଣେ ସଖୀ ସହିତ କଥାବାର୍ତ୍ତା ହୁଅନ୍ତି । ସେହି ଯେଉଁ କଥାବାର୍ତ୍ତାଗୁଡ଼ିକ ହୁଏ ସେଗୁଡ଼ିକର କିଛି ହିଁ ଅର୍ଥ ନଥାଏ । ନାନା ଜାତିର ଯେଉଁ କଥା ପଡ଼େ ତାହାର ଅର୍ଥ କେହି ବୁଝନ୍ତି ନାହିଁ । ଶ୍ୟାମ କଥା କହୁଥିବା ଭିତରେ ହିଁ ପାଖରେ ଠିଆ ହୋଇଥିବା ଶ୍ୟାମଙ୍କୁ ଗୁରୁଗ୍ର ଦ୍ୱାର ସଙ୍କେତ ଦେଲେ, 'ଫେରିଲାବେଳେ ଆସିବ ।' କଥା ଏଇଠି ଶେଷ ହୋଇଗଲା ।

ଆଖିର ସଙ୍କେତଦ୍ୱାରା ଦୁଇ-ଦୁଇଟି ଆଖି ମିଶି ଚାରି ଆଖି ହୋଇଯିବାରେ ତାହା ମାଧ୍ୟମରେ ଖୁବ୍ କଥାବାର୍ତ୍ତା ହୋଇଯାଏ । ତାହାର ବ୍ୟାଖ୍ୟା କରିବା ଅସମ୍ଭବ ।

ବଚନରେ ସଙ୍କେତ ଦେବାର ଏକ ବିଚିତ୍ର ଢଙ୍ଗ ଅଛି । ବଚନରେ ଶ୍ୟାମ ସଙ୍କେତ ଦେଲେ ଯେ କାଲି ରାତି ଦ୍ୱିପ୍ରହରରେ ବଂଶୀବଟ ପାଖକୁ ଆସିବାକୁ ହେବ । ଆଖିରେ ସ୍ୱାମିନୀ ରାଧା ସ୍ୱୀକୃତି ଦେଇଦେଲେ । ସାରା ରାତି ଦୁହିଙ୍କ ନିଦ ଆସୁନଥାଏ । ଦୁହେଁ ଭାବୁଥାନ୍ତି କେବେ ସକାଳ ହେବ ଏବଂ କେବେ ମିଳନ ହେବ ; କିନ୍ତୁ ମିଳିବାଟା ବି ସହଜ ହେଉ ନଥାଏ । ଲୋକ-ଲଜ୍ଜା, ସମାଜର ବନ୍ଧନ ଏବଂ ଘରଲୋକମାନଙ୍କର ଘେର ଏସବୁ ପ୍ରତି ଧ୍ୟାନ ରଖିବାକୁ ପଡ଼ୁଥାଏ । ଲୋକମାନଙ୍କ ଭିତରେ ଥାଇ ଲୋକ ବ୍ୟବହାରକୁ ବି ତ ଏଡ଼ାଇ ଦେଇକରି ଯାଇ ହେବନାହିଁ ।

କୀର୍ତ୍ତିଦାଣୀଙ୍କ ଝିଅ ରାଧା ଆଜି ବଡ଼ି ସକାଳରୁ ହିଁ ଉଠିଲେ । ସେ ମୋତି ହାରକୁ କାଢ଼ି ନିଜ ପାଟଘରେ ଲୁଚେଇ ରଖିଲେ । ସେ ବାରମ୍ବାର ଅଗଣାକୁ ଆସୁଥାନ୍ତି ଏବଂ ପୁଣି ଘର ଭିତରକୁ ଯାଉଥାନ୍ତି । ସେ ଏଠି ସେଠି ଖୋଜା-ଖୋଜି କରୁଥାନ୍ତି । ଖଟ ତଳେ ଯାଇ ଖୁଡ଼୍-ଖାଡ଼୍ କରୁଥାନ୍ତି ଏବଂ ବିଛଣାକୁ ଝାଡ଼ା-ଝାଡ଼ି କରୁଥାନ୍ତି ।

ମାଆ ପଚାରିଲେ—"ଅଲୋ ଝିଅ ! ତୁ କ'ଣ ଖୋଜୁଛୁ ମ ? ରାଧା ମୁହଁରେ ଉତ୍ସୁର ଭାବ ରଖି କିଛି ଉତ୍ତର ଦିଅନ୍ତି ନାହିଁ । ତାଙ୍କ ବେକକୁ ଶୂନ୍ୟ ଥିବାର ଦେଖି ମାଆ ପଚାରନ୍ତି, 'ଅଲୋ, ତୋ' ମୋତି-ହାର କୁଆଡ଼େ ଗଲା ? କାଲି ସଞ୍ଜବେଳେ ତ ମୁଁ ନିଜେ ତାହା ପିନ୍ଧି ଥିବାର ଦେଖିଥିଲି । ତୁ କହୁନୁ ତାହାକୁ କେଉଁଠି ହଜାଇ ଦେଇ ଆସିଛୁ ଏବଂ ଡରି କରି କିଛି କହୁ ନାହୁଁ । ଏବେ ସତ କହ, କାହାକୁ ଦେଇ ଆସିଛୁ ବା କେଉଁଠି ପକାଇ ଦେଇଛୁ ।"

ଶ୍ରୀରାଧା କାନ୍ଦି କାନ୍ଦି କହିଲେ—"ମୁଁ କାହାକୁ ଦେଇ ନାହିଁ ।"

ମାଆ କଥା ଉପରେ ଜୋର୍ ଦେଇ କହିଲେ—"ଦେଇ ନାହୁଁ ତ ଆଉ ଗଲା କୁଆଡ଼େ ?"

ଶ୍ରୀରାଧା ମୁଖରେ ଚିନ୍ତାଗ୍ରସ୍ତ ଭାବ ଦେଖାଇ କିଛି ସମୟ ଧରି ଚିନ୍ତା କରି କହିଲେ— "କାଲି ମୁଁ ଯମୁନାକୁ ଯାଇଥିଲି । ସେଠାରେ ସମସ୍ତେ ଗାଧୁଆ ପାଧୁଆ କଲେ । ମୁଁ ବି ଗାଧୋଇଲି । ସେ ପର୍ଯ୍ୟନ୍ତ ତ ମୋର ମନେ ପଡ଼ୁଛି ଯେ ହାରଟି ମୋ' ବେକରେ ଥିଲା । ଜଣେ ଗୋପୀ ଆଖି ପିଟାଇ ତାହାକୁ ଚାହିଁଥିଲା । ସେଠାରେ ଆଉ କେତେ ଜଣ ବି ଥିଲେ । ଯଦି ତୁମେ ଲଳିତା ଓ ବିଶାଖାଙ୍କୁ ମୋ' ସହିତ ପଠାନ୍ତ, ତା'ହେଲେ ମୁଁ ତାକୁ ଚିହ୍ନି କରି ହାରକୁ ଠାବ କରି ପାରନ୍ତି ।"

ହାରଟି ଥିଲା ଖୁବ୍ ଦାମିକା । ମାଆ ତୁରନ୍ତ ଲଳିତା ଓ ବିଶାଖାଙ୍କୁ ରାଧାଙ୍କ ସାଥି କରିଦେଲେ । ଯିବା ସମୟରେ ରାଧା ମାଆଙ୍କୁ କହିଲେ—"ମାଆ ! ଯଦି ମୋର ଫେରିବାରେ କିଛି ଡେରି ହୋଇଯାଏ, ତା' ହେଲେ ତୁମେ କିଛି ଚିନ୍ତା କରିବ ନାହିଁ ।" ଏହା କହି ସେ ସଙ୍କେତ ଚଳୀ ଆଡ଼କୁ ଚାଲିଲେ । ସେ ନନ୍ଦଙ୍କ ଘରର ତଳବାଟ ଦେଇ କରି ବାହାରିଗଲେ ।

ଶୌନକ ପ୍ରଶ୍ନ କଲେ—"ନନ୍ଦଙ୍କ ଘର ଦେଇ ସଙ୍କେତ-ପଥ କେଉଁଠି ବା ଅଛି ? ଏଇଟା ତ ଓଲଟା ରାସ୍ତା ହୋଇଗଲା ।"

ସୂତ ଉତ୍ତର ଦେଲେ—"ପ୍ରେମ-ପଥ ଓଲଟା ହିଁ ହୋଇଥାଏ । ଏଥିରେ ପ୍ରେମୀ ପଥକୁ ଅନୁସରଣ କରେ ନାହିଁ । ପଥକୁ ହିଁ ପ୍ରେମୀର ଅନୁରୂପ ହେବାକୁ ପଡ଼ିଥାଏ । ହଁ, ଇଆଡ଼େ ଆଜି ଶ୍ୟାମସୁନ୍ଦର ସକାଳୁ ସକାଳୁ ଖୁବ୍ ଉଚ୍ଛନ୍ନ ହୋଇ ଉଠୁଥିଲେ । ଜଣା ନାହିଁ କାହିଁକି ସେ ବାରମ୍ବାର ଘର ଭିତରକୁ ଯାଉଥିଲେ ଏବଂ ପୁଣି ବାହାରକୁ ଆସୁଥିଲେ । ମାଆ ଶୀଘ୍ର ଶୀଘ୍ର ରୋଷେଇ ସାରି ଦେଲେ । ସେ ବଳଦେବଙ୍କୁ ଡାକି କହିଲେ—"ଆ ବାପା !ନାରାୟଣଙ୍କ ଭୋଗ ଲାଗିଗଲା । ତୁ ପ୍ରସାଦ ପାଇନେ ।"

ବଳଦେବ କହିଲେ—"ମାଆ ! ମତେ ଏବେ ଭୋକ ହେଉନାହିଁ । କାହ୍ନୁ ଆଗ ଖାଇଦେଉ, ମୁଁ ପରେ ଖାଇବି ।"

ଭଗବାନଙ୍କର ବା ଏଥିରେ କ'ଣ ଆପତ୍ତି ଥିଲା ? ସେ ଗଉଡ଼ମାନଙ୍କ ସାଥିରେ ଖାଇବାପାଇଁ ବସିଗଲେ । ସେ ଶୀଘ୍ର ଶୀଘ୍ର ବଡ଼ ବଡ଼ ଗୁଣ୍ଡାଟିମାନ କରି ଖାଇବାକୁ ଲାଗିଲେ । ମାଆ କହିଲେ—"କାହ୍ନୁ ! ଆରେ ବାପା ! ଏତେ ତରବର ହୋଇ ଖାଉଛୁ କାହିଁକି ? ଧୈର୍ଯ୍ୟଧରି ଧୀରେ ଧୀରେ ଖା ।"

ଏହି ସମୟରେ ନନ୍ଦଙ୍କ ଘର-ଦୁଆରମୁହଁ ପାଖରେ ବୃଷଭାନୁଙ୍କ ଝିଅ ରାଧା ସଖୀ ଲଳିତାଙ୍କୁ ଡାକ ଦେଇ କହିଲେ—"ଆଗୋ ଲଳିତେ ! ଟିକଏ ଠିଆ ହୁଅ ତ ! ମତେ ବି ଖଇର-ବଣ ଆଡ଼େ ଯିବାକୁ ହେବ !" ଯଦିଓ ଏହି ଶବ୍ଦଗୁଡ଼ିକ ଲଳିତାଙ୍କ ଉଦ୍ଦେଶ୍ୟରେ କୁହାଯାଇଥିଲା, ଏବଂ ଏଗୁଡ଼ିକରେ ଶ୍ୟାମଙ୍କ ସଂକେତର ନାମ-ଗନ୍ଧ ହିଁ ନଥିଲା, ତଥାପି ଘର ଭିତରେ ଖାଉଥିବା ଶ୍ୟାମଙ୍କ କାନ ଦୁଇଟି ବାହାର ଆଡ଼କୁ ଡେର ହୋଇ ରହିଥିଲା । ଏହି ସାଙ୍କେତିକ କଥାକୁ ଶୁଣିବାମାତ୍ରେ ହିଁ ସେ ଖାଇବା-ପିଇବା ସବୁକିଛି ଭୁଲିଗଲେ । ଯେଉଁ ଗୁଣ୍ଡାଟି ମୁହଁରେ ଥିଲା, ତାହା ମୁହଁରେ ହିଁ ରହିଗଲା । ସେ ଆଚମନ ନ କରି ଉଠିଗଲେ ।

ମାଆ ପଚାରିଲେ—"କାହ୍ନୁ ! କାହ୍ନୁ ! ଆରେ ପୁଅ ! କୁଆଡ଼େ ଯାଉଛୁ ? କଥା କ'ଣ ? ରୁଟି ଖାଇନେ । ଏତେ ତରବର କାହିଁକି ହେଉଛୁ ?"

ନନ୍ଦନନ୍ଦନ ଅତ୍ୟନ୍ତ ବ୍ୟଗ୍ରତା ପ୍ରକାଶ କରି କହିଲେ—"ଆଲୋ ମାଆ ! ଖୁବ ଗୋଟାଏ ଜରୁରୀ କାମ ମୋର ମନେ ପଡ଼ିଗଲା ।"

ମାଆ କହିଲେ—"ଅରେ ଶୁଣ୍ ତ । କ'ଣ ସେହି କାମ ? କାମ ପଛରେ ହେବ । ତୁ ଆଗ ରୁଟି ଖାଇନେ ।"

ଶ୍ୟାମ ରାଗି କରି କହିଲେ—"ତୁମର ଖାଲି ରୁଟିର ଚିନ୍ତା ! ଏବେ କେତେଟା ଡେରି ହୋଇଗଲାଣି । ଜଣେ ଗୋପୀ ମତେ କହିଥିଲା ଯେ ଆମର ସେହି ମାରେଣୀ ଗାଈଟା ଜଙ୍ଗଲରେ ଗରମ ହୋଇଛି । ଗରମ ହେବା ସମୟରେ ସେ ଊଆଁ-ଡେଇଁ କରିଥାଏ । ମୁଁ ଯଦି ନ ଯାଉଛି, ତା'ହେଲେ ସେ ସବୁ ଗାଈଙ୍କୁ ମାରିବ ।" ଏହାକହି ଶ୍ୟାମ ନିଜ ଠେଙ୍ଗାଟି ଧରିଲେ ଏବଂ ଅଣ୍ଟାରେ ବଂଶୀଟିକୁ ଖୋସି ବାହାରିଗଲେ । ମାଆ ସେପେଇଘରୁ ଉଠିକରି ଠିଆ ହୋଇଗଲେ ଏବଂ କହିଲେ—"ଅରେ, ଶୁଣ୍ ! ଗାଈ କୁଆଡ଼େ ଚାଲିଯିବ ନାହିଁ । ତୁ ରୁଟି ଖାଇନେ ।"

ଯେଉଁ ଗୋପୀମାନେ କଥାଟାକୁ ବୁଝି ପାରୁଥିଲେ, ସେମାନେ ସବୁ ଜାଣି ନେଇଥିଲେ । ନିଜ ନିଜର ହସକୁ ଚାପିରଖି ସେମାନେ କହିଲେ—"ମାଆ ! ଏବେ ତୁମେ ତାଙ୍କୁ ଶୀଘ୍ର ହିଁ ଯିବାକୁ ଦିଅ । ସେହି ଗାଈ ବଡ଼ ଓଲେଇ, ବଡ଼ ମାରେଣୀ । ସେ ଯଦି ନ ଯାଉଛି, ତା' ହେଲେ ସେ କୁଆଡ଼େ ପଳାଇଯିବ ।"

ସେହି ଗୋପୀମାନଙ୍କର ଆଖିମିଟିକାଗୁଡ଼ିକୁ ଶ୍ୟାମସୁନ୍ଦର ଆଖିମିଟିକାରେ ଉତ୍ତର ଦେବା ଛଳରେ କଟାକ୍ଷ କଲେ ଏବଂ ଅତିଶୀଘ୍ର ଯାଇ ଶ୍ରୀରାଧାଙ୍କ ସାଥିରେ ମିଶିଲେ । ଏହା ହେଉଛି ବଚନର ସଂକେତ । ଏଠାରେ କେହି ଜଣେ କିଛି କଥା କହିଲା ତ କାହାକୁ

ଲକ୍ଷ୍ୟ କରି କହୁନ୍ତି ଏବଂ ଆଉ କେହି ଜଣେ ତାହାକୁ ବୁଝିନେଲେ । ଏହାର ଆଉ ବି ଗୋଟିଏ ଉଦାହରଣ ଦିଅନ୍ତି ।

"ଯମୁନା-କୂଳରେ ଭାରି ଲୋକ-ଗହଳି । ସ୍ତ୍ରୀ, ପୁରୁଷ, ବାଳକ, ବାଳିକା, ଯୁବକ, ଯୁବତୀ, ବଡ଼ ବଡ଼ ବୁଢ଼ା-ବୁଢ଼ୀ ସମସ୍ତେ ସେଠି ଅଛନ୍ତି । ବୃଷଭାନୁଙ୍କ ଝିଅ ମଧ୍ୟ ଗାଧୋଇବା ପାଇଁ ଯାଉଛନ୍ତି । ଇଆଡ଼େ ଗୋପାଳମାନଙ୍କ ଘେରରେ ଥାଇ ନନ୍ଦଙ୍କ ପୁଅ ବି ଆସୁଛନ୍ତି । ରାଧା ଥିଲେ କୁଳବଧୂ ରାଜକୁମାରୀ । ସେ ତ ସମସ୍ତଙ୍କ ଆଡ଼େ ଆଖି ଉଠାଇ ଚାହିଁ ପାରି ନଥାନ୍ତେ । ସେ ଚାଲୁଥିବା ଅବସ୍ଥାରେ ଲଳିତାଙ୍କୁ ଡାକି କହିଲେ—"ଆଗୋ ଲଳିତେ ! କ'ଣ ଆଗକୁ ଚାଲିଗଲେ କି ? ଅରେ ଆଜି ସନ୍ଧ୍ୟାବେଳକୁ ଯେମିତି ହେଲେ ନିଶ୍ଚୟ ଆସିବ । ସେଠାରେ ଲଳିତା ନଥିଲେ କିମ୍ବା ବିଶାଖା ବି ନଥିଲେ । ରାଧା ଶୂନ୍ୟରେ ଏହି ଶବ୍ଦଗୁଡ଼ିକୁ କାହା ଉଦ୍ଦେଶ୍ୟରେ କହିଦେଲେ ।"

ଇଆଡ଼େ ଶ୍ୟାମସୁନ୍ଦର ସବୁ ବୁଝିଗଲେ । ସେ କହିଲେ—"ଆରେ ଭାଇ ! ଅରେ ସୁଖମନବାଲା ଅଛୁ, ତୁ ରାଗି ଗଲୁ କି ? କ'ଣ ? ସନ୍ଧ୍ୟାବେଳେ ମୁଁ ତୋ' ଘରକୁ ନିଶ୍ଚୟ ଆସିବ । ସ୍ତ୍ରୀ, ପୁରୁଷ, ବୁଢ଼ା, ବୁଢ଼ୀ ସମସ୍ତେ ଏହି କଥା ଶୁଣୁଥିଲେ । କେଉଁ ସୁଖମନବାଲା ପ୍ରତି ଲକ୍ଷ୍ୟ କରି ଏକଥା କୁହାଯାଉଥିଲା, ସେଥିପ୍ରତି ଧ୍ୟାନ ଦେବାଲାଗି କାହାର କ'ଣ ବା ଦରକାର ? ଯେଉଁ ଗଉଡ଼ମାନେ ଭିତର କଥା ଖୋଲି ବାହାର କରିବାର ଲୋକ, ସେମାନେ ସବୁ ବୁଝିଗଲେ । ସେମାନେ ହସି ହସି କହିଲେ—"ଭାଇ କାହ୍ନୁ ! ସୁଖମନବାଲା ତ ଏଠି ନାହିଁ, ଆଜି ବି ଆସିନାହିଁ । ହଁ ସୁଖମନବାଲା ନିଶ୍ଚୟ ଅଛୁ ।" ଏହା ଶୁଣି ଶ୍ୟାମସୁନ୍ଦର ରାଗି ଉଠିଲେ ଏବଂ କହିଲେ—"ଆରେ ! ତୁମ୍ଭେମାନେ ବଡ଼ ଧୂର୍ତ୍ତଲୋକ । ଚାଲ, ଆମେ ଯିବା ।" ସମସ୍ତେ ସେଉଠୁ ଘରକୁ ଆସିଲେ । ସନ୍ଧ୍ୟା ହେବା ଭିତରୁ ବୃଷଭାନୁଙ୍କ ଘରେ ଦୁହିଙ୍କର ମିଳନ ହେଲା ।

ଏହିଭଳି ଭାବରେ ଦୁଇ ପକ୍ଷରୁ ଦିନକୁଦିନ ନୂଆ ନୂଆ ଅନୁରାଗ ବଢ଼ିବାକୁ ଲାଗିଲା । ପ୍ରେମକୁ ଲୁଚାଇ କରି ରଖିଲେ ତାହା ଲୁଚିଯାଏ ନାହିଁ । ମନର ଭାବ ବିନା କଥାରେ ବି ବାୟୁମଣ୍ଡଳରେ ପ୍ରସାରିତ ହୋଇ ଯାଇଥାଏ । ଗଉଡ଼-ଗଉଡ଼ୁଣୀମାନଙ୍କ ମଧ୍ୟରେ ଚୁପ୍ ଚୁପ୍ ଓ କାନମୂଳେ ଫୁସ୍-ଫାସ୍ କଥାବାର୍ତ୍ତା ହେବାକୁ ଲାଗିଲା । ଦୁହିଙ୍କ ପକ୍ଷରୁ ଯେ ଅନୁରାଗ ବଢ଼ି ବଢ଼ି ଚାଲୁଛି, ଏ କଥା ନନ୍ଦ, ବୃଷଭାନୁ, କୀର୍ତ୍ତିରାଣୀ ଓ ଯଶୋଦା କାହାର ପାଖରେ ଆଉ ଅଛପା ରହିଲା ନାହିଁ । ନନ୍ଦ ତାଙ୍କର ସମୁଦ୍ଧି ହୁଅନ୍ତୁ ବୋଲି ବୃଷଭାନୁ ଅବଶ୍ୟ ଚାହୁଁଥିଲେ । ନନ୍ଦ ଓ ଯଶୋଦାଙ୍କର ବି ହୃଦୟର ଇଚ୍ଛା ଥିଲା ଯେ ରାଧା ସେମାନଙ୍କର ବୋହୂ ହୁଅନ୍ତୁ । ଦୁଇପକ୍ଷରୁ ଦେଣ-ନେଣ ଓ ଯୋଗାଯୋଗ ମଧ୍ୟ ଆରମ୍ଭ ହୋଇଗଲା । ପର୍ବ ହେବା ମାତ୍ରେ ଯାହା କିଛି ପଠାଯିବାର କଥା, ତାହାସବୁ ବି ପଠା ଯିବାକୁ

ଲାଗିଲା । ଜଣା ଯାଉଥିଲା, ବୃଷଭାନୁ ହେଉଛନ୍ତି ନନ୍ଦଙ୍କଠାରୁ ବେଶି ଧନୀ । ସାକ୍ଷାତ୍ ଲକ୍ଷ୍ମୀ ଯେତେବେଳେ ତାଙ୍କ ଝିଅ ରୂପରେ ଅବତାର ନେଇଥିଲେ, ସେତେବେଳେ ତାଙ୍କଠାରୁ ବଳି କିଏ ଅଛି ବା କିଏ ଅଧିକ ଧନୀ ହୋଇପାରନ୍ତା ? ଆଠ ସିଦ୍ଧି ଓ ନଅ ନିଧି ନିରନ୍ତର ହାତଯୋଡ଼ି ତାଙ୍କ ସେବାଲାଗି ଠିଆହୋଇ ରହୁଥିଲେ । କେତେ ଲୋକ ଏମିତି ଅଛନ୍ତି, ଯେଉଁମାନେ ଦୁଇ ଜଣଙ୍କ ଭିତରେ କିଛି ଗୋଟାଏ କାମ ହେବାକୁ ଥିଲେ, ସେମାନେ କାନରେ ନାନାକଥା ଫୋଡ଼ି ତାହାକୁ ମଝିରୁ ଭାଙ୍ଗି ଦେଇଥା'ନ୍ତି । କେହି ଆସି କୀର୍ତ୍ତିଦାଙ୍କୁ କହିଦେଲା—"ନନ୍ଦଙ୍କ ଘରେ ତ ଭଲରେ ଚଳିବା ଲାଗି ଦାନା-କନା ନାହିଁ । ତୁମେ ନିଜ ଝିଅର ବାହାଘର ତାଙ୍କ ପୁଅ ସାଥିରେ କିପରି କରିବାକୁ ଚାହୁଁଛ ?"

ଏବେ କୀର୍ତ୍ତିଦାଣୀ ଟିକିଏ ଦବିଗଲେ । ସେ ତ ଘର, ବର ଦୁଇଟିଯାକ ନିକଷ ପଥରେ ଦେଖିବାକୁ ଚାହୁଁଥିଲେ । ଏ ପର୍ଯ୍ୟନ୍ତ ଲୋକେ ବରଠାରେ ଦୋଷ ବାଛି ଆଣୁଥିଲେ । ସେମାନେ କହୁଥିଲେ—ବରର ରଙ୍ଗଟା କଳା । ସେ ଚୋରି ବି କରେ । ପୁଣି ସେ ଚାଲି କାଟାରେ ବଙ୍କା । ସେ ଯାହାହେଉ, ବର ତ ରାଜାଙ୍କ ପୁଅ । ବର ଯେତେ ଅଙ୍କାବଙ୍କା ବା ସିଧା ହେଉ ପଛକେ, ଘର ତ ଭଲ ; କିନ୍ତୁ ଯେତେବେଳେ ଘର ବିଷୟରେ ସନ୍ଦେହ ଆସିବାକୁ ଲାଗିଲା, ସେତେବେଳେ ସେ ପଛକୁ ହଟିଗଲେ । ସେ ବୃଷଭାନୁଙ୍କୁ କହିଲେ— "ମୁଁ ମୋ' ଝିଅକୁ ଏଭଳି ଗରିବ ଘରେ ବାହା ଦେବି ନାହିଁ ।"

ବୃଷଭାନୁ ବହୁତ ବୁଝାଇ କହିଲେ—"ତୁମକୁ କିଏ ଏ କଥା କହି ଦେଇଛି ? ନନ୍ଦରାଜ ତ ଆମର ସବୁ ଗୋପାଳମାନଙ୍କର ରାଜା । ଟଙ୍କା ପଇସା ବେଶି ଥିଲେ କ'ଣ କେହି ଧନୀ ହୋଇଯାଏ ? ତାଙ୍କ କୁଳ କେତେ ବଡ଼ !" କିନ୍ତୁ ସ୍ତ୍ରୀର ଜିଦ୍ ଆଗରେ ବ୍ରହ୍ମା ବି ହାର ମାନିଯାଇଛନ୍ତି । କୀର୍ତ୍ତିଦାଣୀ ମାନିଲେ ନାହିଁ, ଜମା ମାନିଲେ ନାହିଁ । ଶେଷରେ ବୃଷଭାନୁ ତାଙ୍କୁ ପଚାରିଲେ—"ଆଚ୍ଛା, ତୁମର କେମିତି ବିଶ୍ୱାସ ଆସିବ ଯେ ସେ ଆମଠାରୁ ଅଧିକ ଧନୀ ବୋଲି ?"

କୀର୍ତ୍ତିଦାଣୀ କହିଲେ—"ଦେଖ, ମୋ' ପାଖରେ ଏହି ପାଞ୍ଚଟି ଖୁବ୍ ଦାମିକା ମୁକ୍ତା ଅଛି । ଏଭଳି ମୁକ୍ତା ଯଦି ତାଙ୍କ ଘରେ ଦଶଟି ହେଲେ ଥାଏ, ତା'ହେଲେ ମୁଁ ସେଠାରେ ମୋ' ଝିଅକୁ ବାହା ଦେବି । ତାହା ନ ହେଲେ ମୁଁ ମୋ' ଝିଅ ଲାଗି ଅନ୍ୟ ବର ଖୋଜିବି ।"

ବୃଷଭାନୁ କହିଲେ—"ଆଚ୍ଛା ତୁମେ କୌଣସି ଗୋଟିଏ ବଡ଼ ପର୍ବରେ ସେଗୁଡ଼ିକ ତାଙ୍କ ଘରକୁ ପଠାଇବ ଏବଂ କହି ପଠାଇବ ଯେ ସେ ବି ଝିଅ ଲାଗି ସେହିଭଳି ମୁକ୍ତା ପଠାନ୍ତୁ ।" କୀର୍ତ୍ତିଦାଣୀ ଏହି କଥାକୁ ମାନିଗଲେ । ପର୍ବ ଦିନଟିଏ ଦେଖି ସେ ମୁକ୍ତା ପାଞ୍ଚଟି

ନନ୍ଦଙ୍କ ଘରକୁ ପଠାଇଲେ ଏବଂ ଏହିଭଳି ମୁକ୍ତାର ମାଳ ଦିଅ ପାଇଁ ପଠାଇବାଲାଗି ଖବର ଦେଲେ ।

ନନ୍ଦ ଏହି ଖବର ଶୁଣି ବଡ଼ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସେ ଏତେ ବଡ଼ ବଡ଼ ମୁକ୍ତା କେମା ଦେଖି ନଥିଲେ । ମାଳା କଥା କ'ଣ କହିବା, ତାଙ୍କ ପାଖରେ ତ ଏଭଳି ଗୋଟିଏ ହେଲେ ବି ମୁକ୍ତା ନଥିଲା । ଯଶୋଦା ମଧ୍ୟ ବଡ଼ ଉଦାସ ହୋଇ ଉଠିଲେ । ଏହି ସମୟରେ ଶ୍ୟାମସୁନ୍ଦର ଆସିଗଲେ । ସେ ମାଆଙ୍କୁ ଉଦାସୀ ଥିବାର ଦେଖି ତାଙ୍କ ଦେହରେ ଲେଟିପଡ଼ି କହିଲେ—"ମାଆ ! ମାଆ ! ତୁମ ମନରେ ଦୁଃଖ କାହିଁକି ?"

ନିରାଶାର ସ୍ୱରରେ ମାଆ କହିଲେ—"ଆରେ ବାପା ! କ'ଣ ବା ମୁଁ କହିବି ? ଯେମିତି ହେଲେ ମତେ ଏହି ସୁନ୍ଦର ବୋହୂଟି ମିଳିଯିବ ବୋଲି ମୋର କେତେ ଆଶା ଥିଲା । କିନ୍ତୁ ଏବେ ଦେଖୁଛୁ, ମୋ' ହାତରୁ ବୋହୂ ଖସି ଯାଉଛି । ତାଉପରେ ମତେ ଯେଉଁ ଅପମାନ ମିଳୁଛି, ତାହା ତ ଅଲଗା କଥା ।"

ସମ୍ଭ୍ରମର ସହିତ ଶ୍ୟାମସୁନ୍ଦର କହିଲେ—"କାହିଁକି ? କାହିଁକି ? କ'ଣ ହେଲା ? କ'ଣ ହେଲା ?"

ମାଆ କହିଲେ—"ଆରେ ବାପା ! ହେବ ଆଉ କ'ଣ ? ତୋ' ଶଶୁର-ଘରୁ ଏହି ମୁକ୍ତାଗୁଡ଼ିକ ଆସିଛି । ରୁକ୍ମିଣୀ କହି ପଠାଇଛନ୍ତି ଏହିଭଳି ମୁକ୍ତାର ମାଳା ଦିଅ ଲାଗି ପଠାଇବା ପାଇଁ । ଆମର ତ ଏଠି ଏହିଭଳି ଗୋଟିଏ ହେଲେ ମୁକ୍ତା ନାହିଁ ।"

ଶ୍ୟାମସୁନ୍ଦର ଅତି ସରଳ ଭାବ ଦେଖାଇ କହିଲେ—"ମାଆ ! ଏଥିରେ ତା'ହେଲେ ଚିନ୍ତା କରିବାର କ'ଣ ଅଛି ? ତୁମେ ଏଗୁଡ଼ିକୁ କ୍ଷେତରେ ବୁଣିଦିଅ । ଏଗୁଡ଼ିକ ବହୁତ ହୋଇଯିବ ।"

ଏହାଶୁଣି ଶୁଖିଲା ହସ ଫୁଟାଇ ମାଆ କହିଲେ—"ଆରେ ବୋକା ! ତୁ ତ ପାଗଳ ଭଳି କଥା କହୁଛୁ । ଏଗୁଡ଼ିକ ତ କୌଣସି କୌଣସି ହାତୀ ମୁଣ୍ଡରେ ଥାଏ । କ୍ଷେତରେ କ'ଣ ଏହାର ଅମଦାନି ହୁଏ ?"

ଶ୍ୟାମସୁନ୍ଦର କହିଲେ—"ଆଲୋ ମାଆ ! ବୃନ୍ଦାବନ-ଭୂଇଁର ଏଭଳି ପ୍ରଭାବ ଯେ ଯାହା କେଉଁଠି ହେଲେ ଅମଦାନି ହୋଇପାରିବ ନାହିଁ, ତାହା ଏଠି ଅମଦାନି ହୋଇ ପାରିବ । ତୁମକୁ ତ କିଛି ଜଣା ନାହିଁ । ତୁମକୁ ତ ସେପେଇବାସ ଓ ବାଛନ ମଜାମଜିରେ ସମୟ ମିଳୁ ନାହିଁ । ଦେଖ, ମୁଁ ଏଗୁଡ଼ିକୁ ଏଇ ସଙ୍ଗେ ସଙ୍ଗେ ବୁଣି ଦେଉଛି ।" ଏହା କହି ଶ୍ୟାମ ମୁକ୍ତା ପାଞ୍ଚଟି ଉଠେଇ ନେଲେ । ନନ୍ଦ ବି ରାଗିଗଲେ । କାହିଁ ଏଗୁଡ଼ିକୁ ଯଦି ସେ ହଜାଇ ଦେବ, ତା'ହେଲେ ଆମର ନିନ୍ଦା ହେବ ; କିନ୍ତୁ ଶ୍ୟାମ ମାନିଲେ ନାହିଁ । ସେ

ମୁକ୍ତାଗୁଡ଼ିକୁ ଧରି ଯମୁନା-କୂଳକୁ ଗଲେ । ସେଠାକୁ ଯାଇ ଭଗବାନ ଖେଳ ଖେଳ ବାଲିରେ କିଆରୀମାନ ତିଆରି କଲେ ଏବଂ ତହିଁରେ ଏହି ମୁକ୍ତାଗୁଡ଼ିକୁ ପୋତିଦେଲେ । ସେ ଯମୁନାରୁ ପାଣି ଆଣି ସେଥିରେ ଦେଲେ । ସମସ୍ତେ ବଡ଼ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ ସେଗୁଡ଼ିକରୁ ତୁରନ୍ତ ଗଛ ବାହାରିଲା ଏବଂ କଥା କହୁଁ କହୁଁ ସେହି ଗଛଗୁଡ଼ିକ ବଡ଼ ବଡ଼ ଗଛରେ ପରିଣତ ହୋଇଗଲା । ସେହି ଗଛଗୁଡ଼ିକରେ ମୋଟା ମୋଟା ଫଳ ଧରିଲା ଏବଂ ସେହି ଫଳଗୁଡ଼ିକ ପାଚି ଫାଟିଗଲା । ସେଗୁଡ଼ିକରୁ ମୂଳ ମୁକ୍ତାଠାରୁ ବି ଆହୁରି ବଡ଼ ବଡ଼ ମୁକ୍ତାମାନ ବାହାରିଲା । ସେଗୁଡ଼ିକୁ ପୁଣି ଶ୍ୟାମସୁନ୍ଦର ଅନ୍ତରି ଅନେକଗୁଡ଼ିଏ କିଆରି କରି ତହିଁରେ ବୁଣିଦେଲେ । ସେଗୁଡ଼ିକରୁ ପୁଣି ଗଛ ବାହାରିଲା, ଗଛ ହେଲା, ଫଳ ଫଳିଲା ଏବଂ ପ୍ରଚୁର ମୁକ୍ତା ବାହାରିଲା । ସେ ନନ୍ଦଙ୍କୁ କହିଲେ—"ବାପା ଏବେ ଶଗଡ଼ ମଗାଇ ଦିଅନ୍ତୁ ଏବଂ ଦଶ-କୋଡ଼ିଏଟା ଶଗଡ଼ରେ ମୁକ୍ତା ଭରି ବୃଷଭାନୁଙ୍କ ଘରକୁ ପଠାଇଦିଅନ୍ତୁ । ଆଉ ତାଙ୍କୁ ଖବର ଦେଇ କହନ୍ତୁ—ଏବେ ତ ଆମ ଘରେ ମୁକ୍ତାର କିଆରି ହେବାକୁ ଲାଗିଲାଣି । ଆପଣ ଯେତେ ଚାହାନ୍ତି ସେତେ ମୁକ୍ତା ମଗାଇ ନିଅନ୍ତୁ ।"

ନନ୍ଦ ଆନନ୍ଦରେ ଶଗଡ଼ଗୁଡ଼ିକରେ ମୁକ୍ତାକୁ ଭରି ବୃଷଭାନୁଙ୍କ ଘରକୁ ପଠାଇଦେଲେ । ମୁକ୍ତାର ଶଗଡ଼ଗୁଡ଼ିକୁ ଦେଖି କୀର୍ତ୍ତିଦାଣୀ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ମନରେ ସନ୍ଦେହ ଲାଗି ଆଉ କମା କାଗା ରହିଲା ନାହିଁ । ଠିକଣା ସମୟରେ ଶ୍ୟାମସୁନ୍ଦର ଶ୍ରୀରାଧାଙ୍କୁ ବାହା ହେଲେ ।"

କେହି କେହି କୁହନ୍ତି ଯେ ଶ୍ୟାମସୁନ୍ଦର ଅବଶ୍ୟ ଶ୍ରୀରାଧାଙ୍କୁ ବାହା ହେଲେ; କିନ୍ତୁ ସେ ଛଦ୍ମ-ବେଶ ଧରି ତାହା କଲେ । କୌଣସି ଗୋପାଳ ଘୋର ତପସ୍ୟା କରି ଭଗବାନଙ୍କୁ ଏହି ବର ମାଗିଥିଲେ, 'ଶ୍ରୀରାଧା ଯେମିତି ମୋର ସ୍ତ୍ରୀ ହୁଅନ୍ତୁ ।' ଭଗବାନ ବର ଦେଇ କହିଲେ—"ଠିକ୍ କଥା ସେ ତ ତୁମର ସ୍ତ୍ରୀ ନିଶ୍ଚୟ ହେବେ ; କିନ୍ତୁ ସେ ତୁମ ସ୍ତ୍ରୀ ହୋଇ କରି ମଧ୍ୟ ମୋର ହୋଇ ରହିବେ ।"

ବ୍ରହ୍ମା ମୋହିତ ହୋଇ ରହିଥିବା ସମୟରେ ଏକ ବର୍ଷ ଧରି ଶ୍ୟାମସୁନ୍ଦର ବାଛୁରୀମାନଙ୍କର ଓ ଗୋପାଳମାନଙ୍କର ରୂପରେ ରହିଥିଲେ । ବ୍ରଜର ସବୁ ଗୋପାଳ ଓ ବାଛୁରୀ ବ୍ରହ୍ମାଙ୍କ ଲୋକରେ ଅଚେତନ ହୋଇ ପଡ଼ିରହିଥିଲେ । ସେହି ସମୟରେ ଭଗବାନ ଗୋପାଳ ରୂପ ଧରି ସେହି ରୂପରେ ଶ୍ରୀରାଧାଙ୍କୁ ବାହା ହୋଇଥିଲେ । ବାହାର ଦୃଷ୍ଟିରେ ସେ ଲୋକମାନଙ୍କୁ ଦେଖାଇବା ଉଦ୍ଦେଶ୍ୟରେ ଗୋପାଳ-ରୂପ ଧରିଥିଲେ; କିନ୍ତୁ ବାସ୍ତବ ଦୃଷ୍ଟିରେ ସେ ଥିଲେ ଶ୍ୟାମସୁନ୍ଦର । ଯେ ଯାହାର ଜୀବନ ତାକୁ ଅନ୍ୟ କିଏ ବା କପରି ଗ୍ରହଣ କରିପାରିବ ? ଏହି ରହସ୍ୟକୁ ଶ୍ରୀରାଧା ଜାଣିଥିଲେ, ଶ୍ରୀକୃଷ୍ଣ ଜାଣିଥିଲେ, ଏବଂ

ତାଙ୍କ (ଶ୍ରୀକୃଷ୍ଣଙ୍କ) କୃପାରେ ଏକ ବର୍ଷ ପରେ ବ୍ରହ୍ମା ଓ ଶ୍ରୀବଳଦେବ ମଧ୍ୟ ଜାଣିଗଲେ। ଆଉ କୌଣସି ପଞ୍ଚମ ଲୋକକୁ ଏହି ରହସ୍ୟ ଜଣା ନଥିଲା। ସେଥିପାଇଁ କେତେକ ଲୋକ ଉପରୁ ଦେଖି ପରକୀୟା-ଭାବର କଳ୍ପନା କରିଥାନ୍ତି। ଏହା କେବଳ ଐନ୍ଦ୍ରିକ ଉପାସନାର ଭାବ ମାତ୍ର। ଅନ୍ତରରେ ତ ରାଧା ସ୍ୱକୀୟା। ସ୍ୱକୀୟାଙ୍କ ବିନା ତାଙ୍କର ଆଉ କେଉଁଠି ବା ସ୍ନେହ ରହିପାରେ।

ସେ ଯାହାହେଉ, ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ପ୍ରେମ ଥିଲା ଅଦ୍ଭୁତ ଓ ଅଲୌକିକ। ତାହା ଗୋଟିଏ ପ୍ରହେଳିକା ଭାବରେ ଠିଆ ହୋଇ ରହିଥିଲା। ଏବେ କଥା କିନ୍ତୁ ଅଲଗା ହୋଇଗଲା। କେହି କେହି ରାଧାଙ୍କ ଚରିତ୍ରରେ ସନ୍ଦେହ କଲେ ଏବଂ ତାଙ୍କ ପତିବ୍ରତ-ଧର୍ମ ଉପରେ ଦୋଷ ଦେବାକୁ ଲାଗିଲେ। ସେଥିପାଇଁ ଶୁଣାଯାଏ ଯେ ଶ୍ରୀରାଧାଙ୍କୁ ନିଜ ସତୀତ୍ୱର ପରୀକ୍ଷା ବି ଦେବାକୁ ପଡ଼ିଥିଲା।

ଶୌନକ ପଚାରିଲେ—"ହେ ସୂତ ମହାଶୟ! ଶ୍ରୀରାଧା ତ ହେଉଛନ୍ତି ସର୍ବେଶ୍ୱରୀ। ସେ ହେଉଛନ୍ତି ସାରା ବିଶ୍ୱବ୍ରହ୍ମାଣ୍ଡର ଏକମାତ୍ର ଅଧୀଶ୍ୱରୀ। ତାଙ୍କ ପରୀକ୍ଷା ପୁଣି କିଏ ବା ନେଲା ?"

ଏଥିରେ ସୂତ ହସି ହସି କହିଲେ—"ଏହି ସଂସାରରେ ଶରୀର-ଧାରଣ କଲେ ସେ ସର୍ବେଶ୍ୱର ହୁଅନ୍ତୁ କିମ୍ବା ସର୍ବେଶ୍ୱରୀ ହୁଅନ୍ତୁ, ଜୀବ ହୁଅନ୍ତୁ ଅଥବା ଈଶ୍ୱର ହୁଅନ୍ତୁ, ସମସ୍ତଙ୍କୁ ପରୀକ୍ଷା ଦେବାକୁ ପଡ଼ିଥାଏ। ଭଗବାନ ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ରହିଛନ୍ତି। ଯେଉଁ ଜୀବ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଗଲା, ସେ ଜାଣ ପାର ହୋଇଗଲା। ଯେ ଉତ୍ତୀର୍ଣ୍ଣ ହୋଇ ପାରିଲା ନାହିଁ, ସେ ଏଠି ଲଙ୍ଘିକରି ରହିଗଲା। ସର୍ବେଶ୍ୱରୀଙ୍କ ପରୀକ୍ଷା ନେବାର ସାମର୍ଥ୍ୟ ସର୍ବେଶ୍ୱରଙ୍କ ବିନା ଆଉ କାହାର ବା ହୋଇପାରନ୍ତା ? ସର୍ବେଶ୍ୱର ହିଁ ସର୍ବେଶ୍ୱରୀଙ୍କ ସତୀତ୍ୱର ପରୀକ୍ଷା ନେଲେ।"

ଶୌନକ ପଚାରିଲେ—"ସୂତ ମହାଶୟ! ସର୍ବେଶ୍ୱର ସର୍ବେଶ୍ୱରୀଙ୍କର ପରୀକ୍ଷା କାହିଁକି ନେଲେ ଏବଂ କିପରି ନେଲେ ? ଦୟା କରି ଆପଣ ଏହି ବିଷୟଟିକୁ ଆମ୍ଭମାନଙ୍କୁ ଶୁଣାନ୍ତୁ।"

ସୂତ କହିଲେ—"ଠିକ୍ କଥା, ଶୁଣନ୍ତୁ ମହାରାଜ! ମୁଁ ଏହି ବିଷୟଟିକୁ ଆପଣଙ୍କୁ ଶୁଣାଉଛି। ସଂସାରରେ ଲୋକମାନଙ୍କୁ ପରଚର୍ଚ୍ଚା ଓ ପରନିନ୍ଦା ଯେଉଁଭଳି ମିଠା ଓ ରସୁଆଳ ଲାଗେ, ସେ ଲପଜାମୁ ବି ସେଭଳି ଲାଗେନାହିଁ। ଯେଉଁମାନଙ୍କ ସହିତ ଆମର କିଛି ସମ୍ପର୍କ ନାହିଁ, କିଛି ନେଣ-ଦେଣ ନାହିଁ, ସେମାନଙ୍କ ବିଷୟରେ ବି ଆମେ ଘଣ୍ଟା ଘଣ୍ଟା ଧରି ଚର୍ଚ୍ଚା କରିଥାଉଁ। କିଏ କାହା ବିଷୟରେ କିଛି ଗୋଟାଏ ସାମାନ୍ୟ

କଥା ଶୁଣିଦେଲା ତ ସେ ତାହାଙ୍କୁ ଘୋରଶତ୍ରୁ ପାହାଡ଼ଟାଏ କରିଦେବ । ଏଥିରୁ ଜଣାଯାଉଛି ଯେ ମଣିଷକୁ ପରଚର୍ଚ୍ଚା କରିବାକୁ ଖୁବ ଭଲ ଲାଗେ । ଆମେ ଗ୍ରେଟ ଗ୍ରେଟ ଲୋକମାନେ ଯେ କେବଳ ପରଚର୍ଚ୍ଚା ଓ ପରନିନ୍ଦା କରିଥାଉଁ, ତାହା କହିବା ଠିକ୍ ହେବନାହିଁ । ବଡ଼ ବଡ଼ ଲୋକମାନଙ୍କଠାରେ ବି ଏହି ରୋଗ ଥାଏ । କୌଣସି ଜଣେ ମହାତ୍ମା ଆଉ ଜଣେ କୌଣସି ମହାତ୍ମାଙ୍କ ବିଷୟରେ ଚର୍ଚ୍ଚା କରନ୍ତି ତ ସେ କହନ୍ତି, "ଆମେ ସବୁ ତାଙ୍କୁ ଭଲ କରି ଜାଣିଛୁ । ଆଜି ସିନା ସେ ମହାତ୍ମା ହୋଇଯାଇଛି, ଆଗେ କିନ୍ତୁ ସେ ଏମିତି ସେମିତି ଥିଲା ।" ଏଥିରୁ ଜଣାପଡ଼ୁଛି ଯେ ପରଚର୍ଚ୍ଚା ନକଲେ ମଣିଷର ଖାଦ୍ୟ ହଜମ ହୁଏ ନାହିଁ । ଯେ ପରଚର୍ଚ୍ଚା କରନ୍ତି ନାହିଁ, ଯେ କେବେହେଲେ କାହାର ଦୋଷ ଗୁଣ କଥା ଚିନ୍ତା କରନ୍ତି ନାହିଁ, ସେ ମଣିଷ ନୁହନ୍ତି । ସେ ହେଉଛନ୍ତି ସାକ୍ଷାତ୍ ଈଶ୍ୱର, ନର ରୂପରେ ନାରାୟଣ ।"

ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କଠାରେ ପରଚର୍ଚ୍ଚା କରିବାର ପ୍ରବୃତ୍ତି ବେଶି ଥାଏ । ସ୍ତ୍ରୀମାନଙ୍କର ଗୋଟିଏ ପ୍ରକାର ଅଜୀର୍ଣ୍ଣ ରୋଗ ଅଛି । ସେହି ରୋଗ ହେଲେ ଯେତେ ପାଣି ପିଇଲେ ବି ଜୀର୍ଣ୍ଣ ହୁଏ ନାହିଁ । ଏହିଭଳି ସ୍ତ୍ରୀମାନଙ୍କ ପେଟରେ କଥା ଜୀର୍ଣ୍ଣ ହୁଏ ନାହିଁ । ଧର୍ମରାଜ ଯୁଧିଷ୍ଠିରଙ୍କର ଏହା ହେଉଛି ଏକ ଅଭିଶାପ । ତେଣୁ ସ୍ତ୍ରୀମାନଙ୍କର କାହା ବିଷୟରେ ସାମାନ୍ୟ କିଛିଏ ଯଦି ସନ୍ଦେହ ଆସିଯିବ, ତା'ହେଲେ ସେମାନେ କାନରେ ଫୁସ୍-ଫାସ କରିବା ଆରମ୍ଭ କରିଦେବେ । ବ୍ରଜରେ ଆଜିକାଲି ସ୍ତ୍ରୀମାନଙ୍କ ମଧ୍ୟରେ କେବଳ ଗୋଟିଏ ମାତ୍ର ବିଷୟରେ ଚର୍ଚ୍ଚା ହେଉଥିଲା । ତାହା ଥିଲା ଶ୍ରୀରାଧା ଓ ମାଧବଙ୍କ ପ୍ରେମ ବିଷୟ ନେଇ । କିଏ ସପକ୍ଷରେ କହୁଥିଲା ତ ଆଉ କିଏ ବିପକ୍ଷରେ କହୁଥିଲା; କିନ୍ତୁ ଆଜିକାଲି ଶ୍ରୀରାଧା ସମସ୍ତଙ୍କ ସମାଲୋଚନାର କେନ୍ଦ୍ର ହୋଇଯାଇଥିଲେ । କେହି କେହି ତାଙ୍କୁ ପରକୀୟା ବୋଲି ମାନୁଥିଲେ ତ ଆଉ କେହି କେହି ସ୍ୱକୀୟା ବୋଲି ମାନୁଥିଲେ । ସ୍ୱକୀୟା-ପରକୀୟା ମଧ୍ୟରେ ଥିବା ଏହି ପ୍ରଭେଦ ହେଉଛି ଚିରନ୍ତନ । ଏହା ସବୁଦିନେ ରହିଥିବ ।

ଯଦି କୁକୁରମାନଙ୍କର ଭୁକାରେ ହାତୀ ଡରି ଯାଉଥାନ୍ତା, ତା'ହେଲେ ସେ ତ କେବେହେଲେ ଗାଁକୁ ଆସି ହିଁ ପାରନ୍ତା ନାହିଁ, କାରଣ ହାତୀକୁ ଦେଖି କୁକୁରମାନେ ଭୁକନ୍ତି । ସେ କିନ୍ତୁ ସେମାନଙ୍କୁ ବେଖାତିର କରିଥାଏ । ତାଙ୍କ ବିଷୟରେ କିଏ କ'ଣ କହୁଛି, ସେଥିପ୍ରତି ବୃଷଭାନୁଙ୍କ ଝିଅ ଜମା ଧ୍ୟାନ ନେଉ ନଥିଲେ । ତଥାପି କଥାଟା ସୀମାକୁ ଡେଇଁଗଲା । ଏବେ ଶ୍ୟାମସୁନ୍ଦରଙ୍କୁ ନିଜେ ହିଁ ଚିନ୍ତା କରିବାକୁ ପଡ଼ିଲା । ସେ ସମସ୍ତଙ୍କ ଆଗରେ ରାଧା-କିଶୋରୀଙ୍କୁ ଦୋଷହୀନ ବୋଲି ପ୍ରମାଣିତ କରିବାପାଇଁ ବ୍ୟଗ୍ର ଥିଲେ । ଅମେ ଯାହାଙ୍କୁ ସର୍ବସ୍ୱ ସମର୍ପି ଦେଇଥାଉଁ, ଆମର ଯଶ-ଅପଯଶର ଚିନ୍ତା ତାଙ୍କୁ ହିଁ ହେବ । ଆଶ୍ରିତ ଲୋକ ତ ନିଜକୁ ପୂର୍ଣ୍ଣ ଭାବରେ ସମର୍ପି ଦେବା ହିଁ ଜାଣିଥାଏ ।

ଏହିପରି ଅନେକ ସ୍ତ୍ରୀଲୋକ ତ ଶ୍ରୀରାଧାଙ୍କ ଚରିତ୍ର ଉପରେ କଳଙ୍କ ଲଗାଉଥାନ୍ତି ; କିନ୍ତୁ ସେମାନଙ୍କ ମଧ୍ୟରେ ଦୁଇଜଣ ଥିଲେ ପ୍ରଧାନ । ଜଣେ ବୁଢ଼ୀ ଏବଂ ଆଉ ଜଣେ ଯୁବତୀ । ସେ ଦୁହେଁ ପରପୁରୁଷ ଆଡ଼କୁ କେବେହେଲେ ଚାହାନ୍ତି ନାହିଁ ; କିନ୍ତୁ ଚାହିଁବାରେ ତ କିଛି ପାପ ନାହିଁ । ପାପ ତ ହୋଇଥାଏ ମନରେ । କେବେ କେବେ ସଦାଚାରର ଏହି ମିଛ ଅଭିମାନଟି ସାଧନାରେ ବଡ଼ ବିଘ୍ନ ଆଣି ଜୁଟାଇଥାଏ । ଯେ ପର୍ଯ୍ୟନ୍ତ ଏହି ଅଭିମାନ ଚୂନା ନ ହୋଇଛି, ସେପର୍ଯ୍ୟନ୍ତ ମଣିଷର ବୁଦ୍ଧି ଠିକ୍ ହୋଇପାରେ ନାହିଁ । ସେ ଦୁହିଙ୍କଠାରେ ନିଜ ସତୀତ୍ୱର ଅଭିମାନ ଥିଲା । ସେହି ଅଭିମାନରେ ଭରିହୋଇ ସେ ଦୁହେଁ ସମସ୍ତଙ୍କୁ ଅସତୀ ବୋଲି ଭାବୁଥିଲେ ଏବଂ ସେମାନଙ୍କ ସମ୍ପର୍କରେ ବିଭିନ୍ନ ଘଟଣାମାନ ଦେଖି ସେଗୁଡ଼ିକର ନିନ୍ଦା ବି କରୁଥିଲେ । ଯେଉଁମାନଙ୍କ ଅନ୍ତରରେ ଖରାପ କଥା ଭରି ହୋଇ ରହିଛି ସେମାନେ ଅନ୍ୟମାନଙ୍କର ଖରାପଟାକୁ ହିଁ ଦେଖୁଥିବେ । ଖରାପ କଥାଗୁଡ଼ିକ ସେମାନଙ୍କର ଦରକାର । ସଂସାରରେ ତ ସବୁବେଳେ ଭଲ ଓ ମନ୍ଦ ଦୁଇଟାଯାକ ରହିଛି ଏବଂ ସବୁବେଳେ ରହିଥିବ ମଧ୍ୟ । ସଂସାରର ଦୋକାନରେ ବିଷ ଅଛି ଏବଂ ରସାୟନ ବି ଅଛି । ଆମକୁ ଯଦି ମରିବାକୁ ହେବ, ତା'ହେଲେ ଆମେ ବିଷ ଖୋଜି ବସିବା । ଆମକୁ ଯଦି କାୟା ଶୁଦ୍ଧ କରିବାକୁ ହେବ, ତା'ହେଲେ ବିଷ ପ୍ରତି ଧ୍ୟାନ ନଦେଇ ଆମର ଜିନିଷପତ୍ର ଆଉ ଜିନିଷର ଦରକାର ପଡ଼ିବ; ଆମକୁ ସେହି ଜିନିଷଗୁଡ଼ିକୁ ବ୍ୟବହାର କରିବାକୁ ପଡ଼ିବ ।

ହଁ ବନବର କଥା । ସେଦିନ କୃଷ୍ଣଙ୍କ ଦେହ ଖରାପ ହେଲା । ହେଉଟା ଏପରି ହେଲା ଯେ ବାପା-ମାଆ ସମସ୍ତେ ବଡ଼ ବ୍ୟତିବ୍ୟସ୍ତ ହୋଇ ଉଠିଲେ । ଟଉଡ଼-ଗଉଡ଼ୁଣୀ-ମାନେ ଗୋବିନ୍ଦଙ୍କୁ ଘେରିକରି କାନ୍ଦିବାକୁ ଲାଗିଲେ । ମନ୍ତ୍ର, ଯନ୍ତ୍ର, ଯାଦୁ, ଝଡ଼ା-ଫୁଙ୍କା, ଟୁଣୁକା-ଟୁଟିକା ଚେଟ-ମୂଳ ଆଦି ସବୁ ପ୍ରକାର ଉପଚାର କରାଗଲା ; କିନ୍ତୁ କୌଣସିଥିରେ କିଛି ସୁଫଳ ହେଲା ନାହିଁ । ଯଶୋଦାଙ୍କ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ସେ ଛାତିରେ ହାତ ପିଟି ବିକଳ ଭାବରେ କାନ୍ଦିବାକୁ ଲାଗିଲେ । ହଠାତ୍ ଜଣେ ସୁନ୍ଦର ବୈଦ୍ୟ ଆସି ସେଠାରେ ପହଞ୍ଚିଲେ । ସେ ଗୋଟିଏ ହାତରେ ଝୁଲି ମୁଣି ଧରିଥିଲେ ଏବଂ ଅଉ ହାତଟିରେ ଠେଙ୍ଗା ଧରିଥିଲେ । ସେ ଝୁଲ-ମୁଣି ଓ ଠେଙ୍ଗାକୁ ରଖିଦେଇ କହିଲେ—"ମୁଁ ମଧୁପୁରୀରୁ ଅସିଛି । ମୁଁ ଶୁଣିଲି ଯେ ନନ୍ଦଙ୍କ ପୁଅ ବେମାରରେ ପଡ଼ିଛନ୍ତି । ମୁଁ ଏଇ ସଙ୍ଗେ ସଙ୍ଗେ ତାଙ୍କୁ ଭଲ କରି ଦେଉଛି ।"

ଯଶୋଦା ମାଆଙ୍କ ଉପରେ ସତେ ଯେମିତି କିଏ ଅମୃତ ଢାଳି ଦେଲା ! ସେ କହିଲେ—"ହେ ବୈଦ୍ୟରାଜ ! ମୋ' ପୁଅକୁ ଅପଣ ଭଲ କରି ଦିଅନ୍ତୁ । ଆପଣ ଯାହା ମାଗିବେ, ମୁଁ ତାହା ଦେବି । ମୁଁ ନିଜର ସବୁ କିଛି ଅପଣଙ୍କୁ ଦେଇଦେବି ।"

ବୈଦ୍ୟ ଗମ୍ଭୀର ସ୍ୱରରେ କହିଲେ—"ମୋ' ଗୁରୁଙ୍କର ଆଜ୍ଞା ଅନୁସାରେ ମୁଁ ଯାହାର ଚିକିତ୍ସା କରେ, ତା'ର ଘରର ପାଣି ବି ପିଏ ନାହିଁ । ମୁଁ ଯଦି ରୋଗୀଠାରୁ କିଛି ନେବାକୁ ଆରମ୍ଭ କରିବି, ତା' ହେଲେ ମୋ'ର ବିଦ୍ୟା ଫଳ ଦେବ ନାହିଁ । ଏଣୁ ମୁଁ ବିନା ଶୁଳ୍କରେ ହିଁ ଚିକିତ୍ସା କରିଥାଏ ।"

ମାଆ ବ୍ୟଗ୍ରତାର ସହିତ କହିଲେ—"ଆପଣ ଯେପରି ଭାବୁଛନ୍ତି ସେପରି କରନ୍ତୁ । ମୋ' ପୁଅକୁ ଆପଣ ଭଲ କରି ଦିଅନ୍ତୁ । ଆପଣଙ୍କର କ'ଣ କ'ଣ ଜିନିଷ ଦରକାର ?"

ବୈଦ୍ୟ କହିଲେ—"ମୋ'ର ଅଉ କିଛି ଦରକାର ନାହିଁ । ଖାଲି ଗୋଟିଏ ମାଠିଆ ଯମୁନାର ପାଣି ଦରକାର ।"

ମାଆ କହିଲେ—"ଆପଣ ଯେତେ ପାଣି ଚାହିଁବେ ମୁଁ ତାହା ଜଳେ ଆଣିପାରିବି ।"

ବୈଦ୍ୟରାଜ ଗମ୍ଭୀର ସ୍ୱରରେ କହିଲେ—"ଆପଣ ଆଣିବାରେ କାମ ଚଳିବ ନାହିଁ । ଆପଣଙ୍କ ଗ୍ରାମରେ ଯେଉଁ ସତୀ ସ୍ତ୍ରୀ ଅଛନ୍ତି, ସେ ମାଠିଆରେ ପାଣି ଭରି ଆଣନ୍ତୁ । ଆପଣଙ୍କର ଯାହାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ଅଛି, ସେ ଆଣନ୍ତୁ । ଯଦି କୌଣସି ଅସତୀ ସ୍ତ୍ରୀ ପାଣି ଆଣିବ, ତା' ହେଲେ ସେଥିରେ ଶ୍ୟାମସୁନ୍ଦର ଭଲ ହୋଇପାରିବେ ନାହିଁ ।"

ସମସ୍ତଙ୍କ ଗ୍ରାମବତୀମାନ ଅଇବାକୁ ଲାଗିଲେ । ମନରେ ହେଲେ ବି ଯେ ପର-ପୁରୁଷଙ୍କୁ ଚିନ୍ତା କରି ନାହିଁ ଏଭଳି ସ୍ତ୍ରୀ ସବୁଠାରେ ମିଳି ପାରିବ ନାହିଁ । ସମସ୍ତେ ଦବିଗଲେ । ମାଆ ପଚାରିଲେ—"ଆଚ୍ଛା ଏ କଥା କେମିତି ଜଣାଯିବ ଯେ ଏହି ପାଣି ଜଣେ ସତୀ ସ୍ତ୍ରୀଦ୍ୱାରା ଅଣାଯାଇଛି ବୋଲି ? ସମସ୍ତେ ତ ନିଜକୁ ସତୀ ବୋଲି କହୁଥାନ୍ତି ।"

ବୈଦ୍ୟରାଜ ହସି ହସି କହିଲେ—"ନିଜ ମନେ ମନେ ସତୀ ବୋଲି ଭାବିଦେଲେ ସେଥିରେ କ'ଣ କାମ ଚଳିବ ? ସତୀଙ୍କ ପାଇଁ ଗୋଟିଏ ପରୀକ୍ଷା ଅଛି । ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯେ ଯମୁନାରୁ ମାଠିଆଟିରେ ପାଣି ଭରି ଆଣିପାରିବେ, ସେ ହେଉଛନ୍ତି ସତୀ । ଯେ ଆଣି ନ ପାରିବେ, ସେ ଅସତୀ ।"

ମାଆ କହିଲେ—"ଏବେ ଆପଣ ତ ବଡ଼ ଅଡ଼ୁଆ କଥା କହୁଛନ୍ତି । ସେ କଥା ବୁଝାନ୍ତୁ । ସେଥିପାଇଁ ଆମକୁ କ'ଣ କ'ଣ କରିବାକୁ ହେବ ?"

ବୈଦ୍ୟରାଜ କହିଲେ—"ସେଥିପାଇଁ ବିଶେଷ କିଛି କରିବାର ନାହିଁ । ମାଟିରେ ଗୋଟିଏ କଚା ମାଠିଆ ମଗାଇ ଦିଅନ୍ତୁ ।"

ତୁରନ୍ତ ମାଟିର କଚା ମାଠିଆଟିଏ ଆସିଗଲା । ବୈଦ୍ୟରାଜ ନିଜ ଝୁଲି-ମୁଣିରୁ ସୂନାର ତାମ୍ଫଟିଏ କାଢ଼ିଲେ ଏବଂ ତାହାଦ୍ୱାରା ସେଥିରେ ଶହେଟି ଛିଦ୍ର କରିଦେଲେ ।

ସେ ପୁଣି ଗୋଟିଏ କଉଁଚ ବାହାର କଲେ ଏବଂ ତାହାଦ୍ୱାରା ଶ୍ୟାମସୁନ୍ଦରଙ୍କ କଳା ମଚ ମଚ କୁଞ୍ଚ କୁଞ୍ଚିଆ ବାଳରୁ ଲମ୍ବା ହୋଇ ଝୁଲି ପଡ଼ିଥିବା ଖୋଡ଼ାଏ ବାଳ କାଟିଦେଲେ। ସେ ସେହି ବାଳକୁ ବାନ୍ଧି ବାଳର ଗୋଟିଏ ଲମ୍ବା ସୂତା ତିଆର କଲେ ଏବଂ ସେହି ସୂତାକୁ ଯମୁନାର ଏପାରରୁ ସେପାରି ପର୍ଯ୍ୟନ୍ତ ବାନ୍ଧି ଦେଲେ। ଏହା କରସାରିବା ପରେ ସେ କହିଲେ— "ଏହି ମାଠିଅଟିକୁ ନେଇ ଏବଂ ଏହି ବାଳ ଉପରେ ଚାଲି ଯେ ଯମୁନାର ଏପାରରୁ ସେପାରକୁ ଯାଇପାରିବେ ଏବଂ ମାଠିଆରେ ପାଣି ଭରି ଆଣିପାରିବେ, ଯେପରିକି ବୁନ୍ଦାଏ ହେଲେ ପାଣି ତଳ ପଡ଼ିବ ନାହିଁ, ସେହି ହେଉଛନ୍ତି ସତୀ। ସେ ଆଣିଥିବା ପାଣିରେ ଶ୍ୟାମସୁନ୍ଦର ଭଲ ହୋଇଯିବେ।"

ଏହାଶୁଣି ସବୁ ସ୍ତ୍ରୀଙ୍କ ସାହସ ତୁଟିଗଲା। ଏବେ ସମସ୍ତେ ମିଶି ସେହି ସ୍ତ୍ରୀ ଦୁଇଜଣଙ୍କୁ ଉଦ୍‌ଡାଇବାକୁ ଲାଗିଲେ। ସେ ଦୁହିଁଙ୍କରତ ନିଜ ସତୀତ୍ୱ ବିଷୟରେ ଗର୍ବ ଥିଲା। ଦୁହେଁ ହିଁ ଜଣକ ପରେ ଜଣେ କରି ମାଠିଆ ନେଇଗଲେ; କିନ୍ତୁ ପାଦ ରଖୁ ରଖୁ ସୂତାଟି ଛିଣ୍ଡିଗଲା। ଦୁହେଁ ଦୁଇଥର ମୁହଁ ମାଡ଼ି କଚାଡ଼ି ହୋଇ ପଡ଼ିଲେ ଏବଂ ଯମୁନାରେ ପଡ଼ି ଯାଇ ଯାଇ ବଞ୍ଚିଗଲେ। ଏବେ ଯେଉଁମାନଙ୍କର କିଛିଟା ବି ସାହସ ଥିଲା, ତାହା ତୁଟିଗଲା। ଆଉ କେହି ମାଠିଆଟି ଉଠାଇବାପାଇଁ ସାହସ କଲେ ନାହିଁ। ଯେତେବେଳେ କେହି ଜଣେ ହେଲେ ମାଠିଆ ଉଠାଇଲେ ନାହିଁ, ସେତେବେଳେ ମାଆ କାନ୍ଦି କାନ୍ଦି କହିଲେ, 'ବୈଦ୍ୟରାଜ ! ଆପଣ ଯଦି ମୋ' ପୁଅକୁ ଭଲ କରି ନ ଦେବେ, ତା'ହେଲେ ସେ କଥା ପରିଷ୍କାର କରି କହି ଦିଅନ୍ତୁ। ଏଭଳି ଅସମ୍ଭବ କଥା ଆପଣ କାହିଁକି କହୁଛନ୍ତି ?"

ବୈଦ୍ୟ ଗମ୍ଭୀର ହୋଇ କହିଲେ—"ମାଆ ! ସଂସାରରେ ଅସମ୍ଭବ ବୋଲି କିଛି ନାହିଁ। ସତୀ-ସାଧ୍ୱୀ ସ୍ତ୍ରୀ ସବୁ କିଛି କରିପାରନ୍ତି।"

ମାଆ କହିଲେ—"ଆପଣ ତା'ହେଲେ କୁହନ୍ତୁ, ଏଭଳି ସତୀ ସ୍ତ୍ରୀ କିଏ ଅଛି ?"

ବୈଦ୍ୟ କହିଲେ —"ମୁଁ ବା କେମିତି ଜାଣିବି ? ହଁ, ମୁଁ ଜ୍ୟୋତିଷ-ବିଦ୍ୟା ବି ଜାଣିଛି। ମୁଁ ଗଣନା କରି ନାଆଁଟା କହିଦେଉଛି।"

ସମସ୍ତଙ୍କ ମନରେ ବଡ଼ କୌତୂହଳ ଜାତ ହେଲା। ସମସ୍ତେ ଜୋର ଦେଇ ଆଗ୍ରହର ସହିତ କହିଲେ—"ନାଆଁ କୁହନ୍ତୁ, ନାଆଁ କୁହନ୍ତୁ।"

ବୈଦ୍ୟରାଜ କିଛି ସମୟ ପର୍ଯ୍ୟନ୍ତ ମେଷ, ବୃଷ, ମିଥୁନ, କନ୍ୟା ଆଦି ଗଣନା କରି କରି ଶେଷକୁ କହିଲେ—"ଏଠାରେ କେହି ରାଧା ବୋଲି ଅଛନ୍ତି ?"

ମାଆ କହିଲେ—"ହଁ, ଅଛି। ହାୟ ! ବିଚାରୀ ତା'କୁ ଶ୍ୟାମର ରୋଗ-ଖବର ଜଣା ନାହିଁ। ନ ହେଲେ ସେ ସବା ଆଗରୁ ଅସିଯାଇଥାନ୍ତା।" ତୁରନ୍ତ ଜଣେ ସଖୀ

ଧାଇଁଯାଇ ରାଧାଙ୍କୁ ଡାକି ଆଣିଲା । ବୈଦ୍ୟ ଦେବୀଙ୍କୁ ଦୂରରୁ ଦେଖି ତାଙ୍କୁ ପୂଜା କଲେ ଏବଂ କହିଲେ— ଦେଖନ୍ତୁ, ସେମାନଙ୍କରୁ ଏହି ମାଠିଆରେ ପାଣି ଭରି କରି ଏହି ବାଳର ସୂତା ଉପରେ ଚାଲିକରି ଆପଣଙ୍କୁ ତାହା ଆଣିବାକୁ ହେବ ।"

ଶ୍ରୀକାନ୍ତଶୋଭା ବୀଣାଜିଣା କଣ୍ଠରେ ପଚାରିଲେ "ବୈଦ୍ୟରାଜ ! ଏଥିରେ କ'ଣ ହେବ ?"

ବୈଦ୍ୟରାଜ କହିଲେ—"ଏଥିରେ ଶ୍ୟାମସୁନ୍ଦର ଭଲ ହୋଇଯିବେ ।"

ଶ୍ରୀରାଧା କହିଲେ—"ଆଚ୍ଛା, ଶ୍ୟାମସୁନ୍ଦର ମୁଁ ଆଣିଥିବା ପାଣିରେ ଭଲ ହୋଇଯିବେ !" ସେ ତୁରନ୍ତ ମାଠିଆଟିକୁ ଉଠାଇଲେ । ସ୍ତ୍ରୀ ପୁରୁଷମାନଙ୍କର କୋଳାହଳ ଭାରି ଜମି ଉଠିଲା । ସମସ୍ତଙ୍କ ଛାତି ଥର ଉଠୁଥିଲା । କେତେକ ସ୍ତ୍ରୀ ଲୋକ ମନେ ମନେ ହସୁଥିଲେ । ଆଉ କେତେକ ସ୍ତ୍ରୀ ଲୋକ ପରିଣାମ କ'ଣ ହେବ ସେଥିପାଇଁ ଖୁବ୍ ଉତ୍କଣ୍ଠିତ ହୋଇ ଉଠୁଥିଲେ । ବୃଷଭାନୁନନ୍ଦିନୀ ଧୀର-ଗମ୍ଭୀର ଭାବରେ ଏବଂ ସହଜରେ ଶହେ କଣା ଥିବା ମାଠିଆଟିକୁ ନେଇ ଯମୁନା-କୂଳକୁ ଆସିଲେ । ତାଙ୍କ ପଛେ ପଛେ ଖୁବ୍ ଲୋକ ଗହଳି ଥିଲା । ଶ୍ରୀକୃଷ୍ଣଙ୍କ ଜଟାରୁ ଉଆଣ ହୋଇଥିବା ବାଳର ସୂତାକୁ ସେ ପ୍ରଣାମ କଲେ । ସେ ଅତି ସରଳ ଭାବରେ ତାହା ଉପରେ ଚାଲିଗଲେ ଏବଂ ମାଠିଆରେ ପାଣିଭରି ପୁଣି ସରଳ ଭାବରେ ଚାଲି ଆସିଲେ । ଏହି ଅଦ୍ଭୁତ ଘଟଣାରେ ସମସ୍ତଙ୍କ ହୃଦୟ ଆନନ୍ଦରେ ଭରପୂର ହୋଇ ଉଠିଲା । ସମସ୍ତେ ତାଙ୍କର ଜୟ-ଜୟକାର କଲେ । ଦେବତାମାନେ ତାଙ୍କ ଉପରେ ଫୁଲ-ବର୍ଷା କଲେ । ପାଣି ଆଣି ସେ ସରଳା ବାଳିକାଟି ଭଳି ଶ୍ୟାମସୁନ୍ଦରଙ୍କ ପାଖରେ ଠିଆ ହୋଇଗଲେ ।

ବୈଦ୍ୟ କହିଲେ—"ଦେଖନ୍ତୁ, ଆପଣ ଶ୍ୟାମସୁନ୍ଦରଙ୍କ ଉପରେ ତିନି ଅଞ୍ଜୁଳା ପାଣି ଛିଞ୍ଚି ଦିଅନ୍ତୁ, ଏବଂ ତିନିଥର ସ୍ୱାଙ୍କ ମୁଣ୍ଡକୁ ଫୁଙ୍କି ଦିଅନ୍ତୁ । ଏବେ ତୁରନ୍ତ ସ୍ୱାଙ୍କ ରୋଗ ଭଲ ହୋଇଯିବ ।" ଶ୍ରୀରାଧା କିଛି ଆପତ୍ତି ନ କରି ସରଳତାର ସହିତ ତିନି ଅଞ୍ଜୁଳା ପାଣି ଶ୍ୟାମସୁନ୍ଦରଙ୍କ ଉପରେ ଢାଳି ଦେଲେ ଏବଂ ତିନିଥର ତାଙ୍କ ମୁଣ୍ଡକୁ ଫୁଙ୍କି ଦେଲେ । ଶ୍ୟାମସୁନ୍ଦରଙ୍କ ରୋଗ ତୁରନ୍ତ ଭଲ ହୋଇଗଲା । ବୈଦ୍ୟରାଜ ନିଜର ଝୁଲି ମୁଣି ଓ ବାଡ଼ି ଧରି ଯେଉଁ ବାଟରୁ ଆସିଥିଲେ ସେହି ବାଟ ଆଡ଼େ ଚାଲିଗଲେ । ସେହି ଦିନଠାରୁ ସମସ୍ତଙ୍କର ବିଶ୍ୱାସ ହୋଇଗଲା ଯେ ବ୍ରଜରେ ଜଣେ ମାତ୍ର ସତୀ ସାଧ୍ୱୀ ଓ ପତିବ୍ରତା ସ୍ତ୍ରୀ ଅଛନ୍ତି ଏବଂ ସେ ହେଉଛନ୍ତି କୀର୍ତ୍ତିନନ୍ଦିନୀ ଶ୍ରୀରାଧା ।

ସୂତ କହୁଥାନ୍ତି—"ହେ ମୁନିମାନେ ! ମୁଁ ଶ୍ରୀମତୀ ରାଧାଙ୍କର ଜୀବନ ଚରିତ କହୁଛି ଆପଣଙ୍କୁ କହୁନାହିଁ । ତାଙ୍କ ଜୀବନଚରିତ ହେଉଛି ଅପାର । ତାହାକୁ କିଏ ବା

କହିପାରିବ ? ମୁଁ ତ ତାଙ୍କ ମହାନ୍ ମହିମା-ସମୁଦ୍ରରୁ କିଛି ବିନ୍ଦୁ ନେଇ ଆପଣଙ୍କ ଆଗରେ ଉଦାହରଣ ହିସାବରେ ରଖୁଛି । ସେ ହେଉଛନ୍ତି ଶ୍ୟାମସୁନ୍ଦରଙ୍କ ପ୍ରଧାନ ଶକ୍ତି । ଶ୍ୟାମସୁନ୍ଦର ସ୍ୱାଙ୍କର ସାହାଯ୍ୟରେ କ୍ରୀଡ଼ା କରିଥାନ୍ତି, ରାସ-ବିଳାସ କରିଥାନ୍ତି । ସେ ହିଁ ହେଉଛନ୍ତି ରାସର ପ୍ରଧାନ ରାସେଶ୍ୱରୀ । ରାସ ସମୟରେ . ଯେତେବେଳେ ଗୋପୀମାନଙ୍କ-ଠାରେ କଳର ଐଶ୍ୱର୍ଯ୍ୟ-ମଦ ଆସି ଯାଇଥିଲା ଏବଂ ସେମାନଙ୍କ ମନରେ ଅଭିମାନର ଉଦୟ ହୋଇଥିଲା, ସେତେବେଳେ ରାସେଶ୍ୱର ଏହି ଏକାକିନୀ ରାସେଶ୍ୱରୀ ପ୍ରିୟତମା ରାଧାଙ୍କୁ ହାଥିରେ ଧରି ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ସେଥିପାଇଁ ଗୋପୀମାନେ ବୃକ୍ଷ ଲତା, ପଶୁ-ପକ୍ଷୀ, ତଥା ଅନ୍ୟାନ୍ୟ ଚର୍‌ଚର ଜୀବମାନଙ୍କୁ ପ୍ରିୟତମାଙ୍କ ସହିତ ପ୍ରିୟତମ କୁଆଡ଼େ ଯାଇଛନ୍ତି ବୋଲି ପଚାରୁଥିଲେ । ସେମାନେ କହୁଥିଲେ ପ୍ରିୟତମାଙ୍କ କାନ୍ଧ ଉପରେ ହାତଭରା ଦେଇ ଶ୍ୟାମସୁନ୍ଦରଙ୍କର ଏଠାରୁ ଯିବାଟା ତୁମ୍ଭେମାନେ ଦେଖିଛ ନା ନାହିଁ ?”

ଶୌନକ କହିଲେ—“ହଁ ସୂତ ମହାଶୟ ! ସେଉଠୁ ପୁଣି କ’ଣ ହେଲା ? ଏବେ ଆପଣ ଆମକୁ ଯେଉଁ ମହାରାସର ଲୀଳା ଶୁଣାଉଥିଲେ, ତାହା ହିଁ ଶୁଣାନ୍ତୁ ।”

ସୂତ କହିଲେ—“ଠିକ୍ କଥା ମହାରାଜ ! ଏବେ ମୁଁ ରାସଲୀଳା ପ୍ରସଙ୍ଗର ପରକଥା ଶୁଣାଉଛି । ଆପଣମାନେ ସମାହିତ ଚିତ୍ତରେ ତାହା ଶୁଣନ୍ତୁ ।”

## ଛପ୍‌ପୟ

ପ୍ୟାରୀ ପ୍ରଭୁକୀ ପରମ ସ୍ୱାମିନୀ ସୁଖକୀ ସରତା ।
ଶ୍ୟାମ-ସିନ୍ଧୁ ପ୍ରତି ବହତ ସବ ଭାବତ ରସ ଭରତା ॥
ଲେଁ ତନକୁଁ ହରି ଛିପେ ଲତନତେଂ ପୂଛତ ନାରୀ ।
ନିରଖେ ଇତ କହୁଁ କୃଷ୍ଣ କହେଁୟା କୁଞ୍ଜବିହାରୀ ॥
ନାରୀ ତୁମହୁଁ ନାର ହମ, କସ୍ତୁର ନରନେ ଠଗି ଲଈଂ ।
ଚୋର ଚୋରକେ ଛତ ଚଲୌ. ଗୟୋ ବନ, ଛତକେ ଭଈଂ ॥



# ପ୍ରିୟତମାଙ୍କ ସାଥୀ ପ୍ରିୟତମ କେଉଁଠି

ବାହୁଂ ପ୍ରିୟାଂସ ଉପଧାୟ ଗୃହୀତପଦ୍ମୋ
ରାମାନୁଜସ୍ତୁଲସିକାଳିକୁଳୈର୍ମଦାନ୍ଧୈଃ ।
ଅନ୍ୱୀୟମାନ ଇହ ବସ୍ତରବଃ ପ୍ରଣାମମ୍,
କିଂ ବାଭିନନ୍ଦତି ଚରନ୍ ପ୍ରଣୟାବଲୋକୈଃ ॥

( ଶ୍ରୀ.ଭା. ୧୦ସ୍କ, ୩୦ଅ, ୧୨ ଶ୍ଳୋ )

## ଛପ୍ପୟ

ଅରୀ, ବେଲି ସୁଖକେଲି କରତ ନିରଖେ ଇତ ଗିରଧର ।
ମନ୍ଦ-ମନ୍ଦ ମୁସକାତ ମଦନମୋହନ ମଦ ମନହର ॥
ଅବସି ସୁମନ୍ହୁଂ ପ୍ରଭୁ ପରସି ପ୍ରିୟା ସଁଗ ଇତହୁଂ ସିଧାୟେ ।
ତୋରେ ତୁମତେଂ ସମନ କାମିନୀ କେଶ ସଜାୟେ ॥
ନଖ କ୍ଷତତେଂ ଅନୁରାଗ ଅତି, ଉମଡ଼ ରହ୍ୟୋ ତୁମ ଅଁଗନତେଂ ।
ପାୟୋ ଆଲିଙ୍ଗନ ଅବସି, ତୁମ ସବତନ ପ୍ରିୟ ଭୁଜନତେଂ ॥

ଜୀବ ଜାଣେନା ସେ କେବେଠାରୁ ତା'ର ସ୍ୱାମୀଙ୍କ ପାଖରୁ ଅଲଗା ହୋଇଯାଇଛି । ଜୀବ କିପରି ବା ଅଲଗା ହୋଇପାରିବ ? ସ୍ୱାମୀ ହିଁ ଛପି ଯାଇଥାନ୍ତି । ତାଙ୍କୁ ଖୋଜି ବାହାର କରିବା ହେଉଛି ଜୀବର ଏକମାତ୍ର କାମ । ସେ ନିଜ ସ୍ୱାମୀଙ୍କୁ ଖୋଜି ବୁଲୁଥାଏ, ହଁ, ଖୋଜି ବୁଲୁଥାଏ । ସେ ନିରନ୍ତର ତାଙ୍କୁ ହିଁ ଖୋଜି ବୁଲୁଥାଏ । ସେ ଯାହାକୁ ଆଗରେ ଦେଖେ ତାହାଠାରୁ ତାଙ୍କ ଖବର ଆଶା କରିଥାଏ । କାଳେ ତା' ପାଖରୁ ସ୍ୱାମୀ କେଉଁଠି ଅଛନ୍ତି ତାହା ଜଣା ପଡ଼ିଯିବ ! କିନ୍ତୁ ଯାହାଠାରୁ ସେ ଆଶା ରଖିଥାଏ, ସେ ବି ସେମିତି ବୁଲୁଥାଏ । ସେ ବି ତାଙ୍କୁ ହିଁ ଖୋଜି ବୁଲୁଥାଏ । ସେ ଆଗକୁ ବଢ଼ି ବୁଲୁଥାଏ ଏବଂ ଚୌରାଅଶି ଲକ୍ଷ ଥର ଘୂରି ବୁଲୁଥାଏ । ଯଦି ଏହି ଘୂରିବାରେ ତାଙ୍କୁ ବାଟ ମିଳିଗଲା, ତା'ହେଲେ ସେ ମୁକ୍ତ ହୋଇ ଯାଇଥାଏ । ତାହା ନ ହେଲେ ସେ ପୁଣି ବୁଲୁଥାଏ ।

ତା'ର ଶାନ୍ତି ନାହିଁ, ସୁଖ ନାହିଁ, ବିଶ୍ରାମ ନାହିଁ, ଅବସାନ ନାହିଁ । ସେ ଖାଲି ଚାଲୁଥାଏ ଏବଂ ଖୋଜୁଥାଏ । ତା' ହେଲେ କ'ଣ ସ୍ୱାର ପ୍ରକୃତିରେ ପ୍ରିୟତମ ମିଳିଯାଆନ୍ତି ? ସ୍ୱାର ପ୍ରକୃତିରେ ସେ ମିଳିବେ ବା କେଉଁଠୁ ? ସେ ନିଜେ ହିଁ ପ୍ରକଟ ହୋଇଯାଆନ୍ତି । ଏଠାରେ ପ୍ରଶ୍ନ ହୋଇପାରେ ଯଦି ତାଙ୍କର ପ୍ରକଟ ହେବାର ଥିଲା, ତା'ହେଲେ ସେ ଆଗରୁ କାହିଁକି ଛପି ରହିଥିଲେ ? ସେ କାହିଁକି ବା ଏଭଳି ପ୍ରପଞ୍ଚ ବଢ଼ାଇଲେ ? ଏହାର ଉତ୍ତର ହେଲା, ସେ ଖେଳପାଇଁକି ଯୋଗମାୟାଙ୍କର ଆଶ୍ରୟ ନେଇ ହାସ-ବିନୋଦ କରୁଛନ୍ତି ଏବଂ ଆଖି ବୁଜା ଅନ୍ଧପୁଚ୍ଛିଲି-ଖେଳ ଖେଳୁଛନ୍ତି । ଖେଳରେ ହିଁ ତାଙ୍କୁ ଆନନ୍ଦ ମିଳିଥାଏ ; ତେଣୁ ସେ ସେଥିପାଇଁ ଚେଷ୍ଟା କରିଥାନ୍ତି । ବଂଶୀଧ୍ୱନି ଶୁଣିବାରେ ହିଁ ସାରା ସମ୍ଭାର ଏକଜୁଟ ହୋଇ ଯାଇଥାଏ । ପୁଣି ଖେଳ ଆରମ୍ଭ ହେଇଯାଏ । ସ୍ୱୟଂ ଛପି ଯାଆନ୍ତି ଏବଂ ଅନ୍ୟ ଖେଳାଳୀମାନେ ତାଙ୍କୁ ଖୋଜନ୍ତି । ତାଙ୍କୁ ଖୋଜି ଖୋଜି ଖେଳାଳି ଯେତେବେଳେ ନିଜକୁ ହଜାଇ ଦିଏ, ସେତେବେଳେ ସେ ମିଳିଯାନ୍ତି । ଶେଷକୁ ସେହି ହିଁ ଏକା ରହିଯାନ୍ତି । ସେଉଠୁ ପୁଣି ନୂଆ ଖେଳ ଆରମ୍ଭ ହୋଇଯାଏ । ଏହିପରି ସଂସାରରେ ଅନନ୍ତ କାଳଧରି ଅନନ୍ତ କ୍ରୀଡ଼ାମାନ ଚାଲି ଆସୁଛି । ସେଗୁଡ଼ିକ ଅନନ୍ତ କାଳ ପର୍ଯ୍ୟନ୍ତ ରହିଥିବ । ସେଗୁଡ଼ିକର ଆଦି ନାହିଁ, ମଧ୍ୟ ନାହିଁ, ଅନ୍ତ ନାହିଁ, ଅବସାନ ନାହିଁ । ଏହିଭଳି ସେଗୁଡ଼ିକ ଚାଲି ଆସୁଛି । ଏହି ଲୀଳାର ପ୍ରବାହ ନିରନ୍ତର ବହି ଚାଲିଛି । ଏଥିରେ ରସକୁ ଆସ୍ୱାଦନ କରିବା ହିଁ ହେଉଛି ପରମ ପୁରୁଷାର୍ଥ ।

ସୂତ କହୁଛନ୍ତି—"ହେ ମୁନିମାନେ ! ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଖୋଜିବାରେ ଜଡ଼ ଓ ଚେତନ ମଧ୍ୟରେ ଥିବା ପ୍ରଭେଦକୁ ସବୁପ୍ରକାର ଭୁଲିଗଲେ । ସେ ଗଛମାନଙ୍କୁ ବାରମ୍ବାର ଡାକ କହିଲେ—"ହେ ଶ୍ରେଷ୍ଠ ଗଛମାନେ ! ତୁମ୍ଭମାନଙ୍କର ବଡ଼ ବ୍ରତ ହେଲା, ଅନ୍ୟମାନଙ୍କର ଉପକାର କରିବା । ତୁମ୍ଭେମାନେ ମୃତ୍ୟୁବାଳ ନ କଟାଇବାର ବ୍ରତ ନେଇଛ । ପଥ ଝଡ଼ାଉଥିବା ପବନ ତୁମ୍ଭମାନଙ୍କ ପତ୍ରଗୁଡ଼ିକୁ ଝଡ଼ାଇ ଦେଇଥାଏ; କିନ୍ତୁ ତୁମ୍ଭେମାନେ କିଛି କହି ନଥାଅ । କେହି ଲୋକ ତୁମ୍ଭମାନଙ୍କ ଅଙ୍ଗଗୁଡ଼ିକୁ କାଟି ଦେଲେ ବି ତୁମ୍ଭେମାନେ ତା'ହା'ର କିଛି ହେଲେ ପ୍ରତିକାର କରି ନଥାଅ । ତୁମ୍ଭେମାନେ ଅଂଶତଃଗ୍ରହଣ ମୌନ-ବ୍ରତ ଗ୍ରହଣ କରିଛ ; କିନ୍ତୁ ମୌନବ୍ରତ ମଧ୍ୟ ସମୟ ଆସିଲେ ମୌନବ୍ରତକୁ ଭଙ୍ଗ କରିଥାଏ । ତୁମ୍ଭମାନେ ମଧ୍ୟ ପରୋପକାର ଲାଗି ନିଜ ମୌନ-ବ୍ରତକୁ ଭାଙ୍ଗି ଆମକୁ ଶ୍ରୀରାଧାକାନ୍ତ କେଉଁଠି ଅଛନ୍ତି, ତା'ହା କୁହ । ଦେଖ, ସେ ହେଉଛନ୍ତି ମେଘ ଭଳି ଶ୍ୟାମଳ ରଙ୍ଗର । ତାଙ୍କ କାନ୍ଧରେ ଝୁଲିକି ଉଠୁଥିବା ହଳଦିଆ ରଙ୍ଗର ଚାଦର ପଡ଼ିଛି । ସେ ନିଶ୍ଚୟ ନିଜ ପ୍ରିୟତମାଙ୍କ କାନ୍ଧ ଉପରେ ହାତ ରଖି ଯାଇଛନ୍ତି । ମେଘ କୋଳରେ ବିଜୁଳି ଭଳି ତାଙ୍କ ପ୍ରିୟତମା ତାଙ୍କ ଦେହରେ ଲାଗି ରହିଥିବେ ; କିନ୍ତୁ ସେ ଗରଜୁ ନଥିବେ; ଅବଶ୍ୟ ରସର ବର୍ଷା କରୁଥିବେ । ଆମର ଅନୁମାନ ଯେ

ଘନଶ୍ୟାମଙ୍କ ଅମୃତ ରସର କେତୋଟି ବିନ୍ଦୁ ନିଶ୍ଚୟ ତୁମ୍ଭମାନଙ୍କ ଉପରେ ପଡ଼ିଛି । ସେହି ବିନ୍ଦୁଗୁଡ଼ିକ ନପଡ଼ି ଥିଲେ ତୁମ୍ଭମାନଙ୍କଠାରେ ଏତେଟା ପ୍ରସନ୍ନତା ଉଛୁଳି ଉଠୁ ନଥାନ୍ତା । ତୁମ୍ଭେମାନେ ଯେତେବେଳେ ନଇଁ ପଡ଼ି ଥର ଥର ତାଙ୍କ ପାଦ ଦୁଇଟିକୁ ଚୁମିଥିବ, ସେତେବେଳେ ସେ ନିଶ୍ଚୟ ତୁମ୍ଭମାନଙ୍କ ଅଭିବାଦନ କରି ଅଭିନନ୍ଦନ କରିଥିବେ; କାରଣ ସେ ହେଉଛନ୍ତି କୃତଜ୍ଞ, ନମ୍ର ଓ ଗୁଣଗ୍ରାହୀ ପୁରୁଷ । କୌଣସି ଦୋଷରୁ ଆମ୍ଭମାନଙ୍କ ଉପରେ ସେ ରାଗିଯାଇଛନ୍ତି । ଦୋଷ ହେଉଛି ଆମ୍ଭମାନଙ୍କର, ତାଙ୍କର କିନ୍ତୁ ନୁହେଁ । ସେ ତ ହେଉଛନ୍ତି ନିର୍ଦ୍ଦୋଷ ଏବଂ ସମସ୍ତଙ୍କ ପ୍ରତି ତାଙ୍କର ସମାନ ଦୃଷ୍ଟି । ସେ ବ୍ୟାପକ ଓ ବିରାଟ । ସେ ପରିପୂର୍ଣ୍ଣ ଓ ସର୍ବଗତ ।"

ଅଗରେ ଥିବା ଫୁଲଭରା ଲତାମାନଙ୍କୁ ଦେଖି ସେମାନେ କହିଲେ—"ଏହି ପୁରୁଷ ଗଛମାନେ ହୁଏତ ଶ୍ୟାମସୁନ୍ଦରଙ୍କୁ ଏଡ଼େଇ ଦେଇଥିବେ; କାରଣ ପୁରୁଷଜାତି ବଡ଼ କଠୋର ; କିନ୍ତୁ ଏହି ଲତାମାନେ ଭାରି କୋମଳ । ସାମାନ୍ୟ ଟିକିଏ ପବନରେ ଏମାନେ ଥରି ଉଠିଥାନ୍ତି ଏବଂ ସାମାନ୍ୟ ରସ ବର୍ଷାରେ ହସରେ ଫୁଲି ଉଠୁଥାନ୍ତି । ବିନା ଡାକରାରେ ବି ଏମାନେ ଗଛମାନଙ୍କ ସହିତ ମିଳିତ ହୋଇଥାନ୍ତି ଏବଂ ସେମାନଙ୍କ ଦେହରେ ଜାକି ହୋଇ ରହିଥାନ୍ତି । ଛୁଣ୍ଡିଗଲେ ମଧ୍ୟ ଏମାନେ ଗଛଗୁଡିକୁ ଛାଡ଼ନ୍ତି ନାହିଁ । ଏମାନେ ଅନୁରାଗରେ ଭରପୂର । ଏମାନଙ୍କୁ ଆମେ ପଚାରିବା, ଏମାନଙ୍କର ସବୁ କାମନା ପୂର୍ଣ୍ଣ ହୋଇଛି । ଏମାନେ ତେଣୁ ହେଉଛନ୍ତି ଆପ୍ତକାମା । ଏମାନେ ଆଠ ପହର ଧରି ପ୍ରାଣପତିମାନଙ୍କର ପ୍ରେମଭରା ଆଲିଙ୍ଗନର ସୁଖ ପାଉଥାନ୍ତି । ତଥାପି ଏମାନଙ୍କର ଦେହ ରୋମାଞ୍ଚିତ ହୋଇ ଉଠୁଛି । ଏଥିରୁ ଜଣା ପଡ଼ୁଛି ଯେ ଏମାନେ ଭଗବାନଙ୍କ ଲାଲ୍ ଲାଲ୍ ନଖଗୁଡ଼ିକର ସୁକୋମଳ ସ୍ପର୍ଶ ନିଶ୍ଚୟ ପାଇଛନ୍ତି । ଶ୍ୟାମସୁନ୍ଦର ନିଜର ପ୍ରେମମୟୀ ସଖୀଙ୍କୁ ସଜାଇବା ପାଇଁ ଏମାନଙ୍କୁ ଫୁଲ ମାଗିଥିବେ ଏବଂ ଏମାନେ ଉଦାରତାର ସହିତ ନିଜର ଶାଖା-ରୂପୀ ହାତଗୁଡ଼ିକୁ ଲମ୍ବେଇ ଦେଇଥିବେ ଏବଂ ହସି ହସି କହିଥିବେ—"ହେ ବ୍ରଜବଲ୍ଲଭ ! ଏହି ଫୁଲଗୁଡ଼ିକରୁ ଯାହା ବି ଆପଣଙ୍କୁ ଭଲ ଲାଗୁଛି ତାହା ଆପଣ ନିଜ ହାତରେ ତୋଳି ନିଅନ୍ତୁ । ସେତେବେଳେ ଅନୁରାଗଭରା ହୃଦୟ ନେଇ ଶ୍ରୀକୃଷ୍ଣ ଏମାନଙ୍କର ଶାଖାଗୁଡ଼ିକୁ ନୁଆଁଇ ଦେଇ ସେଗୁଡ଼ିକୁ ଖୁବ୍ ଜୋର୍‌ରେ ହଲାଇ ଦେଇଥିବେ ଏବଂ ଫୁଲ ତୋଳିବାକୁ ଆରମ୍ଭ କରିଥିବେ । ସେହି ଶାଖାଗୁଡ଼ିକ ବି ନିଜେ ଶୀଘ୍ର ଶୀଘ୍ର ଉଛୁଳି ଉଠି ଆପଣା ଛାଏଁ ତାଙ୍କ ଗାଲକୁ ଛୁଇଁଥିବେ । କାରଣ ପ୍ରିୟତମଙ୍କ କମନୀୟ କପୋଳର ସୁଖଦ ସ୍ପର୍ଶ ବିନା ଏଭଳି ପ୍ରଫୁଲ୍ଲତା ଆସି ପାରିବ ନାହିଁ । ଆଃ ! ଏମାନଙ୍କର କେଡ଼େ ସୌଭାଗ୍ୟ ସତେ ! ଯେଉଁ ଆଲିଙ୍ଗନ ଲାଗି ଲକ୍ଷ୍ମୀଦେବୀ ପଦ୍ମ-ବନକୁ ଯାଇ ସେଠାରେ ଏକାନ୍ତ-ବାସ କରି ଘୋର ତପସ୍ୟା କରିଥାନ୍ତି, ଯେଉଁ ଆଲିଙ୍ଗନ ଲାଗି ତୁଳସୀ ଦେବୀ ଗଛଟିଏ ହୋଇ ବର୍ଷା, ଶୀତ ଓ ଗରମ ଆଦି ସହି ଘୋର ତପସ୍ୟା କରିଥାନ୍ତି, ସେହି ଆଲିଙ୍ଗନକୁ ଏହି

ଲତାମାନେ ନିଜ ଫୁଲଗୁଡ଼ିକ ଯୋଗରୁ ସିନା ଖୁବ୍ ସହଜରେ ପାଇପାରିଛନ୍ତି। ସେଥିପାଇଁ ଏହି ଲୋକ ପ୍ରବାଦଟି ସତ—ପ୍ରିୟତମଙ୍କୁ ଖୁସି କରାଇବା ଅପେକ୍ଷା ସବୁଠାରୁ ଭଲ ହେଉଛି ପ୍ରିୟତମଙ୍କ ପ୍ରିୟତମଙ୍କୁ ଖୁସି କରାଇବା ପାଇଁ ସର୍ବଦା ଚେଷ୍ଟା କରିବା। ପ୍ରିୟତମଙ୍କର ଯେ ପ୍ରିୟ ସେ ଯଦି ପ୍ରସନ୍ନ ହୋଇଗଲେ, ତେବେ ତାଙ୍କ ପ୍ରସନ୍ନତା ଦେଇଥିବା କାରଣରୁ ପ୍ରିୟତମ ମଧ୍ୟ ପ୍ରସନ୍ନ ହୋଇ ଯାଇଥାନ୍ତି। ଯେଉଁମାନଙ୍କ ଫୁଲରେ ଶ୍ୟାମସୁନ୍ଦର ନିଜ ପ୍ରିୟତମାଙ୍କ କେଶ ସଜାଇଥିଲେ, ସେହି ଲତାମାନେ ଧନ୍ୟ! ହାୟ! ଆମେ ଅଭାଗିନୀ। ଆମ ଭାଗ୍ୟ ଲତାମାନଙ୍କ ଭାଗ୍ୟଠାରୁ ସାନ। ଆମେ ସ୍ତ୍ରୀ ନ ହୋଇ ଯଦି ବୃନ୍ଦାବନର କୌଣସି କୁଞ୍ଜ-ଲତା ହୋଇଥାନ୍ତୁ, ତେବେ ଶ୍ୟାମସୁନ୍ଦର ତାଙ୍କର କଅଁ-ଳିଆ ହାତରେ ଆମ ଫୁଲଗୁଡ଼ିକୁ ତୋଳି ନେଉଥାନ୍ତେ ଏବଂ ଆମର ଅଣ୍ଡା ଗୁଳ ତଳେ ନିଜ ପ୍ରିୟତମାଙ୍କ ସାଥିରେ ଖେଳା-ଲୀଳା କରୁଥାନ୍ତେ। ନିଜର ପ୍ରଣୟଭରା କଟାକ୍ଷରେ ଆମ ଅଡ଼କୁ ଚାହିଁ ପ୍ରିୟତମାଙ୍କୁ ଖୁସି କରାଇବା ଲାଗି ଯେ ଆମର ଶୋଭାକୁ ତାଙ୍କୁ ଦେଖାଉ-ଥାନ୍ତେ, ଆମର ଗୁଣ ଗାଉଥାନ୍ତେ।

ହାୟ! ଯେଉଁ ଦେହରେ ଆମର ଶ୍ୟାମସୁନ୍ଦରଙ୍କ ସହିତ ଭେଟ ହୋଇପାରୁ ନାହିଁ, ସେହି ମଣିଷଦେହ ଧରିବାରେ ଆମର କିବା ଲାଭ? ଆମଠାରୁ ତ ଏହି ବୃନ୍ଦାବନର ଏହି କଙ୍କରଗୁଡ଼ିକ ଆହୁରି ଅଧିକ ଭାଗ୍ୟବାନ୍। କାରଣ ସେମାନେ କଠିନ ହୋଇଥିଲେ ମଧ୍ୟ ଶ୍ୟାମସୁନ୍ଦରଙ୍କ ପାଦଦୁଇଟିର ପରଶ ପାଇ କୋମଳ ହୋଇ ଉଠିଛନ୍ତି। ବୃନ୍ଦାବନର ଏହି ଶୁଖିଲା ପତ୍ରଗୁଡ଼ିକ ନିଜ ଘରଦ୍ୱାର ହରାଇ ଏଣେତେଣେ ବିସ୍ତାରିତ ହୋଇପଡ଼ିଛନ୍ତି। ପବନ ସେଗୁଡ଼ିକୁ ଯେଉଁଠି ମନେ ସେଠିକି ଉଡ଼ାଇ ନେଇ ଯାଉଛି। ଏଗୁଡ଼ିକ ଆମଠାରୁ ବି ବେଶି ଭାଗ୍ୟବାନ୍; କାରଣ ଏଗୁଡ଼ିକ କେବେ କେବେ ପ୍ରିୟତମ ଓ ତାଙ୍କ ପ୍ରିୟତମାଙ୍କ ପାଦପଦ୍ମକୁ ଛୁଇଁବାର ସୌଭାଗ୍ୟ ପାଇପାରୁଛନ୍ତି। ଅତଏବ ବୁଲିବାଟା ଏହି ଶୁଖିଲା ପତ୍ରଗୁଡ଼ିକ ଲାଗି ସାର୍ଥକତା ହୋଇ ଉଠୁଛି। ଆମେସବୁ ରସଭରା ନାରୀ। ଆମେ ମଧ୍ୟ ବୁଲୁଛୁ; କିନ୍ତୁ ଆମକୁ ଶ୍ୟାମସୁନ୍ଦରଙ୍କ ଭେଟ ମିଳୁ ନାହିଁ। ଆମେ କ'ଣ କରିବୁ? କୁଆଡ଼େ ଯିବୁ? କାହାକୁ ପଚାରିବୁ? କିଏ ଆମକୁ ଶ୍ୟାମସୁନ୍ଦରଙ୍କ ରହିବା ଜାଗା କଥା କହିଦେବ? କିଏ ଆମକୁ ତାଙ୍କ ସହିତ ମିଳାଇ ଦେବ? କ'ଣ କଲେ ଆମକୁ ଶ୍ୟାମସୁନ୍ଦର ମିଳିପାରିବେ? କେଉଁ ସାଧନଦ୍ୱାରା ଅଥବା କେଉଁ ଯୁକ୍ତି ବଳରେ ସେ ଆମର ହୃଦୟ-ହାର ହୋଇପାରିବେ? କିପରି ଭାବରେ ସେ ଆମକୁ ଆପଣାର କରି ନେବେ? କେବେ ସେ ଆମକୁ ହାତରେ ଜାକି ଧରିବେ? କେବେ ସେ ଆମକୁ ତାଙ୍କ କୋଳରେ ଧରି ରଖିବେ?"

ସୂତ କହୁଛନ୍ତି—"ହେ ମୁନିମାନେ! ଏହିପରି ଭାବରେ ଶ୍ରୀକୃଷ୍ଣଙ୍କ ବିରହରେ ବ୍ୟାକୁଳ ହୋଇ ବ୍ରଜାଙ୍ଗନାମାନେ ବିରହ-ବେଦନାରେ ବିହ୍ୱଳିତା ହୋଇ ଉଠିଲେ ଏବଂ ଗୋଟିଏ ବଣରୁ ଅନ୍ୟ ଗୋଟିଏ ବଣକୁ ଯାଇ ବୁଲିବାକୁ ଲାଗିଲେ। ଏପରି କରି ସେମାନେ

ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଖୋଜିବାକୁ ଲାଗିଲେ । ତାଙ୍କୁ ଖୋଜି ଖୋଜି ସେମାନେ ତନ୍ମୟ ହୋଇ ଉଠିଲେ ଏବଂ ତାଙ୍କର ବିଭିନ୍ନ ଲୀଳାଗୁଡ଼ିକୁ ଅନୁକରଣ କରିବାକୁ ଲାଗିଲେ ।"

### ଛପ୍ପୟ

ଐସେ କହି-କହି ବୈନ ବୈନତେଂ ନୀର ବହାୱେଂ ।
କବହୁଁ କରୈଂ ପ୍ରଲାପ କବହୁଁ ସେୱେଂ ପଛ ତାୱେଂ ॥
କରୈଂ କୃଷ୍ଣକୋ ଧ୍ୟାନ ପୁକାରେଂ ନାମ ନିରନ୍ତର ।
ନାମ ଧ୍ୟାନତେଂ ଭଇଂ ଗୋପିକା ତନ୍ମୟ ସତ୍ୱର ॥
କୃଷ୍ଣ ସରସ କ୍ରୀଡ଼ା କରେଂ, ବନୀ ପୂତନା ଅପର ହରି ।
ଜ୍ୟୋଂ କୋ ତ୍ୟୋଂ ଅଭିନୟ କରେଂ, ନୟନ ମୂଁଦି ପୟପାନ କରି ॥



## ଶ୍ରୀକୃଷ୍ଣଙ୍କ ଲୀଳାନୁକରଣ

ଇତ୍ୟୁନ୍ମତ୍ତବଚୋ ଗୋପ୍ୟଃ କୃଷ୍ଣାନ୍ୱେଷଣକାତରାଃ ।
ଲୀଳା ଭଗବତସ୍ତାସ୍ତା ହ୍ୟନୁଚକ୍ରୁସ୍ତଦାତ୍ମିକାଃ ॥

(ଶ୍ରୀଭା ୧୦ ସ୍କ ୩୦ ଅ ୧୪ ଶ୍ଳୋକ)

### ଛପ୍ପୟ

ଏକ ବନି ଗଈ ଶକଟ କୃଷ୍ଣ ବନି ଅପର ଗିରାୱେ ।
ତୃଣାବର୍ତ୍ତ ବନି ହରହି ଅପର ହରି ବନି ହରି ଜାୱେ ॥
ବନି ବତ୍ସାସୁର ଏକ କୃଷ୍ଣ ବଛରନ ବହୁକାୱେଁ ।
କୃଷ୍ଣ ବନି ତିହି ମାରି ପରମ ପଦ ତାହି ପଠାୱେଂ ॥
ବନି ବନୱାରୀ ବ୍ରଜବଧୂ, ବେନୁ ବଜାୱେଁ ବନନମହିଁ ।
କଛୁ ଗୋପ ଗୌଁୟା ବନୀଂ, ସୁନି ଧୁନି ଆୱେଂ ରମନଜହିଁ ॥

ସଂସାରରେ ଏ କଥା ଦେଖାଯାଏ ଯେ ଯାହା ବିଷୟରେ ଯେ ନିରନ୍ତର ଚିନ୍ତା କରୁଥାଏ, ସେ ସେଇଆ ହିଁ ହୋଇଯାଏ । ବିଚାରଗୁଡ଼ିକର ପ୍ରଭାବ ମନ ଉପରେ ଖୁବ୍ ପଡ଼ୁଥାଏ । ମଣିଷ ଯାହା ସଂକଳ୍ପ କରି ବସିବ, ତାହା ହିଁ ହୋଇଯିବ । ଏହି ସଂସାର ହିଁ ହେଉଛି ସଂକଳ୍ପର ଅଧୀନ । ଆମ ବିଚାର ହିଁ ଆକୃତିକୁ ଗଢ଼ିଥାଏ । ମାଟିରେ, ପଥରରେ ଓ କାଗଜରେ ନିଜର କଳ୍ପନା ଅନୁସାରେ ଚିତ୍ରକାର ଆକୃତି ତିଆରି କରିଥାଏ । ସେଥିପାଇଁ ବେଦରେ ବାରମ୍ବାର କୁହାଯାଇଛି ଯେ ଆମର ସଂକଳ୍ପ ହେଉଛି ସତ୍ୟ, ଶିବ ସୁନ୍ଦର ଓ କଲ୍ୟାଣକର ହେଉ । ଏମିତି ଗୋଟିଏ ଘଟଣା ଥରେ ଘଟିଥିଲା । କୌଣସି ଜଣେ ସ୍ତ୍ରୀ ନିଜ ପତିଙ୍କୁ ଖୁବ୍ ଭଲ ପାଉଥିଲା । ଯୁବାବସ୍ଥାରେ ତା'ର ପତି କୌଣସି ଗୋଟିଏ ବିଦେଶକୁ ଚାଲିଯାଇଥିଲେ । ଗଲାବେଳେ ସେ ସ୍ତ୍ରୀକୁ ଶୀଘ୍ର ଫେରି ଆସିବେ ବୋଲି କହି ଯାଇଥିଲେ । ଦୈବ ଯୋଗକୁ ବିଦେଶକୁ ଯିବା ପରେ ତାଙ୍କର କାଳ ହୋଇଗଲା । ଇଆଡ଼େ ତାଙ୍କ ସ୍ତ୍ରୀ ତାଙ୍କୁ ନିତିଦିନ ପ୍ରତୀକ୍ଷା କରି କରି ପାଗଳୀ ହୋଇଗଲା । ପାଗଳାମି ଅବସ୍ଥାରେ ତା' ମନରେ ଏହି ସଂକଳ୍ପ ରହିଲା, 'ମୁଁ ଯୁବତୀ । ମୋ' ସ୍ୱାମୀ ଏବେ ଆସିଯିବେ ।' ଏହିପରି ପାଗଳୀ ଅବସ୍ଥାରେ ତା'ର ବୟସ ୭୦-୮୦ ବର୍ଷ ହୋଇଗଲା ; କିନ୍ତୁ ତା'ର ଗୋଟିଏ ହେଲେ ବାଳ ଧଳା ହେଲା ନାହିଁ, କାରଣ ସେ ଯେ ଯୁବତୀ, ଏ କଥା ସେ ସବୁବେଳେ ଅନୁଭବ କରୁଥିଲା । ଭାବଗୁଡ଼ିକର ମୁହଁର ଆକୃତି ଉପରେ ଖୁବ୍ ପ୍ରଭାବ ପଡ଼ୁଥାଏ । ଅନେକ ଲୋକ ମୁହଁର ଆକୃତିକୁ ହିଁ ଦେଖି ମଣିଷର ହୃଦୟର ଭାବକୁ ବୁଝିନେଇ ପାରିଥାନ୍ତି ।"

ସୂତ କହିଚାଲିଥାନ୍ତି—"ହେ ମୁନିମାନେ ! ଶ୍ରୀକୃଷ୍ଣଙ୍କୁ ଚିନ୍ତା କରି କରି ସେହି ବ୍ରଜାଙ୍ଗନାମାନେ କୃଷ୍ଣମୟ ହୋଇଗଲେ । ଏବେ ସେମାନେ ନିଜେ ନିଜେ ଶ୍ରୀକୃଷ୍ଣଙ୍କ ଲୀଳାଗୁଡ଼ିକୁ ଅନୁକରଣ କରିବାକୁ ଲାଗିଲେ । ସେମାନେ ଅନ୍ତରରୁ ଆସୁଥିବା ପ୍ରେରଣା ବଳରେ ଶ୍ରୀକୃଷ୍ଣଙ୍କ ଚରିତକୁ ଅଭିନୟ କରିବାକୁ ଲାଗିଲେ । ଜଣେ ଗୋପୀ ବାଳକୃଷ୍ଣ ହୋଇଗଲା । ଆଉ ଜଣେ ଗୋପୀ ପୂତନା ହୋଇ ଆସିଲା । ସେ ତା'ର ସ୍ତନରୁ କ୍ଷୀର ପିଇବାକୁ ଲାଗିଲା । ସେତେବେଳେ ସେ ବିଷର ପ୍ରଭାବ ଅନୁଭବ କରି ଭୂଇଁ ଉପରେ କଚାଡ଼ି ହୋଇ ପଡ଼ିଲା । ଆଉ ଜଣେ ଗୋପୀ ଶକଟାସୁର ହେଲା । ପୁଣି ଆଉ ଜଣେ ଶ୍ରୀକୃଷ୍ଣ ହୋଇ ତାକୁ ତଳେ ପକାଇ ଦେଲା ଏବଂ ତାକୁ ଗୋଇଠା ମାରି ଶୁଆଇ ଦେଲା ।

ଆଉ ଜଣେ ଗୋପୀ ନିଜ ଜଙ୍ଘକୁ ମେଲାଇ ତୃଣାବର୍ତ୍ତ ଅସୁରକୁ ଅନୁକରଣ କଲା । ଯେଉଁ ଅନ୍ୟ ଜଣକ କୃଷ୍ଣ ହୋଇଥିଲା, ତାକୁ ସେ ଉଠାଇ କରି ଉଡ଼ାଇ ନେଇଗଲା । ପୁଣି ଶ୍ରୀକୃଷ୍ଣ ବଣରେ ଖେଳ ଖେଳ ଅତି ସହଜରେ ତାକୁ ମାରିଦେଲେ । ମୁଁ ଶ୍ରୀକୃଷ୍ଣ ବୋଲି ଜଣେ ଗୋପୀ କହୁଥାଏ । ମୁଁ ବଳରାମ ବୋଲି ଆଉ ଜଣେ ଗୋପୀ କହୁଥାଏ । ଦୁହେଁ ସାଙ୍ଗ ହୋଇ ବଂଶୀ ବଜାଇବାକୁ ଅନୁକରଣ କରୁଥାନ୍ତି । ସେ ଦୁହେଁ କେତେକ ଗୋପୀଙ୍କୁ

ଗାଈ କରନ୍ତି ଏବଂ ଆଉ କେତେକ ଗୋପୀଙ୍କୁ ବାଛୁରୀ କରନ୍ତି । ସେହି ବାଛୁରୀ ହୋଇଥିବା ଗୋପୀମାନଙ୍କ ମେଳରେ କେହି ଜଣେ ଗୋପୀ ବତ୍ସାସୁର ହୋଇ ଅସିଯାଏ ଏବଂ ସବୁ ବାଛୁରୀଙ୍କୁ ନିଜ ପାଦର ଆଘାତ କରେ । ସେ ତେବେଳେ ଶ୍ରୀକୃଷ୍ଣ ରୂପ ଧରିଥିବା ଗୋପୀ ସେହି ବତ୍ସାସୁର ରୂପ ଧରିଥିବା ଗୋପୀକୁ ମାରି ପକାଇଦିଏ । ସମସ୍ତେ ମିଶିକରି କହନ୍ତି—"ଧନ୍ୟ ଧନ୍ୟ ଭାଇ ! ତୁମେ ଖୁବ୍ ଭଲ କାମଟାଏ କଲ । ଏଇଟା ତ କୌଣସି ଗୋଟାଏ ଦୁଷ୍ଟ ଅସୁର ଥିଲା ଏବଂ ବାଛୁରୀମାନଙ୍କ ମେଳରେ ଆସି ରହି ଯାଇଥିଲା । ତୁମେ ଏହାକୁ ମାରି ଖୁବ୍ ଭଲ କଲ, ଖୁବ୍ ଭଲ କଲ ।"

କୌଣସି ଗୋପୀ ବଂଶୀଧର ହୋଇ ବଂଶୀ ବଜାଉଥାଏ । ଅନେକ ଗୋପୀ ଗାଈ ହୋଇ ଘାସ ଖୁଣ୍ଟିବାର ଅଭିନୟ କରୁଥାନ୍ତି । ସେମାନଙ୍କୁ ଦୂରକୁ ଯାଇଥିବାର ଦେଖି ଶ୍ରୀକୃଷ୍ଣ ବଂଶୀ-ତାନ ଛାଡ଼ୁଥାନ୍ତି । ବଂଶୀ-ଧ୍ୱନି ଶୁଣି ଗାଈ ହୋଇଥିବା ଗୋପୀମାନେ ହମ୍ବାରଡ଼ି ଛାଡ଼ି ଆସନ୍ତି ଏବଂ ଶ୍ରୀକୃଷ୍ଣ ରୂପ ଧରିଥିବା ଗୋପୀର ଚାରିପଟେ ଘେରି ଠିଆ ହୁଅନ୍ତି । ଏହିପରି ଭାବରେ ବିରହରେ ମଧ୍ୟ ସେମାନେ ଶ୍ରୀକୃଷ୍ଣଙ୍କ ଲୀଳା ଅନୁକରଣ କରି ମିଳନର ସୁଖକୁ ଅନୁଭବ କରିବାକୁ ଲାଗିଲେ ।

ଅଉ କୌଣସି ଗୋପୀ ଶ୍ରୀକୃଷ୍ଣଙ୍କ ଅଙ୍ଗଭଙ୍ଗୀକୁ ଅନୁକରଣ କରୁଥାଏ । ସେ ନିଜ ଦେହକୁ କଚଟା ବଙ୍କେଇ କରି ଧୀରେ ଧୀରେ ବଂଶୀ ବଜାଇ ବଜାଇ ଚାଲୁଥାଏ ଏବଂ କହୁଥାଏ—"ଦେଖ, ମୁଁ ହେଉଛି ଶ୍ରୀକୃଷ୍ଣ । ମୋର ଲଳିତ ଗତି ଆଡ଼େ ଚାହିଁ । ମୁଁ ହେଉଛି ରାଧାରମଣ । ମତେ ହିଁ ଲୋକମାନେ ଗୋପୀଜନବଲ୍ଲଭ ବୋଲି କହୁଥାନ୍ତି ।"

ପୁଣି ସମସ୍ତେ ମିଶି ଗୋବର୍ଦ୍ଧନ-ଧାରଣର ଲୀଳାକୁ ଅନୁକରଣ କରୁଥାନ୍ତି । କେତେକ ଗୋପୀ ଇନ୍ଦ୍ରଯଜ୍ଞ କରିବା ପାଇଁ ଚେଷ୍ଟା କରୁଥାନ୍ତି । ଜଣେ ଶ୍ରୀକୃଷ୍ଣ ହୋଇ ସେମାନଙ୍କୁ ଏହାର କାରଣ ପଚାରୁଥାଏ । ସେମାନେ ଏହାର କାରଣ କହିବା ଉତ୍ତାରୁ କୃଷ୍ଣରୂପ ଧରିଥିବା ଗୋପୀ ଜଣକ ସେମାନଙ୍କୁ ଇନ୍ଦ୍ରଙ୍କ ଲାଗି ଯଜ୍ଞ ନକରି ଗିରିଗୋବର୍ଦ୍ଧନ-ଯଜ୍ଞ କରିବା ପାଇଁ ପରାମର୍ଶ ଦେଇ ରାଜି କରାନ୍ତି । ସେଉଠୁ ସମସ୍ତେ ଗୋବର୍ଦ୍ଧନ-ଯଜ୍ଞ କରିବାକୁ ଲାଗନ୍ତି । ଦେବେନ୍ଦ୍ର ସେମାନଙ୍କ ଉପରେ କୁଆପଥର ବର୍ଷା କରାନ୍ତି । ସେତେବେଳେ ବ୍ରଜବାସୀ ରୂପ ଧରିଥିବା ବ୍ରଜାଙ୍ଗନାମାନେ ଭୟରେ କାତର ହୋଇ ବ୍ରଜରାଜ ହୋଇଥିବା ଗୋପୀକୁ ବିନୟ କରନ୍ତି । ସେଉଠୁ ବ୍ରଜବଲ୍ଲଭ ହୋଇଥିବା ବ୍ରଜାଙ୍ଗନା ଜଣକ ହାତ ଉଠାଇ କହେ—"ଅହେ ବ୍ରଜର ଲୋକମାନେ । ତୁମ୍ଭେମାନେ ବର୍ଷା ଓ ପବନକୁ କମା ଡର ନାହିଁ । ଇନ୍ଦ୍ର ତୁମ୍ଭମାନଙ୍କର କିଛି ହିଁ କରିପାରିବ ନାହିଁ । ମୁଁ ଦୁଷ୍ଟମାନଙ୍କୁ ଶାସନ କରିଥାଏ । ସେହି ମୁଁ ଏବେ ତୁମ୍ଭମାନଙ୍କ ଆଗରେ ହାଜର ଅଛୁ । ମୁଁ ତୁମ୍ଭମାନଙ୍କୁ ସବୁ ବିପଦରୁ ଉଦ୍ଧାର କରିଦେବି । ତୁମ୍ଭେମାନେ କିଛି ଚିନ୍ତା କରନାହିଁ ।

ମୋର ଅବତାରର ଉଦ୍ଦେଶ୍ୟ ହେଉଛି ସାଧୁମାନଙ୍କୁ ପାଳିବା ଏବଂ ଦୁଷ୍ଟମାନଙ୍କୁ ମାରିବା ।" ଏହା କହି ସେ ନିଜର ଓଢ଼ଣୀଟିକୁ ମେଲାଇ ଦେଉଥାଏ । ଗୋପାଳ ହୋଇଥିବା ଅନ୍ୟ ଗୋପୀମାନେ ବାଡ଼ି ଦ୍ୱାରା ତା'ର ସହାୟତା କରୁଥାନ୍ତି । ଏହିପରି ଭାବରେ ସେହି ଗୋବର୍ଦ୍ଧନ-ଧାରଣ-ଲୀଳାର ଅଭିନୟ ହେଉଥାଏ ।

ତାହାପରେ ସେମାନେ କାଳୀୟଦଳନ-ଲୀଳା କରିବାକୁ ଲାଗନ୍ତି । କୌଣସି ଜଣେ ଗୋପୀ କାଳୀୟ ନାଗସାପ ହେଉଥାଏ । ଅନେକ ଗୋପୀ ଗାଈହୋଇ କାଳୀୟ-ହ୍ରଦରେ ପାଣି ପିଇବା ପାଇଁ ଯାଉଥାନ୍ତି । ସେମାନେ ବିଷମିଶା ପାଣି ପିଇ ମରିଯିବାର ଅଭିନୟ କରନ୍ତି । ଅନ୍ୟ ଜଣେ ଗୋପୀ ଶ୍ରୀକୃଷ୍ଣ ହୋଇ କାଳୀୟ-ହ୍ରଦକୁ ଡେଇଁପଡ଼େ ଏବଂ କାଳୀୟ ସାପକୁ ଡାକ କରି ବଡ଼ ଦମ୍ଭର ସହିତ କହେ—"ଆରେ ଦୁଷ୍ଟ ! ତୁ ଠିଆ ହୁଅ । ତୁ ବହୁତ ଉପଦ୍ରବ କଲୁଣି । ଆଜି ମୁଁ ତତେ ଏଠାରୁ ବାହାର କରି ଚାଲିଯିବା ପାଇଁ ଛାଡ଼ିଦେବି ନାହିଁ ।" ଏହା କହି କାଳୀୟ ହୋଇଥିବା ଗୋପୀ ଉପରେ ଶ୍ରୀକୃଷ୍ଣଙ୍କ ଅନୁକରଣ କରୁଥିବା ଗୋପୀ ଜଣକ ଚଢ଼ିଯାଏ ଏବଂ ତା'ର ଫଣାଗୁଡ଼ିକ ଉପରେ ନାଚିବାର ଅଭିନୟ ଦେଖାଏ । ପୁଣି କେତେଜଣ ଗୋପୀ ନାଗ-ପତ୍ନୀ ହୋଇ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରନ୍ତି । ସେଇଠୁ ଶ୍ରୀକୃଷ୍ଣ ହୋଇଥିବା ଗୋପୀ କାଳୀୟକୁ ଛାଡ଼ିଦିଏ ।

ଏଥି ଭିତରେ ସମସ୍ତେ ନିଆଁର ଶିଖାରେ ଜଳିପୋଡ଼ି ଯାଇ ଏଣେ ତେଣେ ଧାଇଁ ପଳାଇବାର ଅଭିନୟ କରନ୍ତି । ସମସ୍ତେ ଚିତ୍କାର କରି ଉଠନ୍ତି—"ଆରେ ଚାଲ, ପଳାଇ ଚାଲ । ବଣରେ ନିଆଁ ଲାଗିଯାଇଛି । ହେ ଶ୍ରୀକୃଷ୍ଣ ! ଆମକୁ ରକ୍ଷାକର । ଆମକୁ ରକ୍ଷାକର । ସେଇଠୁ ଜଣେ ଗୋପୀ ଶ୍ରୀକୃଷ୍ଣ ହୋଇ କହେ, 'ଆଗୋ ଗୋପୀମାନେ ! ବ୍ୟସ୍ତ ହେବାର କିଛି ନାହିଁ । ସମସ୍ତ ବିପତ୍ତିରୁ ମୁଁ ରକ୍ଷା କରିବା ଲୋକ । ସେହି ମୁଁ ଏବେ ତୁମ ସମସ୍ତଙ୍କ ଆଗରେ ହାଜର ଅଛି । ତୁମେ ସମସ୍ତେ ନିଜ ନିଜ ଆଖିଗୁଡ଼ିକୁ ବୁଜିଦିଅ । ମୁଁ ଏବେ ତୁମ ସମସ୍ତଙ୍କୁ ବଡ଼ରେ ନିଆଁରୁ ରକ୍ଷା କରିଦେବି ।" ଏହାଶୁଣି ସମସ୍ତେ ନିଜ କଅଁଳିଆ ହାତ-ଗୁଡ଼ିକରେ କଳା କଳା ବଡ଼ ବଡ଼ ଆଖିଗୁଡ଼ିକୁ ବନ୍ଦ କରି ଦିଅନ୍ତି । ଶ୍ରୀକୃଷ୍ଣ-ରୂପ ଧରିଥିବା ଗୋପୀ ବଣର ନିଆଁକୁ ପିଇଯିବାର ଅଭିନୟ କରେ ।

ପୁଣି କେହି ଜଣେ ଗୋପୀ ଯଶୋଦା ହୋଇ ଦହି ଗୋଳାଇବାରେ ଲାଗିଯାଏ । ଅନ୍ୟ ଜଣେ ଗୋପୀ ଶ୍ରୀକୃଷ୍ଣ ହୋଇ ତାକୁ ଲହୁଣୀ ମାଗିବସେ । ଦୁଧହାଣ୍ଡି ଉତୁରି ପଡ଼ିଲା ବୋଲି ଜାଣିପାରି ଯଶୋଦା ହୋଇଥିବା ଗୋପୀ ଜଣକ ହାଣ୍ଡିକୁ ଓହ୍ଲାଇ ଦେବାପାଇଁ ଧାଇଁଯାଏ । ଏହି ସୁଯୋଗରେ କୃଷ୍ଣ ହୋଇଥିବା ଗୋପୀ ଲହୁଣୀ ଚୋରାଇ ଧରି ଧାଇଁ ପଳାଏ । ଶ୍ରୀକୃଷ୍ଣଙ୍କର ଏହି ବଗୁଲି ଆପଣ ଦେଖି ଯଶୋଦା ହୋଇଥିବା ଗୋପୀ ତାଙ୍କ ଉପରେ ରାଗିଯାଇ ତାଙ୍କୁ ଧରିବାପାଇଁ ଦଉଡ଼େ ଏବଂ ନିଜ ବେକର ଫୁଲ-ମାଳାରେ

ଶ୍ରୀକୃଷ୍ଣ-ରୂପୀ ଗୋପୀକୁ ବାନ୍ଧିବେ । ଏହିପରି ଭାବରେ ଗୋପୀମାନେ ଦାମୋଦର-ଲୀଳାର ଅନୁକରଣ କରୁଥାନ୍ତି । ମୁନିବର୍ଯ୍ୟ! ଗୋପୀମାନେ ଶ୍ରୀକୃଷ୍ଣଙ୍କ ଭୟକୁ ଅତି ସ୍ୱାଭାବିକ ଭାବରେ ଅନୁକରଣ କରୁଥାନ୍ତି ।

ସୂତ କହୁଛନ୍ତି—"ହେ ମୁନିମାନେ ! ମୁଁ କେତେ ବା ବର୍ଣ୍ଣନା କରିବି ? ବ୍ରଜାଙ୍ଗନାମାନେ ଶ୍ରୀକୃଷ୍ଣଙ୍କ ପ୍ରେମରେ ପାଗଳିନୀ ହୋଇ ଉଠିଥିଲେ । ସେମାନେ ଶ୍ରୀକୃଷ୍ଣ ଭାବରେ ଥିଲେ ଭାବିତ । ଏପରି ଅବସ୍ଥାରେ ସେମାନେ ତାଙ୍କର ଶ୍ରେଷ୍ଠ-ବଡ଼ ଅନେକ-ଗୁଡ଼ିଏ ଲୀଳାକୁ ଅନୁକରଣ କରିବାକୁ ଲାଗିଲେ । ସେମାନେ ଏ ବଣରୁ ଆଉ ବଣକୁ ଯାଉଥାନ୍ତି ଏବଂ ଯେଉଁଠିକି ଯାଉଥାନ୍ତି, ସେଠି ସେହି ଲୀଳାଗୁଡ଼ିକୁ ଅନୁକରଣ କରୁଥାନ୍ତି । କେତେବେଳେ ସେମାନେ ଗଛ, ଲତା, ବଣ-ବୁଦା ଆଦିଙ୍କୁ ପ୍ରଭୁ କେଉଁଠି ଅଛନ୍ତି ବୋଲି ପଚାରୁଥାନ୍ତି । ଏହିପରି ଭାବରେ ସେମାନେ ଯେତେବେଳେ ଖୁବ୍ ବିହ୍ୱଳ ହୋଇ ଉଠିଲେ, ସେତେବେଳେ ବାଲିରେ ଶ୍ୟାମସୁନ୍ଦରଙ୍କ ପାଦ-ଚିହ୍ନଗୁଡ଼ିକ ପଡ଼ିଥିବାର ସେମାନେ ଦେଖିବାକୁ ପାଇଲେ । ଭୂଇଁ ଉପରେ ପଡ଼ିଥିବା ସେହି ପାଦ-ଚିହ୍ନଗୁଡ଼ିକରେ ବଜ୍ରାଙ୍କୁଶ ଚିହ୍ନ ରହିଥିଲା । ସେଗୁଡ଼ିକୁ ଦେଖି ସେମାନଙ୍କର ଯାହା କିଛି ବିଚିତ୍ର ଦଶା ହେଲା, ସେ ସମ୍ପର୍କରେ କିଛିଟା ବିଶଦ୍ ବର୍ଣ୍ଣନା ମୁଁ ପରେ ଦେବି । ଆପଣମାନେ ସମସ୍ତେ ସମାହିତ ଚିତ୍ତରେ ଏହି ପରମପାବନ ପବିତ୍ର ପ୍ରସଙ୍ଗଟିକୁ ଶୁଣିବାପାଇଁ କୃପା କରନ୍ତୁ ।"

## ଛପ୍ପୟ

ବନି କାଳୀୟ ଫୁଙ୍କାର ଏକ ଗୋପୀ ଜବ ମାରେ ।
ବନି ନନ୍ଦନନ୍ଦନ ଅପର ନାଥିକେ ତାହି ନିକାରେ ।।
ଏକ କୃଷ୍ଣ ବନି ଗୋବର୍ଦ୍ଧନକୁଁ ଧାରେ କରତୈଂ ।
ବନି ଯଶୁମତି ହୁଇ ବନୀ ତାହି ବାନ୍ଧେ ଊଖଲତୈଂ ।।
ଦେହ ଗେହକୀ ସୁଧି ନ କଛୁ, ଭ୍ରମତ ପ୍ରେମ ରସମହୁଁ ପଗୀଂ ।
କନ୍ହୟୀ ହ୍ୱୈକେଂ ଅନୁକରଣ, ନଟୱରକୋ କରୱେ ଲଗୀଂ ।।



# ସାତ୍ତ୍ୱିକ ଈର୍ଷା

ଅନୟାରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ ।
ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍ରହଃ ॥

(ଶ୍ରୀ ଭା ୧୦ସ୍କ ୩୦ଅ, ୨୮ ଶ୍ଳୋକ)

## ଛପ୍ପୟ

ନିରଖେ ପ୍ରଭୁକେ ଚରଣ ଚିହ୍ନ ଅବନୀପେ ଉଭରିତ ।
ବଜ୍ରାଙ୍କୁଶ, ଧ୍ୱଜ, କମଲ ଯବାଦିକ ଚିହ୍ନନ ଚିହ୍ନିତ ॥
ଚଲ-ଚଲ ପଧାରୀ ଚରନ ନିରଖି ଅତଶୟ ଅକୁଲାଓ୍ୱତଂ ।
କହେଂ ସୋଭଗ୍ୟା ତାହି ପ୍ରିୟାକୋ ସଗଧ ସବହିତଂ ॥
କହି ଅନୁପମ ଅନୁରାଗ ଅତ, ରାଧାକୋ ହି କାନ୍ତମହିଁ ।
କରହିଂ ଭ୍ରମର ସମ ପାନ ହରି, ଅଧରାମୃତ ଏକାନ୍ତ ମହିଁ ॥

ଏହି କଥାଟି ବାରମ୍ବାର କୁହାଯାଇଛି ଯେ ଯେମିତି ଗୁଣ ଗୁଣହୀନଙ୍କୁ ପାଇଲେ ଦୋଷରେ ପରିଣତ ହୋଇଯାଇଥାଏ, ଠିକ୍ ସେମିତି ଅବଗୁଣ ବି ପ୍ରେମର ସଂସର୍ଗରେ ଆସି ଗୁଣ ହୋଇଯାଇଥାଏ । ଚିନ୍ତା, ଉନ୍ମାଦ ତଥା ଜଡ଼ତା ଆଦି ହେଉଛି ଲୌକିକ ଦୃଷ୍ଟିରେ ଦୋଷ ; କିନ୍ତୁ ଏଗୁଡ଼ିକ ପ୍ରେମର ସାତ୍ତ୍ୱିକ ଅନୁଭାବ ହୋଇଥିବାରୁ ଏଗୁଡ଼ିକୁ ଗୁଣ ବୋଲି ସ୍ୱୀକାର କରାଯାଇଥାଏ । ଠିକ୍ ସେମିତି ସଂସାରରେ କାହାର ସମ୍ପତ୍ତି ଆଦିକୁ ଦେଖି ତା'ପ୍ରତି ଈର୍ଷ୍ୟା ଭାବ ରଖିବାଟା ହେଉଛି ଦୋଷ ; କିନ୍ତୁ ଏହି ପ୍ରେମ-ମାର୍ଗରେ ଈର୍ଷ୍ୟାର ମଧ୍ୟ ଗୋଟିଏ ମହତ୍ତ୍ୱ ଅଛି । ଏହି ଈର୍ଷ୍ୟାରେ ଏକ ପ୍ରକାର ସୁଖ ଥାଏ । ଶ୍ରୀମତୀ ଚନ୍ଦ୍ରାବଳୀଙ୍କୁ ଶ୍ରୀରାଧାଙ୍କର ପ୍ରତିଦ୍ୱନ୍ଦ୍ୱିନୀ ବୋଲି ସ୍ୱୀକାର କରାଯାଇଥାଏ । ଥରେ ଚନ୍ଦ୍ରାବଳୀ ଭାଦ୍ରମାସ ଚତୁର୍ଥୀ ତିଥିରେ ଚନ୍ଦ୍ରଙ୍କୁ ପୂଜା କରୁଥିଲେ । ଜଣେ ଗୋପୀ ଆସି ପଚାରିଲେ—"ତୁମେ ଏ କ'ଣ କରୁଛ ? ଭାଦ୍ର ମାସର ଚତୁର୍ଥୀ ତିଥିର ଚନ୍ଦ୍ରଙ୍କୁ ତ ଦେଖିବା ବି ଦୋଷ । ତୁମେ ତ ତାଙ୍କୁ ଭକ୍ତିର ସହିତ ପୂଜା କରୁଛ । ଏହାର କାରଣ କ'ଣ ?"

ଚନ୍ଦ୍ରାବଳୀ କହିଲେ—"ଭାଦ୍ର କୃଷ୍ଣା ଚତୁର୍ଥୀର ଚନ୍ଦ୍ରଙ୍କୁ ଦେଖିବାରେ କ'ଣ ଦୋଷ ଲାଗିବ, ସଖୀ ?"

ସଖୀ କହିଲା—"ଏହି ବୃନ୍ଦାବନ ଚନ୍ଦ୍ର ଖୁବ୍ ଗୋଟାଏ ନିନ୍ଦିତ କାମ କରି ବସିଥିଲେ। ସେଥିପାଇଁ ଯେ ଏହି ବୃନ୍ଦାବନ ଚନ୍ଦ୍ରଙ୍କ ମୁହଁ ଦେଖିବ, ତା' ନାଁରେ କଳଙ୍କ ଲାଗିଯିବ।"

ଚନ୍ଦ୍ରାବଳୀ କହିଲେ—"ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ମୋ'ଠାରେ ବି କଳଙ୍କ ଲାଗିଯାଉ, ଏହି ଉଦ୍ଦେଶ୍ୟ ରଖି ହିଁ ମୁଁ ସ୍ୱାଙ୍କୁ ପୂଜା କରୁଛି। ସମସ୍ତେ ମତେ ଶ୍ରୀକୃଷ୍ଣଙ୍କ ବିଷୟ ନେଇ କଳଙ୍କିନୀ ବୋଲି କହିବାକୁ ଆରମ୍ଭ କରନ୍ତୁ।"

ଏହାର ସାରକଥା ହେଲା, ପ୍ରେମ-ମାର୍ଗରେ ଈର୍ଷ୍ୟା ହେବାକୁ ବଡ଼ ଭାଗ୍ୟର କଥା ବୋଲି ଗ୍ରହଣ କରାଯାଇଥାଏ। ଯେଉଁ ଭାବ ହେଉନା କାହିଁକି, ତାହାର ସମ୍ବନ୍ଧ ଯଦି ସାଂସାରିକ ସୁଖ ସହିତ ରହିଛି, ତେବେ ତାହା ନିନ୍ଦନୀୟ ଏବଂ ତାହାର ସମ୍ବନ୍ଧ ଯଦି ଭଗବାନଙ୍କ ସହିତ ରହିଛି, ତେବେ ତାହା ପ୍ରଶଂସନୀୟ।

ସୂତ କହୁଛନ୍ତି—"ହେ ମୁନିମାନେ! ପ୍ରେମର ମାର୍ଗଟି ଯେତେ ବନ୍ଧୁର ଥାଉନା କାହିଁକି, ଯଦି ପ୍ରେମର ସମ୍ବନ୍ଧିତ କୌଣସି ବସ୍ତୁ ମିଳିଯାଏ; ତାହା ଉଦ୍ଦୀପନାର କାରଣ ହୋଇ ଯାଇଥାଏ। ପ୍ରେମ ଜଡ଼, ଚେତନ, ସୁନ୍ଦର, ଅସୁନ୍ଦର ଆଦି ଦେଖେ ନାହିଁ। ତାହାର ତ ପ୍ରିୟତମଙ୍କୁ ଦରକାର ଏବଂ ତାଙ୍କଠାରୁ ବଳି କରି ଆହୁରି ଦରକାର ତାଙ୍କର ପ୍ରିୟ ଓ ମଧୁର ସ୍ମୃତି। ଯାହାଦ୍ୱାରା ପ୍ରିୟ-ସ୍ମୃତି ନିରନ୍ତର ଜାଗ୍ରତ ହୋଇ ରହିଥିବ। ତାହାହିଁ ହେଉଛି ପ୍ରେମପଥର ପଥିକର ଅନ୍ତିମ ଓ ଏକମାତ୍ର ଇଚ୍ଛା। ଏଥିପାଇଁ ତ ତା'ର ତନୁମନର ସକଳ ଚେଷ୍ଟା!"

"ଯମୁନାର ପାଣି ଲହରାଇ ଉଠୁଥିଲା। ଗୋପୀମାନେ ଯେତେବେଳେ ତାହା କୂଳର ବିଚିତ୍ର ବାଲିରେ ନନ୍ଦନନ୍ଦନଙ୍କ ପାଦ-ଚିହ୍ନଗୁଡ଼ିକ ପଡ଼ିଥିବାର ଦେଖିଲେ, ସେତେବେଳେ ସେମାନଙ୍କ ଆନନ୍ଦର ଆଉ ସୀମା ରହିଲା ନାହିଁ। ସେହି ପାଦ-ଚିହ୍ନ ଗୁଡ଼ିକୁ ଦେଖି ସେମାନେ ନିଜ ନିଜ ମଧ୍ୟରେ କୁହାକୁହି ହେବାକୁ ଲାଗିଲେ—"ଆଗୋ ଦେଖ ତ ଏହି ପାଦଚିହ୍ନଗୁଡ଼ିକ ନିଶ୍ଚୟ ଚିତ୍ତଚୋର ଶ୍ୟାମସୁନ୍ଦରଙ୍କର।"

ଜଣେ ସଖୀ ସେହି ପାଦ-ଚିହ୍ନଗୁଡ଼ିକଠାରୁ ଦୂରରେ ଥିଲା। ସେ ଏହା ଶୁଣି କହିଲା—"ଆଗୋ ସଖୀ! ଏହା ଶ୍ୟାମସୁନ୍ଦରଙ୍କର ବୋଲି ତୁମେ କେମିତି ଜାଣିଲ ?"

ଏହା ଉପରେ ମନ୍ତବ୍ୟ ଦେବାକୁ ଯାଇ ଆଉ ଜଣେ ଗୋପୀ କହିଲା—"ବାଃରେ! ଏଥିରେ ପୁଣି କିଛି ସନ୍ଦେହର ଜାଗା ଅଛି ନା କ'ଣ ? ଭଗବାନଙ୍କର ପାଦ କ'ଣ ସାଧାରଣ ଲୋକମାନଙ୍କର ପାଦ ଭଳି ହୋଇପାରେ ? ଭଗବାନଙ୍କ ପାଦ ଦୁଇଟିରେ ଯେଉଁ ପତାକା, ବଜ୍ର, ପଦ୍ମ, ଅଙ୍କୁଶ ଆଦିର ଚିହ୍ନମାନ ଅଛି, ସେଗୁଡ଼ିକ କ'ଣ ଅନ୍ୟ କାହାର ପାଦରେ ହୋଇପାରିବ ? ଏହା ତ ଗୋଟିଏ ପାଦ-ଚିହ୍ନ ନୁହେଁ। ଧାଡ଼ିକି ଧାଡ଼ି ହୋଇ

ଅନେକଗୁଡ଼ିଏ ପାଦଚିହ୍ନ ପଡ଼ିଛି । ଏଗୁଡ଼ିକରେ ଭଗବାନଙ୍କ ପାଦର ସଙ୍କେତମାନ ପରିଷ୍କାର ଭାବରେ ଦେଖା ଯାଉଛି ।"

ସେ ପୁଣି ଟିକିଏ ଆଗକୁ ବଢ଼ିଗଲେ ଏବଂ ଚମକି ପଡ଼ି କହିଲେ—"ଏଇ ଦେଖ, ଏହି ଶ୍ରେଷ୍ଠ ଶ୍ରେଷ୍ଠ ପାଦଚିହ୍ନଗୁଡ଼ିକ ସେହି ପାଦଚିହ୍ନଗୁଡ଼ିକ ସହିତ ଲାଗିକରି ରହିଛି । ଏଗୁଡ଼ିକ କୌଣସି ଜଣେ ସ୍ତ୍ରୀ ଲୋକର । ନିଶ୍ଚିତ ଭାବରେ ଶ୍ୟାମସୁନ୍ଦର ନିଜ ପ୍ରିୟତମାଙ୍କ କଣ୍ଠରେ ବାହୁର ମାଳା ପିନ୍ଧାଇ ଏହିଠାରୁ ଯାଇଛନ୍ତି । ଯେମିତି ମାଈ ହାତୀଟି ନିଜ ଅଣ୍ଡିରା ହାତୀଟିର ସାଥିରେ ଯାଏ, ଯେମିତି ଘଣ୍ଟି ଗାଈଟିର ପଛେ ପଛେ ଯାଏ, ଯେମିତି ମୟୂରୀଟି ମୟୂରଟିର ସଙ୍କେତରେ ନାଚଉଠେ, ଠିକ୍ ସେମିତି ତାଙ୍କ ପ୍ରିୟତମା ବି ତାଙ୍କ ସାଥେ ଯାଇଥିବେ । ଆଃ ! ଶ୍ରୀରାଧା କେତେ ବଡ଼ ଭାଗ୍ୟବତୀ ସତେ ! ସେ ନିଜ କାନ୍ଧ ଉପରେ ପ୍ରିୟତମଙ୍କ ହାତ ରଖିଛନ୍ତି, ନିଜ ଦେହକୁ ତାଙ୍କ ଦେହରେ ଜଡ଼ାଇଛନ୍ତି ; ତାଙ୍କ ମୟୂର-ଚୂଳରେ ନିଜ ଚନ୍ଦ୍ରିକାକୁ ଛୁଆଁଇଛନ୍ତି ; ତାଙ୍କ ନିଜର କେଶବିନ୍ୟାସକୁ ଝୁଲୁଥିବା ଲତାଗୁଡ଼ିକରେ ହଜାଇଛନ୍ତି ଏବଂ ନିଜ ନୀଳ ଶାଢ଼ୀରେ ତାଙ୍କ ହଳଦିଆ ରଙ୍ଗର ଲୁଗାକୁ ମିଶାଇ ଦେଇଛନ୍ତି ! ଏପରି କରି ତାଙ୍କ ପାଦ-ଚିହ୍ନ-ଗୁଡ଼ିକର ପଛେ ପଛେ ତାଙ୍କ ସାଥିରେ ସେ ଯାଇଛନ୍ତି ! ଜୀବନର ସାର୍ଥକତା ସେହି ହିଁ ପାଇପାରିଛନ୍ତି । ନିଜ ସେବାଦ୍ୱାରା ସେ ଶ୍ୟାମସୁନ୍ଦରଙ୍କୁ ସବୁ ପ୍ରକାର ସନ୍ତୁଷ୍ଟ କରିପାରିଛନ୍ତି । ହାୟ ! ଆମେ ତ ଅଭାଗିନୀ ହୋଇ ରହିଗଲୁ ! ଆମକୁ ତ ସେ ସାମାନ୍ୟ ଟିକିଏ ସୁଖ ଦେଲେ ଏବଂ ଆମର ଲାଳସାକୁ ବଢ଼ାଇ ଦେଇ ଏବଂ ଆମକୁ ସାମାନ୍ୟ ଟିକିଏ ରତି-ସୁଖ ଦେଖାଇ ଦେଇ ଉଭାନ ହୋଇଗଲେ ।"

ଏହିପରି ଭାବରେ ରାଧାଙ୍କ ଭାଗ୍ୟକୁ ପ୍ରଶଂସା କରି ଏବଂ ନିଜ ଭାଗ୍ୟକୁ ନିନ୍ଦା କରି ସେମାନେ କାନ୍ଦୁଥିଲେ । ସେମାନେ କ୍ଷଣକୁ କ୍ଷଣ ଶ୍ରୀକୃଷ୍ଣଙ୍କ ପାଦ-ଧୂଳିକୁ ଉଠାଇ ମୁଣ୍ଡ ଉପରେ ଧରୁଥିଲେ ଏବଂ ସ୍ତନରେ ବୋଳି ହୋଇ ଦେହର ତାପକୁ ମେଣ୍ଟାଇ ଦେଉଥିଲେ । ସେମାନେ ସେହି ଧୂଳିକୁ ସାରା ଅଙ୍ଗପ୍ରତ୍ୟଙ୍ଗରେ ବୋଳି ହେଉଥିଲେ । ଏହା ଉପରେ ମନ୍ତବ୍ୟ ଦେଇ ଜଣେ ଗୋପୀ କହିଲେ—"ସଖୀମାନେ ! ତୁମ୍ଭେମାନେ ନିଜକୁ ଏତେ ଭାଗ୍ୟହୀନା ବୋଲି କାହିଁକି ଭାବୁ ହେଉଛ ? ଅହୋ ! ତୁମ୍ଭେମାନେ ସତରେ ବିଚାର କର ତ ଦେଖି । ଏହି ବୃନ୍ଦାବନର ପରମ ପବିତ୍ର ଧୂଳି କିଛି ସାଧାରଣ ଜିନିଷ ନୁହେଁ । ଯେଉଁ ଧୂଳି ଉପରେ ନନ୍ଦନନ୍ଦନ ନିଜ ପାଦଦୁଇଟିକୁ ରଖିଛନ୍ତି, ସେହି ଧୂଳିର ଭାଗ୍ୟକୁ ଯେତେ ପ୍ରଶଂସା କଲେ ମଧ୍ୟ ତାହା ସରିବ ନାହିଁ । ବ୍ରହ୍ମା, ଶିବ ତଥା ଅନ୍ୟାନ୍ୟ ବଡ଼ ବଡ଼ ଲୋକପାଳମାନେ ଏହି ଧୂଳିର ଦର୍ଶନ ଲାଗି ସଦା ବ୍ୟାକୁଳ । ଯେଉଁ ଲକ୍ଷ୍ମୀଙ୍କର କୃପାକଟାକ୍ଷ ଲାଗି ବଡ଼ ବଡ଼ ଅଧିକାରୀମାନେ ଲାଳାୟିତ, ସେହି ଲକ୍ଷ୍ମୀ ବି ଏହି ପାଦ-ଧୂଳିକୁ ମୁଣ୍ଡ ଉପରେ ଚଢ଼ାଇବା ଲାଗି ସର୍ବଦା ଉତ୍କଣ୍ଠିତ ହୋଇ ବସି ରହିଥାନ୍ତି । ଏହି ଧୂଳିକଣାକୁ ପାଇ ସେ ନିଜକୁ

କୃତାର୍ଥ ମନେ କରିଥାନ୍ତି । ଏହି ଧୂଳିକୁ ତୁମ୍ଭେମାନେ ମନ ଇଚ୍ଛା ନିଜ ଦେହରେ ବୋଳି ହେଉଛ ଏବଂ ନିଜ ତାପ-ତାପକୁ ଦୂର କରୁଛ । ତୁମ୍ଭେମାନେ ସମସ୍ତେ ତ କିଛି କମ୍ ଭାଗ୍ୟବତୀ ନୁହଁ ?"

ଏହା ଉପରେ ମନ୍ତବ୍ୟ ଦେବାକୁ ଯାଇ ଆଉ ଜଣେ ସଖୀ କହିଲା—"ଭଉଣୀମାନେ ! ତୁମ୍ଭେମାନେ ଖରାପ ନ ଭାବିଲେ ହେଲା । ମୁଁ ଜାଣିଛି ଯେ ତୁମ୍ଭମାନଙ୍କ ମଧ୍ୟରୁ ଅନେକ ମୋ' କଥାକୁ ଖରାପ ଭାବିବେ ; କିନ୍ତୁ ମୋ' ଚିତ୍ତକୁ ଯେଉଁ କଥା ଆସୁଛି ତାହା କହିଦେବା ଭଲ । ଶ୍ୟାମସୁନ୍ଦରଙ୍କ ପାଦ-ପଦ୍ମର ଚହ୍ନଗୁଡ଼ିକୁ ଦେଖି ଏବଂ ସେଗୁଡ଼ିକର ପରଶରେ ପବିତ୍ର ହୋଇ ଉଠିଥିବା ଧୂଳିକୁ ଦେଖି ଆମର ହୃଦୟ ଆନନ୍ଦରେ ଭରପୂର ହୋଇ ଉଠିଛି ; କିନ୍ତୁ ତାଙ୍କ ପାଦଚିହ୍ନଗୁଡ଼ିକ ପାଖରେ ଛୋଟ ଛୋଟ ଧସ୍ କି ଯାଇ ପଡ଼ିଥିବା ପାଦଚିହ୍ନଗୁଡ଼ିକୁ ଦେଖି ଆମ ମନରେ ଦୁଃଖ ଆସୁଛି । ସେଥିପାଇଁ ଆମ ମନରେ ଈର୍ଷ୍ୟା-ଭାବ ଆସୁଛି ।"

ସେମାନଙ୍କ ମଧ୍ୟରୁ ଆଉ ଜଣେ ଗୋପୀ କହିଲା—"ସାତ୍ତ୍ୱିକ ଭଉଣୀ ! ଏଥିରେ ଈର୍ଷ୍ୟା-କଥା କ'ଣ ରହିଲା ? ଏଗୁଡ଼ିକ ତ ହେଉଛି ଶ୍ରୀକୃଷ୍ଣଙ୍କ ପ୍ରିୟତମାଙ୍କ ପାଦ-ଚିହ୍ନ । ପ୍ରିୟତମଙ୍କ ସହିତ ସମ୍ବନ୍ଧ ଥିବା ବସ୍ତୁ କିଛି ତ ଆମର ପ୍ରିୟ ହେବାର କଥା । ପୁଣି ଆମ ପ୍ରିୟତମ ଯାହାଙ୍କୁ ପ୍ରାଣଠାରୁ ବଳି ଅଧିକ ଭଲପାଆନ୍ତି, ସେ ତ ହେଉଛନ୍ତି ଆମର ସର୍ବସ୍ୱ । ଆମର ତାଙ୍କୁ ତ ପ୍ରିୟତମଙ୍କଠାରୁ ଅଧିକ ଆଦର କରିବାର କଥା ।"

ଏହା ଉପରେ ଟିପ୍ପଣୀ ଦେବାକୁ ଯାଇ ସେହି ଗୋପୀ ଜଣକ କହିଲା—"ତୁମେ ତା'ର ଆଦର ପ୍ରିୟଙ୍କଠାରୁ ଅତ୍ୟନ୍ତ ଅଧିକ କରୁଥାଅ । ଏଥିପାଇଁ ମୁଁ ତ ମନା କରୁନାହିଁ । ଏହା ତ ହେଉଛି ନିଜ ମନର କଥା ; କିନ୍ତୁ ନିଜ ମତଟିକୁ ଜୋରଜବରଦସ୍ତି କରି ଅନ୍ୟମାନଙ୍କ ଉପରେ ଲଦିଦେବା ଉଚିତ ନୁହେଁ । ଏ କଥା ଭାବିବା ଠିକ୍ ନୁହେଁ ଯେ ଆମେ ଯାହାକୁ ମାନୁଛୁ, ଅନ୍ୟ ଲୋକ ବି ତାହାକୁ ମାନୁଥାଉ । ଆମେ ଯାହା ବୁଝୁଛୁ ଅନ୍ୟ ଲୋକ ବି ସେଇଆ ବୁଝୁ । ଅନ୍ୟ ଉପରେ ଶ୍ରଦ୍ଧା ଲଦିବାରେ ତ ଶ୍ରଦ୍ଧା ହୁଏ ନାହିଁ । ତାହା ତ ହୃଦୟର ପ୍ରେରଣାରେ ହୋଇଥାଏ । ତୁମେ ପ୍ରିୟତମଙ୍କ ପ୍ରିୟତମାଙ୍କ ପ୍ରତି ଆଦର ଭାବ ଦେଖାଉଥାଅ । ମୁଁ କିନ୍ତୁ ବୁଝିଛି ଯେ ସେ ସ୍ୱାର୍ଥପର । ଯେ ହେଉଛନ୍ତି ସମସ୍ତଙ୍କର ସମ୍ପତ୍ତି, ଯାହାଙ୍କୁ ଉପଭୋଗ କରିବାର ଅଧିକାର ସମସ୍ତଙ୍କର ଅଛି, ସେହି ଶ୍ରୀକୃଷ୍ଣଙ୍କ ଅଧରର ଅମୃତକୁ ସେ ଏକୁଟିଆ ପିଉଛି । ଏହା ତା'ର ସ୍ୱାର୍ଥପରତା ନୁହେଁ ତ ଆଉ କ'ଣ ? ଏହି କାରଣରୁ ତ ଆମର ତା'ପ୍ରତି ଖରାପ ଲାଗ ଆସୁଛି ।"

ଏହା ଉପରେ ସେହି ଗୋପୀ ଜଣକ କହିଲା—"ଆଗୋ ଦେବୀ ! ସମସ୍ତଙ୍କ ଅଧିକାର ଏକାପରି ନୁହେଁ । ଆପଣ ତାଙ୍କର ପ୍ରାଣପ୍ରେୟସୀ ହୋଇପାରନ୍ତି । ଆପଣ ଶ୍ରୀରାଧାଙ୍କୁ

ସହଚାରିଣୀ ବୋଲି ଜାଣି ନ ପାରନ୍ତି ; କିନ୍ତୁ ଆମେ ତ ତାଙ୍କ ଦାସୀମାନଙ୍କର ଦାସୀ ହେବାର ଅଧିକାରିଣୀ ବୋଲି ନିଜକୁ ମାନିପାରୁ ନାହିଁ । ଆମର ତ ଏକମାତ୍ର ଅବଲମ୍ବନ ହେଉଛି ଶ୍ରୀକୃଷ୍ଣଙ୍କ କୃପା । ସେ ଚାହିଁଲେ ଆମକୁ ଆପଣାର କରି ନେଇପାରନ୍ତି କିମ୍ବା ପ୍ରତାରିତ କରିପାରନ୍ତି । ସେ ଚାହିଁଲେ ଆମକୁ ଛାତିରେ ଲଗାଇ ଧରିପାରନ୍ତି କିମ୍ବା ଆମକୁ ନିଜର ଅତି ଶ୍ରେଷ୍ଠ ସ୍ୱୀକାରିଣୀ କରି ରଖିପାରନ୍ତି । ଆମେ ତ ତାଙ୍କ ସ୍ୱୀକାରିଣୀମାନଙ୍କର ସ୍ୱୀକାରିଣୀ । ସେ ଆମକୁ ଯେଉଁ ଦୁଃଖ ଦେଇଛନ୍ତି, ତାହା ଆମେ ଆଶା କରି ନଥିଲୁ । ଏବେ ସେହି ଦୁଃଖକୁ ମନେପକାଇ ଆମେ କାନ୍ଦୁଛୁ ଏବଂ ଏଠୁ ସେଠିକି ଧାଇଁ ବୁଲୁଛୁ ।”

“ଶ୍ରୀ ସୂତ କହୁଛନ୍ତି—“ହେ ମୁନିମାନେ ! ଏହିପରି ଭାବରେ ସେହି ବ୍ରଜାଙ୍ଗନାମାନେ ନିଜ ଭିତରେ କଥାବାର୍ତ୍ତା ହେଲେ ଏବଂ ଶ୍ରୀକୃଷ୍ଣଙ୍କ ପାଦଚିହ୍ନଗୁଡ଼ିକୁ ଅନୁସରଣ କରି ଆଗକୁ ବଢ଼ିବାକୁ ଲାଗିଲେ । ଆଗରେ ଖାଲି ଏକା ଶ୍ରୀକୃଷ୍ଣଙ୍କ ପାଦଚିହ୍ନ ଦେଖି ସେମାନେ ଆଶ୍ଚର୍ଯ୍ୟ-ଚକିତ ହୋଇଗଲେ ଏବଂ ନାନାପ୍ରକାର ଅନୁମାନ କରିବାକୁ ଲାଗିଲେ ।”

### ଛପ୍ପୟ

କରତ ବିବିଧ ଅନୁମାନ ବଢ଼ୀଂ କଛୁ ଆଗେ ବାଲା ।
ଏକାକୀ ପଦଚିହ୍ନ ନିରଖି ବୋଲୀ ଇହୁଁ ଲାଲ ॥
ଅବସି ଯାନ ଦ୍ୱୈ ବନେ ରାଧିକା କନ୍ଧ ଚଢ଼ାଇ ।
ଯହୁଁ ତୋରକେ ଫୁଲ ଶ୍ୟାମନେ ପ୍ରିୟା ସଜାଇ ॥
ଫୁଲୀ-ଫୁଲ ଲତନତେଂ, ଉଚକ ସୁମନ ତୋରେ ଅବସି ।
ଏଡ଼ୀ ବନୁ ପଞ୍ଜେ ବନେ, ପୁନ ଇତତେଂ ଆୟେ ନିକସି ॥



## କାମୀମାନଙ୍କର ଦୀନତା ଓ ସ୍ତ୍ରୀମାନଙ୍କର ଦୁଷ୍ଟାମି

ରେମେ ତୟା ଚାତ୍ମରତ ଆତ୍ମାରାମୋଽପ୍ୟଖଣ୍ଡିତଃ ।
କାମିନାଂ ଦର୍ଶୟନ୍ ଦୈନ୍ୟଂ ସ୍ତ୍ରୀଣାଂ ଚୈବ ଦୁରାତ୍ମତାମ୍ ॥

(ଶ୍ରୀ ଭା. ୧୦ ସ୍କ, ୩୦ ଅ ୩୫ ଶ୍ଳୋକ)

## ଛପ୍ପୟ

ଅରୀ, କହାଁସେ ଅଲୀ ! ବନୀ ବୈଠକ ଝରୋ ଉନକୀ ।
ପ୍ରିୟା ଅଙ୍କମେଂ ଧାର ଗୁଁଥୀ ହୈ ବେଣୀ ତନକୀ ॥
ମୋତୀ ସୁମନ ପୁରୋଇ ପ୍ରିୟାକୀ ମାଁଗ ସହ୍ମାରୀ ।
ଅବସି ଯହାଁ ତହ୍ନ ସଙ୍ଗ କରୀଂ ହୈଂ କ୍ରୀଡ଼ା ପ୍ୟାରୀ ॥
ଅବସି ଯହାଁ ହରବଶ ଭୟେ ଅବସି ବ୍ୟଥା ହୋଉନ ବଢ଼ୀ ।
ଶ୍ୟାମ ଦିଖାଇ ଦୀନତା, ଅବସି ସଖୀ ସିରଫେଁ ଚଢ଼ୀ ॥

ଏହି ପାପୀ କାମଦେବ ପୁରୁଷ-ସ୍ତ୍ରୀ ଦୁହିଙ୍କୁ ହୀନସ୍ଥାନ କରି ଦେଇଥାଏ । ମଣିଷ ମନରେ ଯଦି କାମ ନଥାନ୍ତା, ତା'ହେଲେ ଶ୍ୟାମ ଓ ତା' ମଧ୍ୟରେ କିଛି ହିଁ ଫରକ ରହନ୍ତା ନାହିଁ । ଈଶ୍ୱରଙ୍କଠାରେ ଏହି ବିଶେଷତା ରହିଛି ଯେ ତାଙ୍କ ମନରେ କାମ-ଭାବ ନଥାଏ । ତାଙ୍କର ଅନ୍ୟ କାହା ସାଥିରେ ରମଣ କରିବାର ଇଚ୍ଛା ହୋଇ ନଥାଏ । ସେ ନିଜ ସହିତ ରମଣ କରିଥାନ୍ତି । ସେଥିପାଇଁ ତାଙ୍କୁ 'ରାମ' ଅଥବା 'ଆପ୍ତକାମ' ବୋଲି କୁହାଯାଇଥାଏ । ଜୀବନର ରମଣଲାଗି ଇଚ୍ଛା ଥାଏ ଏବଂ ମନରେ କାମନା ଥାଏ । କାମରୁ ହୀନତା ଆସିଥାଏ ଏବଂ ହୀନତା ଦୁଃଖର ଜନନୀ ହୋଇଥାଏ । ମଣିଷର ହୃଦୟରେ ଯଦି କାମ ନଥାନ୍ତା, ତା'ହେଲେ ସେ ସିଂହଭଳି ଗରଜି ଥାନ୍ତା । ସିଂହ ହାତୀଠାରୁ କଦାପି ବଡ଼ ନୁହେଁ । ହାତୀର ଏହି ଦୋଷ ହେଲା ଯେ ସେ ଅତ୍ୟଧିକ ପରିମାଣରେ କାମୀ । ସେଥିପାଇଁ ସେ ବନ୍ଦୀ ହୋଇଥାଏ ଏବଂ ବାହନ ହୋଇଥାଏ । ସିଂହଠାରେ କାମର ମାତ୍ରା କମ୍ କୁହାଯାଏ ଯେ ସେ ବର୍ଷରେ ଥରେମାତ୍ର ରତି କରିଥାଏ । ଆଉ କେହି କେହି କୁହନ୍ତି ଯେ ସେ ଜୀବନରେ ଥରେମାତ୍ର ରତି କରିଥାଏ । ଯାହା କିଛି ବା ହୋଇଥାଉ, ସେ ମଧ୍ୟ କାମର ଅଧୀନ ହୋଇଯାଇଥାଏ । ସେଥିପାଇଁ ସେ ମଧ୍ୟ କେବେ କେବେ ଧରା ହୋଇଥାଏ ଏବଂ ତାକୁ ମଧ୍ୟ ପଞ୍ଜୁରୀରେ ରଖାଯାଇଥାଏ । ଯଦି ତା'ଠାରେ ସେତିକି ମାତ୍ରାରେ କାମ ଭାବ ନଥାନ୍ତା, ତା'ହେଲେ ତାହାକୁ କେହି ଧରିପାରୁ ନଥାନ୍ତେ । କାମ-ଭାବ ସ୍ତ୍ରୀ-ପୁରୁଷ ଦୁହିଙ୍କ ହୃଦୟରେ ହୋଇଥାଏ । ଯେ ଯେତେ ଅଧିକ ମାତ୍ରାରେ କାମୀ ହେବ, ସେ ସେତେ ହୀନ ହେବ । ଇଚ୍ଛା ମାତ୍ରକେ ନାଁ ହେଲା କାମ । ସେହି ଇଚ୍ଛା ଧନ, ସ୍ତ୍ରୀ, ପୁତ୍ର, ମାନ, ପ୍ରତିଷ୍ଠା କୌଣସି ଗୋଟିଏ ପାଇଁକି ହୁଏତ ହୋଇ ଯାଇପାରେ । କାମର ବଶ ହେବା ପରେ ହୀନତା ଆସିବ ହିଁ ଆସିବ । ଯାହାର କାମଜ୍ୱରର ଡିଗ୍ରିଟି ବେଶି, ସେ ଅଧିକ ହୀନ ହୋଇ ରହିବ । ଯଦି ପୁରୁଷର ବଳ ବେଶି ହେଲା, ତା'ହେଲେ ସେ ସ୍ତ୍ରୀକୁ କାଠପିତୁଳାଟି କରି ରଖିଥିବ । ଯଦି ସ୍ତ୍ରୀର ବଳ ବେଶି ହେଲା, ତା'ହେଲେ ସେ ପୁରୁଷକୁ ବଶ କରି ନିଜ

ଆଙ୍ଗୁଠି ଅଗରେ ନଥିବ । ଶ୍ରୀକୃଷ୍ଣ ଏହି ଲୀଳାମାନ ଦେଖାଇବା ଉଦ୍ଦେଶ୍ୟରେ ହିଁ ମଧୁର ଲୀଳାମାନ କରୁଥାନ୍ତି ।

ସୂତ କହୁଛନ୍ତି—"ହେ ମୁନିମାନେ ! ସେହି ଗୋପାଙ୍ଗନାମାନେ ପ୍ରିୟତମାଙ୍କ ସହିତ ଶ୍ୟାମସୁନ୍ଦରଙ୍କ ପାଦଚିହ୍ନଗୁଡ଼ିକୁ ଅନୁସରଣ କରି କରି ଖୁବ୍ ଦୂର ପର୍ଯ୍ୟନ୍ତ ଚାଲିଗଲେ । ଆଗକୁ ଯାଇ ସେମାନେ ଦେଖିଲେ ଯେ ଶ୍ୟାମସୁନ୍ଦରଙ୍କ ପାଦଚିହ୍ନ ତ ଅଛି ; କିନ୍ତୁ ତାଙ୍କ ପ୍ରିୟତମାଙ୍କ ପାଦଚିହ୍ନ ଆଖିରେ ପଡ଼ୁନାହିଁ । ସେତେବେଳେ ସେମାନେ ନିଜ ନିଜ ଭିତରେ କୁହାକୁହି ହେବାକୁ ଲାଗିଲେ, 'ଆଲୋ ଭଉଣୀମାନେ ! ଏଇ ଦେଖ ତ ଏହା କେଡ଼େ ଆଶ୍ଚର୍ଯ୍ୟର କଥା ; ଏଠି ତ ଖାଲି ଏକୁଟିଆ ଶ୍ୟାମସୁନ୍ଦରଙ୍କ ପାଦଚିହ୍ନ ପଡ଼ିଛି । ତାଙ୍କ ପ୍ରିୟତମା ଏଠାରୁ କୁଆଡ଼େ ଚାଲିଗଲେ ?"

ଏହା ଉପରେ ଟିପ୍ପଣୀ ଦେଇ ଜଣେ କୁହାଳିଆ ସ୍ୱଭାବର ଗୋପୀ କହିଲା—"ଏଥିରୁ ଜଣାପଡ଼ୁଛି ଯେ ଏଠାରେ ଦୂବ-ଘାସ କଣ୍ଟା କଣ୍ଟା ହୋଇ ଅଛି । ତେଣୁ ଅତ୍ୟନ୍ତ ସ୍ନେହର ଅଧୀନ ହୋଇ ପ୍ରିୟତମ ତାଙ୍କ ପ୍ରିୟତମାଙ୍କୁ କାନ୍ଧରେ ବସାଇ ନେଇ ଯାଇଥିବେ, ଯାହା ଫଳରେ କି ତାଙ୍କର ଖୁବ୍ କଅଁଳିଆ ପାଦ ଦୁଇଟିକୁ କମ୍ କଷ୍ଟ ହୋଇଥିବ । ଓହୋ ! ଏହା ଠିକ୍ କଥା । ତୁମେ ଦେଖନ୍ତୁ ଏହି ପାଦଚିହ୍ନ କେମିତି ଧସିକି ଯାଇଛି । ଅଧିକ ବୋଝ ହେଉ ପାଦ ପୁରୁପୁରୁ ବାଲି ଭିତରେ ପଶିଯାଇ ଏପରି ଚିହ୍ନ ପଡ଼ିଛି ।"

ଏହିପରି ଙ୍କବରେ କୁହାକୁହି ହୋଇ ଏବଂ ତାଙ୍କର ସ୍ୱାଙ୍କାନ୍ତ ପାଦଚିହ୍ନଗୁଡ଼ିକୁ ଦେଖି ଦେଖି ଗୋପୀମାନେ ଆଗକୁ ବଢ଼ିବାକୁ ଲାଗିଲେ । କିଛି ଦୂର ଆଉ ଯିବାପରେ ସେମାନେ ଦେଖିଲେ ଯେ ଜାଇ, ଚମ୍ପା, ମାଳତୀ, ଯୁଈ ଓ କୁନ୍ଦ କଢ଼ମାନ ଫୁଟି ଉଠିଛି । ବଡ଼ ବଡ଼ ଲତାଗୁଡ଼ିକର ଲମ୍ବା-ଚଉଡ଼ା ଶୁଣ୍ଢୁଆମାନ ଝୁଲାଯାଇଛି । ସେଠାରେ ପାଦଚିହ୍ନଗୁଡ଼ିକୁ ନଦେଖି ସେମାନେ ଖୋଜାଖୋଜି କରିବାକୁ ଲାଗିଲେ । ସେମାନେ କହିବାକୁ ଲାଗିଲେ—"ଏଠାରେ ତ କେତେ ପ୍ରକାର ପାଦଚିହ୍ନ ପଡ଼ିଛି । କେତେକ ପାଦଚିହ୍ନ ଆଗକୁ ପଡ଼ିଛି ଏବଂ ଆଉ କେତେକ ପଛକୁ ପଡ଼ିଛି । ପ୍ରିୟତମାଙ୍କ ପାଦ-ଚିହ୍ନ ବି ଅଛି ଏବଂ ପ୍ରିୟତମଙ୍କ ପାଦ-ଚିହ୍ନ ବି ଅଛି । ଓହୋ ! ଏଠାରେ ଶ୍ୟାମସୁନ୍ଦର ପ୍ରିୟତମାଙ୍କ ଲାଗି ବୋଧହୁଏ ଫୁଲ ତୋଳିଥିବେ । ଜଣାଯାଉଛି ଯେ ଏଠାରେ ଶ୍ୟାମସୁନ୍ଦର ପ୍ରିୟତମାଙ୍କର ସବୁ ପ୍ରକାର ବଶ ହୋଇ ଯାଇଛନ୍ତି । ସେଥିପାଇଁ ତ ତାଙ୍କୁ କାନ୍ଧ ଉପରେ ବସାଇ ଏପର୍ଯ୍ୟନ୍ତ ଆଣିଛନ୍ତି । ଏଇ ଦେଖ, ଏଠାରେ ସେ ପ୍ରିୟତମାଙ୍କୁ କାନ୍ଧରୁ ତଳକୁ ଓହ୍ଲାଇ ଦେଇଛନ୍ତି । ପୁଣି ଏଇ ଦେଖ, ଗଛକୁ ଧରି ତାହାର ସହାୟତାରେ ଓହ୍ଲାଇ ପ୍ରିୟତମା ଏହିଠାରେ ବସିଥିବେ । ଏଠାରେ ବାଲି ଉପରେ କେବଳ ତାଙ୍କ ବସିଥିବାର ଚିହ୍ନ ଦେଖାଯାଉଛି । ଏଠାରେ କିଛି ଫୁଲ ବି ପଡ଼ିଛି । ଜଣାଯାଉଛି ଯେ ପ୍ରିୟତମାଙ୍କୁ

ଖୁସି କରାଇବା ଲାଗି ଶ୍ୟାମସୁନ୍ଦର ଏଠାରେ ଫୁଲ ତୋଳିଛନ୍ତି । ଏତେ ଫୁଲରେ ଭରପୂର ଥିବା ଏହି ଲତାଗୁଡ଼ିକ ସତେ ବଡ଼ ଭାଗ୍ୟବତୀ, କାରଣ ଏମାନଙ୍କ ଡାଳଗୁଡ଼ିକୁ ନୁଆଁଇ ଶ୍ୟାମସୁନ୍ଦର ଏମାନଙ୍କଠାରୁ ସ୍ନେହରେ ଫୁଲ ତୋଳିଥିବେ । ହଁ, ଏଠି କିଛି ଉଚ୍ଚା ଉଚ୍ଚା ଲତାମାନେ ଅଛନ୍ତି । ଏଠାରେ ଲମ୍ଫକ କରି ମଦନମୋହନ ଫୁଲ ତୋଳିଥିବେ । ଏଠାରେ ଗୋଇଠି ଚିହ୍ନ ନଥିବା ପାଦଚିହ୍ନମାନ ଏହାର ସୂଚନା ଦେଉଛି ।"

ଏହା ଉପରେ ଜଣେ ଗୋପୀ ଉତ୍ସାହ ଦେଖାଇ କହିଲା—"ଏଇ ଦେଖ, ଦେଖ, ଏଗୁଡ଼ିକ ଛଟକା ଛିଣ୍ଡା ଫୁଲ । ଏଗୁଡ଼ିକ ଏବେ ତୋଳା ଯାଇଛି । ଜଣାପଡ଼ୁଛି ଯେ ମଦନମୋହନ ଏଇଠି କେଉଁଠି ପ୍ରିୟତମାଙ୍କ ଲାଗି ମାଳା ଗୁନ୍ଥିଥିବେ ।"

ଏହା ଶୁଣି କେତେ ଜଣ ଗୋପୀ ମାଳାର ଚିହ୍ନ ଲାଗି ଏଣେତେଣେ ଖୋଜାଖୋଜି କଲେ । ଜଣେ ଚିତ୍କାର କରି କହି ଉଠିଲା—"ଏଠିକି ଆସ, ଏଠିକି ଆସ । ଗୋଟିଏ କଥା ମିଳିଗଲା । ଦେଖ ଏଠି ସୁନ୍ଦର କଳା କଳା କୁଞ୍ଚୁକୁଞ୍ଚିଆ ଲମ୍ବା ଲମ୍ବା ବାଳ ଦୁଇ ଚାରିଟା ପଡ଼ିଛି । ଅବଶ୍ୟ ଏହା ହେଉଛି ପ୍ରିୟତମାଙ୍କ ମୁଣ୍ଡର ବାଳ । ଏଠାରେ ବି ଶ୍ରୀକୃଷ୍ଣ ତାଙ୍କର ମୁଣ୍ଡ କୁଣ୍ଡାଇ ଦେଇଥିବେ । ଏଠାରେ ଅନେକଗୁଡ଼ିଏ ବାଳକୁ ଏକାଠି କରି ସେ ତାଙ୍କର ବେଣୀ ପକାଇ ଦେଇଥିବେ । ଏଇ ଦେଖ, ଏହି ଫୁଲଗୁଡ଼ିକ ପଡ଼ିଛି ଏବଂ ଗ୍ରେଟ ଗ୍ରେଟ ମୋଡ଼ କେତୋଟି ବିଛୁଡ଼ି ହୋଇ ପଡ଼ିଛି । ମୋଡ଼ ଓ ଫୁଲ ନେଇ ସେ ନିଜ ସଖୀଙ୍କ ବାଳକୁ ସଜାଇଥିବେ । ଓହୋ ! ଏଇ ଦେଖ, ଏଗୁଡ଼ିକ ଦୁହିଁଙ୍କ ବସିବାର ପରିଷ୍କାର ଚିହ୍ନ ରହିଛି । ଏଥିରେ ଆଉ କିଛି ହେଲେ ସନ୍ଦେହ ରହୁ ନାହିଁ ଯେ ଏହିଠାରେ ହିଁ ଶ୍ୟାମସୁନ୍ଦର ନିଜ ପ୍ରିୟତମାଙ୍କ ବେଣୀ ବାନ୍ଧିଥିଲେ ।"

ଏହା ଶୁଣିବା ପରଠାରୁ ଶୌନକ ପଚାରିଲେ—"ହେ ସୂତ ମହାଶୟ ! ବେଣୀ ବାନ୍ଧିବା ତ ହେଉଛି ଭଣ୍ଡାରୁଣୀର କାମ । ସ୍ତ୍ରୀମାନେ ହିଁ ସ୍ତ୍ରୀମାନଙ୍କର ବେଣୀ ବାନ୍ଧି ଦେଇଥାନ୍ତି । ପୁରୁଷ ହୋଇକରି ବି ଶ୍ରୀକୃଷ୍ଣ ପ୍ରିୟତମାଙ୍କ ବେଣୀ କାହିଁକି ବା ବାନ୍ଧିଲେ ?"

ଏହାଶୁଣି ସୂତ ହସି ହସି କହିଲେ—"ମହାରାଜ ! ଯେତେବେଳେ ପୁରୁଷ ସ୍ତ୍ରୀର ଅଧୀନ ହୋଇଯାଏ, ସେତେବେଳେ ତା'ଠାରେ ପୁରୁଷତ୍ୱ ଆଉ ରହେ ନାହିଁ । ସେତେବେଳେ ସେ ଗୋଟିଏ କାଠର ପିତୁଳା ହୋଇଯାଏ । ସେତେବେଳେ ତା' ହାତରେ ଭଣ୍ଡାରି କମ୍ବା ଭଣ୍ଡାରୁଣୀର, ଧୋବା କମ୍ବା ଧୋବଣୀର ମାଳି କମ୍ବା ମାଲୁଣୀର, ମେହେନ୍ତର କମ୍ବା ମେହେନ୍ତରାଣୀର ଯାହା କିଛି କାମ ତୁମେ ଚାହିଁବ, ତାହା କରାଇ ନେଇପାରିବ । ତୁମେ ତା'ହାତରେ ବେଣୀ ବନ୍ଧାଇ ଦେଇପାର, ତେଲ ଘଷାଇ ଦେଇପାର

କିମ୍ବା ପାଦସେବା କରାଇ ଦେଇପାରେ। ସେତେବେଳେ ଏଇଟା କରିବା ଉଚିତ ଏବଂ ଏଇଟା କରିବା ଅନୁଚିତ ବୋଲି ଭେଦ-ଭାବ ତା' ପାଖରେ ରହି ନଥାଏ। ପ୍ରେମ ତ ନିନ୍ଦା-ପ୍ରଶଂସାର ଉପରେ। ଏଥିରେ କୌଣସି କାମକୁ ନିନ୍ଦନୀୟ ବୋଲି କୁହାଯାଇ ନଥାଏ। ନିଜର ପ୍ରେମୀ ଯାହାଦ୍ୱାରା ବେଶି ଖୁସି ହୁଅନ୍ତି ଏବଂ ଯାହାଦ୍ୱାରା ତାଙ୍କର ଅଧିକ ସ୍ପର୍ଶ ମିଳିଥାଏ, ସେଥିରେ ଅଧିକରୁ ଅଧିକ ସୁଖ ଜନମିଥାଏ। ପ୍ରେମର ମାର୍ଗ ବଡ଼ ଅଙ୍କାବଙ୍କା ଓ ଉଚ୍ଚ-ନୀଚ। ତାହାର ଅବଶ୍ୟ କିଛିଟା ନିୟମ ଅଛି; କିନ୍ତୁ ତାହା ହେଉଛି ସୀମାହୀନ। ତାହା ମର୍ଯ୍ୟାଦାକୁ ପାର ହୋଇ ଯାଇଥାଏ। ତାହାର ସୀମା ନାହିଁ, ମର୍ଯ୍ୟାଦା ନାହିଁ, ଇୟତ୍ତା ନାହିଁ। ଯେଉଁଥିରେ ଜମ ବଢ଼ି ବଢ଼ି ଚାଲିଥାଏ ସେଇଟି ଅଛି ତାହାର କର୍ତ୍ତବ୍ୟ।"

ହେ ମୁନିମାନେ! ଗୋପୀମାନେ ତ ଭଲଭାବରେ ଭିତର କଥାମାନ ଜାଣିପାରୁଥିଲେ। ରସର ସକଳ ପ୍ରକାର ସ୍ୱାଦ ସହିତ ସେମାନଙ୍କର ପରିଚୟ ଥିଲା। ସମସ୍ତ ଚିହ୍ନ ବିଷୟରେ ସେମାନଙ୍କୁ ଜଣାଥିଲା। ସେମାନେ ବୁଝିଗଲେ ଯେ ଏଠାରେ ଶ୍ୟାମସୁନ୍ଦର ଶ୍ୟାମାଙ୍କ ସାଥିରେ ସମସ୍ତ ପ୍ରକାର ସୁଖ-କ୍ରୀଡ଼ାମାନ କରିଛନ୍ତି। ଏଠାରେ ଦୁହେଁ ବହୁତ ସମୟ ପର୍ଯ୍ୟନ୍ତ ଖେଳା-ଲୀଳା କରିଥିବେ।"

ଶୌନକ ପଚାରିଲେ—"ହେ ସୂତ ମହାଶୟ! ଭଗବାନ୍ ଏହି ଯେଉଁ କ୍ରୀଡ଼ାମାନ କରିଥିଲେ ସେଗୁଡ଼ିକ ହେଲା ତାଙ୍କ ପ୍ରତିଷ୍ଠାର ବିରୋଧୀ। କେଉଁ କାରଣରୁ ସେ ଏଗୁଡ଼ିକ କରିଥିଲେ?'

ଏହା ଉପରେ ଉତ୍ତର ଦେବାକୁ ଯାଇ ସୂତ କହିଲେ—"ମହାରାଜ! ଭଗବାନଙ୍କ କାରଣ ରହସ୍ୟ ଜୀବ କିପରି ବା ବୁଝି ପାରିବ? ପୁଣି ଏ କଥା ତ ନିଶ୍ଚିତ ଯେ ଭଗବାନ୍ ତ୍ରିକାଳରେ କେବେହେଲେ କାମର ଅଧୀନ ହୋଇ ନ ପାରନ୍ତି। କାମ ଉପରେ କନ୍ଦାପଟ୍ଟ ହ ଦଳ କରିବାପାଇଁ ତ ସେ ଏହି ଲୀଳା ଅନଙ୍ଗ ସହିତ ମୁକାବିଲା ଲବରଷି କରିଥିଲେ। ଯେ ନିଜ ଉପରେ ସଦାସର୍ବଦା ସନ୍ତୁଷ୍ଟ ଥାଆନ୍ତି, ତାଙ୍କ ପକ୍ଷରେ କାହା ଆଗରେ ଦୀନତା ଦେଖାଇବାର ଏବଂ ତା'ର ଇଙ୍ଗିତରେ ନାଚିବାର ବା କ'ଣ ଦରକାର ଅଛି? ଯାହାର ନିଜ ପାଖରେ ସୁନ୍ଦର ସାମଗ୍ରୀ ନଥିବ, ସେ ଅନ୍ୟକୁ ତାହା ମାଗିବ। ଯେ ହେଉଛନ୍ତି ନିତ୍ୟ ସୁଖସ୍ୱରୂପ, ସେ ବା କାହିଁକି ସୁଖ ଲାଗି ଅନ୍ୟମାନଙ୍କ ମୁହଁକୁ ଚାହିଁ ବସିବେ? ସେ ବା କାହିଁକି ଅନ୍ୟମାନଙ୍କୁ ଅପେକ୍ଷା କରିବେ? ଯେ ନିଜ ସହିତ ରମଣ କରିଥାନ୍ତି, ତାଙ୍କ ପକ୍ଷରେ ରମଣ ଲାଗି ଅନ୍ୟ କୌଣସି ସ୍ତ୍ରୀର ଦାସତ୍ୱ ସ୍ୱୀକାର କରିବାର କ'ଣ ବା ଆବଶ୍ୟକତା ଅଛି? ତାହା ସତ୍ତ୍ୱେ ଲୌକିକଲୀଳା ଦେଖାଇବା ପାଇଁ କାମୀମାନଙ୍କର ଦୀନତାର ଝଲକ୍ ଦର୍ଶନ ଦେବା ଉଦ୍ଦେଶ୍ୟରେ ଏବଂ ସ୍ତ୍ରୀମାନଙ୍କର ଦୁଷ୍ଟାମି ଦେଖାଇବା ଉଦ୍ଦେଶ୍ୟରେ ସେ ଏହି ଲୀଳା ଦେଖାଇଲେ।"

ଏହା ଉପରେ ଶୌନକ କହିଲେ—"ସୂତ ମହାଶୟ ! କାମର ଅଧୀନ ହୋଇ ଲୋକମାନେ ଯାହା ନ କରିବାର କଥା ତାହା କରିଥାନ୍ତି । ଏଥିରୁ କାମୀମାନଙ୍କର ଦୀନତା କଥା ପରିଷ୍କାର ଭାବରେ ବୁଝା ପଡ଼ୁଛି ; କିନ୍ତୁ ଏଥିରେ ସ୍ତ୍ରୀମାନଙ୍କର ଦୁଷ୍ଟାମି ଆସିଲା କେଉଁଠୁ ?"

ସୂତ କହିଲେ—"ମହାରାଜ ! ଏଠାରେ ଦୁଷ୍ଟାମିର ଅର୍ଥ ହେଲା ପୁରୁଷକୁ ଅଧୀନ କରିଦେବା । ଯେପର୍ଯ୍ୟନ୍ତ ପୁରୁଷ କାମର ଅଧୀନ ନ ହୋଇଛି, ସେପର୍ଯ୍ୟନ୍ତ ତ ସ୍ତ୍ରୀ ଦୀନାହୀନା ହୋଇ ରହିଥାଏ । ଦେଖନ୍ତୁ, ବଂଶୀ-ନାଦ ଶୁଣିକରି ଯେତେବେଳେ ଗୋପୀମାନେ ଆସିଥିଲେ, ସେତେବେଳେ ସେମାନେ କିପରି ଦୟନୀୟ ଭାବରେ କାନ୍ଦି କାନ୍ଦି ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରୁଥିଲେ । ଯେତେବେଳେ ଶ୍ରୀକୃଷ୍ଣ ସେମାନଙ୍କୁ ନିଜର କରି ନେଲେ, ସେତେବେଳେ ସେମାନଙ୍କ ମନରେ ଅଭିମାନ ଆସିଗଲା । ସେମାନେ ନିଜକୁ ସଂସାରରେ ସବୁଠାରୁ ବଡ଼ ବୋଲି ଭାବିବାକୁ ଲାଗିଲେ । ପୁରୁଷ ଯେତେବେଳେ କାମର ଅଧୀନ ହୋଇଯାଏ, ସେତେବେଳେ ସ୍ତ୍ରୀ ତାକୁ ଏପରି ଭାବରେ ନାଚ ନଚାଏ ଯେ ସେ ତାଲି ବାଉଳର ଦାମ ମଧ୍ୟ ଭୁଲିଯାଏ । ସ୍ତ୍ରୀ ତାକୁ ଏପରି କଷିକରି ବାନ୍ଧିପକାଏ ଯେ କେଣେ ସେମିତି ବିରଳ ଭାଗ୍ୟବାନ୍ ଲୋକ ହୋଇଥିବେ ଏହି ବନ୍ଧନରୁ ମୁକୁଳି ଯାଇପାରେ । ନ ହେଲେ ଯେ ଏହି ଫାଶକୁ ଆସିଲା, ପୁଣି ତା'ର ଉଦ୍ଧାର ଅସମ୍ଭବ ହୋଇଥାଏ । ପୁଣି ସେହି ସ୍ତ୍ରୀ ତା' ମୁଣ୍ଡ ଉପରେ ଆସି ବସିଯାଏ ଏବଂ ତାକୁ ବାହନ କରି ନିଜ ଇଚ୍ଛା ଅନୁସାରେ ନଚାଇଥାଏ ।"

ଶୌନକ ପଚାରିଲେ—"ସୂତ ମହାଶୟ ! ପୁରୁଷର କ'ଣ କିଛି ଦୋଷ ନାହିଁ ? ପୁରୁଷ କ'ଣ ଦୁଷ୍ଟାମି କରି ନଥାଏ ?"

ସୂତ କହିଲେ "ହେ ପ୍ରଭୁ ! ଏଠାରେ ଦୋଷର ପ୍ରଶ୍ନ କ'ଣ କିଛି ଅଛି ? ଏଠାରେ କହିବାର ତାତ୍ପର୍ଯ୍ୟ ହେଲା ବାସ୍ତବତାର ବର୍ଣ୍ଣନା କରିବା । ଆପଣ ଯେଉଁ ଦୋଷଗୁଡ଼ିକ କଥା କହୁଛନ୍ତି, ମୁଁ କହିବି ଯେ ଦୋଷ ତ ସବୁ ପୁରୁଷଙ୍କର ଅଛି । ଚନ୍ଦ୍ର ଯଦି ନିଜ କିରଣକୁ ବିସ୍ତାର ନଦେବ, ତା'ହେଲେ ତ ଚନ୍ଦ୍ରକାନ୍ତ ମଣି କେବେହେଲେ ତରଳି ପାରିବ ନାହିଁ । ଚନ୍ଦ୍ର ଯେ ନିଜ କିରଣକୁ ବିସ୍ତାର ଦେବେ ନାହିଁ, ଏକଥା ଅସମ୍ଭବ । ତାଙ୍କର ସ୍ୱଭାବ ହେଲା ସେ କିରଣ ନ ଦେଇ ଜମା ରହି ପାରିବେ ନାହିଁ । ମନୀଷୀର କାମ-ଚେଷ୍ଟା ନ ଦେଖାଇବା ଅସମ୍ଭବ ନ ହେଲେ ବି ଅବଶ୍ୟ ଅତ୍ୟନ୍ତ କଠିନ । ନାରୀ ଜାତି ପୁରୁଷର ଦୀନତା ଦେଖିଲେ ତରଳି ଯାଇଥାଏ । ଯେତେବେଳେ ନାରୀର ମନରେ ବି ଏଭଳି ଭାବ ଆସିଯାଏ, ସେତେବେଳେ ତା' କାମିନୀ ନାଁଟି ସାର୍ଥକ ହୋଇଯାଏ । ସେହି ଅବସ୍ଥାରେ ସେ ଯାହା ବୁଝେ, ତାହା କରିପାରେ । ଅର୍ଥ, ଅନର୍ଥ ସବୁ କିଛି ହୋଇଯାଏ ।

ମଣିଷଙ୍କୁ ବଶ କରି ସେ ତା'ଦ୍ୱାରା ସବୁ କିଛି କରାଇନିଏ । ଯେଉଁ କାମ ଅନ୍ୟ କୌଣସି ଉପାୟରେ ହୋଇପାରିବ ନାହିଁ, ତାହାକୁ କାମିନୀ ଦ୍ୱାରା କରାଯାଇପାରେ । ସ୍ତ୍ରୀର ନାଁ ଅବଳା କେଉଁଥିପାଇଁ ? ଅ ବୁଝାଯାଏ ଅନଙ୍ଗକୁ । ଅର୍ଥାତ୍ ଯାହାଠାରେ ଅନଙ୍ଗର ବଳ ଥାଏ, ତାକୁ ବୁଝାଯାଏ ଅବଳା । ଅନଙ୍ଗର ବଳ ହେଉଛି ସଂସାରରେ ସବୁଠାରୁ ବଡ଼ ବଳ । ସେଥିପାଇଁ ନାରୀଜାତିକୁ ସବୁଠାରୁ ଅଧିକ ଅଳୀକ ଓ ସବୁଠାରୁ ଅଧିକ ବଳବତୀ ବୋଲି ବୁଝାଯାଇଥାଏ ।"

ଶୌନକ କହିଲେ—"ସୂତ ମହାଶୟ ! ବିଷୟଟିକୁ ଆପଣ ନୀରସ କରି ଦେଉଛନ୍ତି କାହିଁକି ? ଏହା ହେଉଛି ଅତି ସରସ ବିଷୟ । ହଁ, ତା'ହେଲେ ଆଗକୁ କ'ଣ ଘଟିଲା ? ଆପଣ ପରବର୍ତ୍ତୀ କଥା କୁହନ୍ତୁ ।"

ସୂତ କହିଲେ—"ଭଲ କଥା ପ୍ରଭୁ ! ଏବେ ମୁଁ ପରବର୍ତ୍ତୀ କଥା କହୁଛି । ଆଗକୁ ଏହାଠାରୁ ବି ବେଶି ସରସ କଥା ଅଛି । ତାହା ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍‌ପୟ

ଅରୀ ରମନକେ ଗମନ କର୍‌ୟୋ ରମନୀ ସଁଗ ତରୁତର ।
ଅଦେଖୋ ପଦେଖୋ ମିଲ୍ୟୋ ଶ୍ୟାମ ଶ୍ୟାମାକୋ ଗୁରୁତର ।।
ଧନ୍ୟ ଲଡ଼ଲୀ ସଗ କରେ ବଣମହୁଁ ବନଓ୍ୱାର ।
ମନୋକାମନା ପୂର୍ଣ୍ଣ ଭଇ ନହିଂ ବୀର ! ହମାରୀ ।
କୃଷ୍ଣାନେ୍ୱଷଣ କାତର, ଇତ ରମନୀ ବନ-ବନ ଫିରହୁଁ ।
ଉତ ପ୍ରିୟତମ ସଁଗ ରାଧିକା, କାମ କେଲି କୌତୁକ କରହୁଁ ।।



ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ